# ଦଶ ଅବତାର ଗପ

ଶ୍ରୀ ନିର୍ମଳ ମିଶ୍ର ...



ତାରତାରିଣୀ ପୁସ୍ତକାଳୟ
ବାରାକସ, ବ୍ରହ୍ମପୁର-୧

# ଦଶ ଅବତାର ଗପ

ଲେଖକ :
ଶ୍ରୀ ନିର୍ମଳ ମିଶ୍ର, ଏମ୍. ଏ., ବି. ଏଡ୍.(ଡିଷ୍ଟିଂସନ)

ସ୍ୱତ୍ୱାଧିକାରିଣୀ :
ଶ୍ରୀମତୀ ମଞ୍ଜୁଲତା ମିଶ୍ର
ବଲିୟାର ସିଂହପୁର (ଗଞ୍ଜାମ)

ପ୍ରକାଶକ :
ଶ୍ରୀ ଭଗବାନ ପାଢ଼ୀ
ତାରତାରିଣୀ ପୁସ୍ତକାଳୟ
ବ୍ରହ୍ମପୁର (ଗଂଜାମ)

ପ୍ରକାଶକାଳ :
ସଂସ୍କରଣ—୧୯୯୦
ମୁଦ୍ରଣ—ମନମୋହନ ଟ୍ରେଡ଼ର୍ସ
ବ୍ରହ୍ମପୁର-୨ (ଗଂଜାମ)
ମୂଲ୍ୟ ଟ. ୧୪-୦୦

# DASHA AVATARA GAPA

*Author* :
**Sri Nirmal Mishra**, M.A.,B. Ed. (Dist)

*Copy wright* :
**Smt. Manjulata Misra,**
Baliyarsingh Pur, Ganjam

*Publisher* :
**Sri Bhagaban Padhy,**
**TARATARINI PUSTAKALAYA,**
Berhampur-760 001 (Ganjam)

**EDITION—1990**

*Printed at* :
**MAN MOHAN TRADERS,**
Berhampur-760 002 (Ganjam)
**PRICE Rs. 14-00**

# ମୁଖଶାଳା

"ଯଦା ଯଦା ହି ଧର୍ମସ୍ୟ, ଗ୍ଳାନିର୍ଭବତି ଭାରତ
ଅଭ୍ୟୁତ୍ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ
ପରିତ୍ରାଣାୟ ସାଧୂନାଂ, ବିନାଶାୟଚ ଦୁଷ୍କୃତାଂ
ଧର୍ମ ସଂସ୍ଥା ପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଶ୍ରୀମଦ୍ ଭଗବତ ଗୀତାର ଚତୁର୍ଥ ଅଧ୍ୟାୟର ସପ୍ତମ ଓ ଅଷ୍ଟମ ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣ ନିଜେ ବାରମ୍ବାର ଧରାପୃଷ୍ଠରେ ଅବତୀର୍ଣ୍ଣ ହେବାର ଯେଉଁ କାରଣ ଅର୍ଜ୍ଜୁନଙ୍କୁ କହିଥିଲେ ତାହାର ପୁରାଣ ସ୍ୱୀକୃତ ପ୍ରମାଣ ଆମ ପ୍ରକାଶିତ ପୁସ୍ତକ "ଦଶଅବତାର ଗପ"ରେ ଉପସ୍ଥାପନ କରାଯାଇ ଅଛି ।

ପୁରାଣ ବର୍ଣ୍ଣିତ ଯୁଗ ଏବଂ ଅତ୍ୟାଧୁନିକ ବିଜ୍ଞାନ ପ୍ରମାଣିତ ଯୁଗ ମଧ୍ୟରେ ଆମେ ଯେଉଁ ପରସ୍ପର ବିରୋଧୀ ମତବାଦ ଯୋଗୁଁ ବିଭ୍ରାନ୍ତ ହେଉ ସେ ସବୁର ଏକ ସୁନ୍ଦର ସମନ୍ୱୟ ରସ-ରସାଣିତ ଆଲେଖ୍ୟ ପ୍ରସ୍ତୁତ କରିଛନ୍ତି ଆମର ପ୍ରତ୍ୟମଧନ୍ୟ ଶିଶୁ ଓ କିଶୋର ସାହିତ୍ୟ ସାଧକ, ଆଦର୍ଶ ପ୍ରଧାନ ଶିକ୍ଷକ, ଶିଳ୍ପୀ, ସାହିତ୍ୟିକ ଓ ସାମ୍ବାଦିକ ରୂପେ ପରିଚିତ ଶ୍ରୀ ନିର୍ମଳ ମିଶ୍ର । ପୁସ୍ତକଟି ପାଠକଲେ ଭାରତର ମହାନ୍ ପୁରାଣ ସାହିତ୍ୟ ଯେ କେବଳ ମୁନି ଋଷି ମାନଙ୍କ କଳ୍ପନା ପ୍ରସୂତ ଚମତ୍କାରିତା ପ୍ରଦର୍ଶନକାରୀ ବିଷୟବସ୍ତୁ ଅଧ୍ୟାୟିତ ନୁହେଁ ବସ୍ତୁତଃ ଆଧୁନିକ ଯୁଗର ବିଜ୍ଞାନ କବଳିତ ଅତ୍ୟାଧୁନିକ ମାନବ ସଭ୍ୟତାର ସୁଦୃଢ଼ ମୂଳଦୁଆ ତାହା ସହଜରେ ଉପଲବ୍ଧି କରିହେବ । ସର୍ବ ଶକ୍ତିମାନ ପରମାତ୍ମାଙ୍କ ଅନନ୍ତ ମହିମାରେ ଚରାଚର ଜଗତ ପରିଚାଳିତ ଓ ପରିପାଳିତ ତାହା ଦୃଢ଼ବୋଧ କରି ଜାତି, ଧର୍ମ, ବର୍ଣ୍ଣ, ବୃତ୍ତି, ଭୂଖଣ୍ଡ ନିର୍ବିଶେଷରେ ଏକମାତ୍ର ମଣିଷ କରିଲ ତାଙ୍କର ଚରଣ ପଙ୍କଜରେ ନିଜକୁ ଉତ୍ସର୍ଗ କଲେ ମୁକ୍ତି ପାଇପାରେ ତାହା ପୁସ୍ତକଟିରେ ସୂଚୀତ । ଶ୍ରୀ ମିଶ୍ରଙ୍କ ଅନ୍ୟସମସ୍ତ ପୁସ୍ତକ ଭଳି ଏହାମଧ୍ୟ ସବୁ ସ୍ତରର ପାଠକ ପାଠିକା ମାନଙ୍କ ଦ୍ୱାରା ଆଦର ଲାଭକରିବ ବୋଲି ଆଶା କରୁ ।

ଶ୍ରୀ ଭଗବାନ ପାଢ଼ୀ
ପ୍ରକାଶକ

ଓଁ ଶ୍ରୀ ଶ୍ରୀ ଗଣେଶାୟ ନମଃ।
ଓ ଶ୍ରୀ ଶ୍ରୀ ସରସ୍ୱତ୍ୟୈ ନମଃ !!

# ଦଶ ଅବତାର ଗପ

ଶ୍ରୀମଦ୍ ଭଗବଦ୍ ଗୀତାରେ ସ୍ୱୟଂ ଭଗବାନ [illegible] ଅର୍ଜୁନଙ୍କୁ କହିଛନ୍ତି—"ସତ୍ୟ ଧର୍ମର ବିନାଶ ହୋଇ ଅଧର୍ମ ଓ ପାପ ବଢ଼ିଗଲେ ମୁଁ ଧର୍ମରକ୍ଷା ପାଇଁ ଏ ସଂସାରରେ ବାରମ୍ବାର ଯୁଗେ ଯୁଗେ ଜାତ ହୋଇଥାଏ । ସାଧୁମାନଙ୍କୁ ରକ୍ଷା କରେ । ସଂସାରର ଅମଙ୍ଗଳକାରୀ ପାପୀମାନଙ୍କୁ ବିନାଶ କରି ପୁଣି ସଂସାରରେ ଶାନ୍ତି ଓ ଧର୍ମ ସ୍ଥାପନ କରି ଦେଇଥାଏ ।"

ଏ ସଂସାରର ସୃଷ୍ଟିକର୍ତ୍ତା "ପରମାତ୍ମା ଭଗବାନ" ଆମକୁ ସୃଷ୍ଟି କରିଛନ୍ତି । ପରମଆତ୍ମାଙ୍କ ଠାରୁ କ୍ଷୁଦ୍ରଆତ୍ମା ସବୁ ବାହାରି ଆସି ଏ ସଂସାରରେ ଜାତ ହୋଇ ପରମ ଆତ୍ମାଙ୍କ ଇଚ୍ଛା ଅନୁସାରେ ଜନ୍ମ ହୁଅନ୍ତି ଲୀଳାଖେଳା କରନ୍ତି ଓ ପୁଣି ମୁକ୍ତି ଲାଭକରି ସେହି ପରମାତ୍ମାଙ୍କ ଦେହରେ ମିଶିଯାନ୍ତି । ତେଣୁ ଆତ୍ମାକୁ ଅମର ବୋଲି କୁହାଯାଏ । ଆମ ସମସ୍ତଙ୍କ ଦେହରେ, ସଂସାରର ସବୁ ପ୍ରାଣୀଙ୍କ ଦେହରେ ପରମାତ୍ମାଙ୍କର ଅଂଶଆତ୍ମା ଅଦୃଶ୍ୟ ଭାବରେ ରହିଛି । ଜନ୍ମ ସମୟରେ ଆତ୍ମା ପ୍ରାଣୀର ଦେହକୁ ଆସେ । ସଂସାରରେ ଭଗବାନଙ୍କ ଇଚ୍ଛା ଅନୁସାରେ ଲୀଳା ଖେଳା କରି ସେ ଯେତେବେଳେ ପ୍ରାଣୀର ଦେହରୁ ବାହାରି ନୂଆଦେହକୁ ଚାଲିଯାଏ ଆମେ ମୃତ୍ୟୁ ଲାଭ କରୁ । ଏଭଳି ସଂସାରରେ ଜନ୍ମ ମୃତ୍ୟୁ ଚାଲିଛି ।

ସଂସାରରେ ଜୀବ, ଜନ୍ତୁ, ଗ୍ରହ, ନକ୍ଷତ୍ର, ସାଗର, ମହାକାଶ, ଯାହାକିଛି ଅଛି ସବୁ ସେଇ ପରମାତ୍ମାଙ୍କର ସୃଷ୍ଟି । ସେ ସର୍ବଶକ୍ତିମାନ । ତାଙ୍କର ଆରମ୍ଭ ବା ଶେଷ ବୋଲି କିଛି ନାହିଁ ତେଣୁ ତାଙ୍କୁ ଅନନ୍ତ ବୋଲି କୁହାଯାଏ । ତାଙ୍କର ଆକାର ନାହିଁ ଅଥଚ ସେ ଇଚ୍ଛା କଲେ ମାତ୍ରେ ଯେକୌଣସି ଆକାର ଧରି ପାରନ୍ତି । ଜଳର ଯେପରି ଆକାର ନାହିଁ ଯେଉଁ ଆଧାର ପାତ୍ରରେ ରଖିବା ସେ ସେହି ଆକାରର ହୋଇପାରିବ ଠିକ୍ ପରମେଶ୍ୱରଙ୍କ ଦର ଭଳି ଆକାରଶୂନ୍ୟ ହୋଇଥିବାରୁ ତାଙ୍କୁ ନିରାକାର ବୋଲି କହନ୍ତି ।

ସେହି ସୃଷ୍ଟିକର୍ତ୍ତାଙ୍କ ରହସ୍ୟ ଜାଣିବା ପାଇଁ ମଣିଷମାନେ ଅବହମାନ କାଳରୁ ଚେଷ୍ଟାକରି ଆସିଛନ୍ତି । ମୁନି ଋଷିମାନେ ଏଥିପାଇଁ କଠିନ ତପସ୍ୟା କରିଛନ୍ତି କେହି ହୁଏତ କହନ୍ତି ଆମେ ଦେଖିଛୁ କେହି ହୁଏତ କହନ୍ତି ଆମେ ଭଗବାନଙ୍କୁ ଦେଖିପାରିଲୁ ନାହିଁ । ଯିଏ ଯେଉଁଭଳି ଭାବରେ ଭଗବାନଙ୍କୁ ଚିନ୍ତାକରେ ସେ ସେହିପରି ଭାବରେ ହିଁ ତାଙ୍କୁ ପାଇପାରେ । ଭଗବାନଙ୍କ ଲୀଳା ଖେଳା ଅନେକ ଶାସ୍ତ୍ର, ପୁରାଣ ଲେଖାହୋଇଛି । କଏ

ଭଗବାନ ଅଛନ୍ତି ବୋଲି କହିବା ବେଳରୁ କିଏ ଭଗବାନ ବୋଲି କହୁନାହିଁ ବୋଲି ମଧ୍ୟ କହନ୍ତି ମାତ୍ର ଏତିକି ମନେରଖିବା ତଥା ଯେ ଏ ଚରାଚର ବ୍ରହ୍ମାଣ୍ଡ କୌଣସି ଅଦୃଶ୍ୟ ଶକ୍ତି ବଳରେ ଚାଲିଛି, ସେହି ଅଦୃଶ୍ୟ ଶକ୍ତିହିଁ ଭଗବାନ ।

ଏ ସଂସାରକୁ ଭଗବାନ ଦରକାର ପଡ଼ିଲେ ଆସନ୍ତି । ସେହି ଭଗବାନଙ୍କ ଆସିବାଟାକୁ ଆମେ ଅବତାର ବୋଲି କହୁଥାଉ । ଭଗବାନଙ୍କ ନାନା ଅବତାର ଅଛି । ତେବେ ସବୁ ଅବତାର ମଧ୍ୟରୁ ଦଶଟି ଅବତାର ଶ୍ରେଷ୍ଠ ଏବଂ ସେହାକୁ ଦଶ ଅବତାର କୁହାଯାଏ ।

ଆମ ପୁରାଣମାନଙ୍କରେ ଭଗବାନ ଓ ଏ ସୃଷ୍ଟି ସଂପର୍କରେ ନାନା ବିଷୟ କୁହାଯାଇଛି । ନାନା ମୁନିଙ୍କ ନାନା ମତ ଭଳି କେତେ ପ୍ରକାର ମତ ମଧ୍ୟ ରହିଛି । ତେବେ ସବୁ ମତବାଦ ଗୁଡ଼ିକ ମଧ୍ୟରୁ ଏକପ୍ରକାର ସାରକଥା ବାହାରେ ।

ପରମେଶ୍ୱର ବା ପରମାତ୍ମା ହେଉଛନ୍ତି ସେହି ଅଦୃଶ୍ୟ ଓ ଅନନ୍ତ ଶକ୍ତି । ବ୍ରହ୍ମାଣ୍ଡ ମାଳ ହୋଇ, ଯା' ରୋମ କୂପେ ବିରାଜଇ ।" ସେହି ବିଶ୍ୱରୂପୀ ପରଂବ୍ରହ୍ମ ନାରାୟଣ ଯାହାଙ୍କର ରୂପ ବର୍ଣ୍ଣନା କରାଯାଇନପାରେ ଯାହାର ତେଜ କୋଟି କୋଟି ସୂର୍ଯ୍ୟଙ୍କ ତେଜ ସହ ସମାନ ଓ ଯାହାକୁ ଖାଲି ଆଖିରେ ଦେଖିବା ସମ୍ଭବ ନୁହେଁ ସେହି ରୂପକୁ ଅର୍ଜୁନଙ୍କ ଭଳି କେତେଜଣ ମାତ୍ର ଭାଗ୍ୟବାନ ଭକ୍ତ ଦେଖି ପାରିଛନ୍ତି ସେହି ଭଗବାନଙ୍କର ରୂପ ବା ମନୋହର ରୂପ ମହାକାଳ ହିଁ ସଚରାଚର ବ୍ରହ୍ମାଣ୍ଡର ମୂଳ । ସଂସାର ରଚନା ପାଇଁ ଏହି ପରଂବ୍ରହ୍ମ ସୃଷ୍ଟି କଲେ ନିଜ ତେଜରୁ ମହାଶକ୍ତି । ମହାଶକ୍ତି ହେଉଛନ୍ତି ମହାମାୟା । ଏହି ମହାମାୟା ସୃଷ୍ଟି କଲେ ତିନୋଟି କର୍ତ୍ତାଶକ୍ତି । ଏମାନେ ହେଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ପ୍ରଥମେ ମହେଶ୍ୱର ଶିବ ଜଳପୂର୍ଣ୍ଣ ସଂସାର ଅନନ୍ତ କାଳ ରୂପେ ପ୍ରକଟ ହେଲେ । ଏହି କାଳ ହିଁ ସମସ୍ତ । ସେ ଶେଷନାଗରୂପେ କୁଣ୍ଡଳୀ ବାନ୍ଧି ଜଳ ଉପରେ ଦେଖାଦେଲେ । ଏହି ଶେଷ ନାଗଙ୍କ ଫଣା ସଂଖ୍ୟା ଏକ ହଜାର । ଏହି ଶେଷନାଗ ନିଜ ଦେହକୁ ମୋଡ଼ି ମୋଡ଼ି ଶଯ୍ୟା କୁଣ୍ଡଳୀ ତିଆରି କରି ଫଣା ଗୁଡ଼ିକୁ ମହାକାଶକୁ ଟେକି ରଖିଛନ୍ତି । ଏହି ସର୍ପଶଯ୍ୟା ଭିତରେ ପ୍ରକଟ ହେଲେ ଭଗବାନ ବିଷ୍ଣୁ । ବିଷ୍ଣୁ ଶେଷନାଗ ଉପରେ ଶୟନ କରିଥିବାରୁ ତାଙ୍କର ଅନ୍ୟନାମ ଶେଷଶାୟୀ । ଶ୍ରୀ ବିଷ୍ଣୁ ପ୍ରକଟ ହେବାପରେ ନିଜ ନାଭିରୁ ଏକ ଲମ୍ବା ନାଡ଼ ଥିବା ବିରାଟପଦ୍ମଫୁଲଟିଏ ସୃଷ୍ଟି କଲେ । ଏହି ପଦ୍ମଫୁଲ ହିଁ ବ୍ରହ୍ମଲୋକ ଏବଂ ଏହି ପଦ୍ମଫୁଲରୁ ପ୍ରକଟ ହେଲେ ବ୍ରହ୍ମା । ଏ ଜଗତକୁ ବ୍ରହ୍ମାହିଁ ସୃଷ୍ଟି କରିଛନ୍ତି । ତେଣୁ ବ୍ରହ୍ମାଙ୍କୁ ସୃଷ୍ଟିକର୍ତ୍ତା, ବିଷ୍ଣୁଙ୍କୁ ପାଳନକର୍ତ୍ତା ଓ ମହେଶ୍ୱର ବା ଶିବଙ୍କୁ ସଂହାରକର୍ତ୍ତା କୁହାଯାଏ । ଶିବଙ୍କୁ ଅନନ୍ତ କାଳ ବା ସମସ୍ତ ବୋଲି କୁହାଯାଏ । ଏହି ଅନନ୍ତକାଳ ବିଭିନ୍ନ ଯୁଗ ଦେଇ ବହିଚାଲିଛି । ଏହା କେବେଠାରୁ ଆରମ୍ଭ ହେଲା ଓ କେବେ ଶେଷ ହେବ ତାହା ସେହି ପରମବ୍ରହ୍ମଙ୍କୁ ଜଣା ।

ସାଧାରଣତଃ ଚାରିଗୋଟି ଯୁଗ ଦେଇ ଅନନ୍ତକାଳ ଗତ କରୁଛି । ସେ ଯୁଗ ଗୁଡ଼ିକ ହେଲା ସତ୍ୟଯୁଗ, ତ୍ରେତୟା ଯୁଗ, ଦ୍ୱାପରଯୁଗ ଓ କଳିଯୁଗ । ଏ ଚାରିଯୁଗକୁ ମିଶାଇ ଏକ ମହାଯୁଗ ହୋଇଥାଏ । ଏକ ହଜାର ମହାଯୁଗ ମିଶିଲେ ଗୋଟିଏ କଳ୍ପ ହୁଏ । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଏଭଳି କଳ୍ପ ମାତ୍ର ଦିନଟିଏ । ଏବଂ ଆଉ ଗୋଟିଏ କଳ୍ପ ରାତିଟିଏ ହୋଇଥାଏ । ବ୍ରହ୍ମା ଦିନରେ ସୃଷ୍ଟି କରନ୍ତି ଓ ରାତିରେ ବିଶ୍ରାମ ନିଅନ୍ତି । ଦିନଟି ଶେଷ ହେବାପରେ ଯେତେବେଳେ ବ୍ରହ୍ମାଙ୍କର ରାତିଆସେ ସେହି ସମୟକୁ କଳ୍ପାନ୍ତ କୁହାଯାଏ । କଳ୍ପର ଅନ୍ତ ବା ଶେଷ ହେଉଥିବାରୁ ଏହା କଳ୍ପାନ୍ତ ଅଟେ । ଏହି କଳ୍ପାନ୍ତର ନାମ ମହାପ୍ରଳୟ ।

ମହାପ୍ରଳୟ ଆସିଲେ ବିଷ୍ଣୁଙ୍କ ହୃଦୟରୁ ବାହାରେ ଶଙ୍କର୍ଷଣଙ୍କ ପ୍ରଳୟାଗ୍ନି । ସେହି ଅଦୃଶ୍ୟ ଅଗ୍ନି ଦ୍ୱାରା ସଂସାରରେ ନାନା ବିପ୍ଳବ ଦେଖାଦିଏ । ପୂର୍ବ ଠାରୁ ଆରମ୍ଭ କରି ବର୍ଷା, ବାତ୍ୟା, ଭୂମିକମ୍ପ, ଆଗ୍ନେୟଗିରିରୁ ଅଗ୍ନିବର୍ଷଣ ଇତ୍ୟାଦି ଦ୍ୱାରା ଜଗତ ଧ୍ୱଂସ ହୋଇଯାଏ । ବିଷ୍ଣୁଙ୍କୁ ନାରାୟଣ ବୋଲି କହନ୍ତି । ନାର ବା ଜଳ ସୃଷ୍ଟି କରିଥିବାରୁ ସେ ନାରାୟଣ । ଏହି ନାରାୟଣଙ୍କର ଜଳ ଉପରେ ଜଗତ ତମାମ ମାଡ଼ିଯାଏ । ଚଉଦିଗ ଅନ୍ଧାରରେ ବୁଡ଼ିରହେ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନ ଜଳ ଭିତରେ ବୁଡ଼ି ଏକାକାର ହୋଇଯାଏ । ଏହି କଳ୍ପାନ୍ତ ସମୟରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଧ୍ୟ ସୁପ୍ତ ହୋଇଯାନ୍ତି । ସାରା ସଂସାରରେ ଖାଲି ଅନ୍ଧକାର ଅନ୍ଧ ଅନ୍ଧକାର ଛଡ଼ା କିଛି ନଥାଏ ।

ପରମେଶ୍ୱର ପୁଣି ଯେତେବେଳେ ଇଚ୍ଛା କରନ୍ତି ନୂତନ କଳ୍ପ ଆରମ୍ଭ ହୁଏ । ସେ ପ୍ରଥମେ ଯୋଗମାୟାଙ୍କୁ ପଠାଇ ବିଷ୍ଣୁଙ୍କ ଯୋଗନିଦ୍ରା ଭଙ୍ଗାନ୍ତି । ବିଷ୍ଣୁ ଯୋଗନିଦ୍ରା ତ୍ୟାଗକରନ୍ତି । ସେ ନୂତନ ବ୍ରହ୍ମାଙ୍କୁ ପୁଣି ସୃଷ୍ଟି କରନ୍ତି । ପୁଣି ନୂତନ ଭାବେ ବ୍ରହ୍ମାଙ୍କ ଦିନ ଆରମ୍ଭ ହୁଏ । ଭଗବାନ ବିଷ୍ଣୁ ସୃଷ୍ଟି ସର୍ଜନା କରିବା ପାଇଁ ବ୍ରହ୍ମାଙ୍କୁ ନିର୍ଦ୍ଦେଶ ଦିଅନ୍ତି ।

ବର୍ତ୍ତମାନ ଯେଉଁ କଳ୍ପ ଚାଲିଛି ଏହା ସତ୍ୟ, ତ୍ରେତା, ଓ ଦ୍ୱାପର ତିନିଗୋଟି ଯୁଗ ଭୋଗ କରିସାରିଛି । ଏବେ ଚାଲିଛି ଶେଷ ଯୁଗ ବା କଳିଯୁଗ । କଳିଯୁଗ କଳ୍ପାନ୍ତ ଆଡ଼କୁ ମାଡ଼ିଚାଲିଛି । ଦିନ ଆସିବ କଳିଯୁଗ ମଧ୍ୟ ଶେଷ ହେବ ଓ ବିଶ୍ୱ ବ୍ରହ୍ମାଣ୍ଡରେ ମହାପ୍ରଳୟ ହେବ । ତେବେ ମହାପ୍ରଳୟ ଆସିବା ପାଇଁ ଅଦ୍ୟାପି ଅନେକ ସମୟ ବାକି ଅଛି ତେଣୁ ଆମେ ସେ କଥା ଚିନ୍ତାକରିବା ଉଚିତ ନୁହେ । ସେଇଟା ଭଗବାନଙ୍କ ହାତରେ ।

ହେଲେ ଏହି କଳ୍ପରେ ଯେଉଁ ଯୁଗ ଗୁଡ଼ିକ ଭୋଗ ହୋଇସାରିଛି ଏବଂ ଯେଉଁ ଘଟଣା ଗୁଡ଼ିକ ଘଟିଯାଇଛି ତାହା ପୁରାଣ ଗୁଡ଼ିକରେ ଲେଖାହୋଇ ରହିଛି । କଳିଯୁଗରେ ଯେଉଁ ଘଟଣା ଗୁଡ଼ିକ ଘଟି ସାରିଛି ଏବଂ ଲେଖା ହୋଇ ରହିଛି ତାକୁ ଆମେ ଇତିହାସ ବୋଲି କହୁଛେ । ପବିତ୍ର ଧର୍ମଗ୍ରନ୍ଥ ଗୀତାରେ ଭଗବାନ ଅର୍ଜୁନଙ୍କୁ ଯେଉଁକଥା କହିଥିଲେ ସେ କଥାର ପ୍ରମାଣ ପୁରାଣରୁ ମିଳିଥାଏ । ଏହି କଳ୍ପରେ ବିଭିନ୍ନ ଯୁଗର ସାର

ସଂସାରରେ ଯେଉଁ ଲୀଳା ଖେଳା ଚାଲିଛି ଅନେକ ଥର ଅଧର୍ମ ବଢେ ଏବଂ ପାପ ମାତ୍ରା ବଢ଼ିଯାଇଛି । ଧର୍ମରକ୍ଷା ପାଇଁ, ପୁଣ୍ୟ ପ୍ରତିଷ୍ଠା ପାଇଁ ଭଗବାନ ବିଭିନ୍ନ ଯୁଗରେ ବିଭିନ୍ନ ଅବତାର ଧରି ପ୍ରକଟ ହୋଇଛନ୍ତି । ପାପୀ ମାନଙ୍କୁ ଧ୍ୱଂସ କରି ଜଗତକୁ ରକ୍ଷା କରିଛନ୍ତି ।

ମୁଖ୍ୟତଃ ଏହି ଦଶଅବତାର ଗପ ପୁସ୍ତକରେ ଆମେ ଭଗବାନ ବିଷ୍ଣୁଙ୍କର ମୁଖ୍ୟ ଦଶଗୋଟି ଅବତାର ସମ୍ପର୍କରେ ଥିବା ଗପ ଗୁଡ଼ିକ ପଢ଼ିବା । ଏହି ଦଶଗୋଟି ଅବତାର ମଧ୍ୟରୁ ସତ୍ୟଯୁଗରେ ଚାରୋଟି, ତ୍ରେତୟା ଯୁଗରେ ତିନୋଟି, ଦ୍ୱାପର ଯୁଗରେ ଦୁଇଟି ଅବତାର ଭଗବାନ ଗ୍ରହଣ କରିସାରିଛନ୍ତି । ଏବଂ କଳିଯୁଗର ମାତ୍ର ଗୋଟିଏ ଅବତାର ଭବିଷ୍ୟତରେ ଗ୍ରହଣ କରିବେ । ସତ୍ୟଯୁଗରେ ଭଗବାନ ଗ୍ରହଣ କରିଥିଲେ ପ୍ରଥମରେ ମତ୍ସ୍ୟଅବତାର, ଦ୍ୱିତୀୟରେ କୂର୍ମ ଅବତାର, ତୃତୀୟରେ ବରାହ ଅବତାର, ଚତୁର୍ଥରେ ନୃସିଂହ ଅବତାର । ସେହିପରି ତ୍ରେତୟା ଯୁଗରେ ବାମନ ଅବତାର, ହେଲା ପଞ୍ଚମ ଅବତାର, ପର୍ଶୁରାମ ଅବତାର ହେଲା ଷଷ୍ଠ ଅବତାର ଓ ଶ୍ରୀରାମ ଅବତାର ହେଲା ସପ୍ତମ ଅବତାର । ଦ୍ୱାପର ଯୁଗରେ ଅଷ୍ଟମ ଅବତାର ହେଲା ଶ୍ରୀକୃଷ୍ଣ ବଳରାମ ଅବତାର, ନବମ ଅବତାର ହେଲା ବୌଦ୍ଧ ଅବତାର ଶେଷରେ ଏ କଳିକାଳରେ ହେବେ ଦଶମ ଥର ପାଇଁ କଳ୍କି ଅବତାର ।

ଅନନ୍ତ ଏ ବିଶ୍ୱ ବ୍ରହ୍ମାଣ୍ଡର କେହି ଠିକ ହିସାବ ଦେଇ ପାରିବ ନାହିଁ । ଅନନ୍ତ ମହାକାଶର ଅନ୍ଧକାର ଭିତରେ କୋଟି କୋଟି ଗ୍ରହ, ନକ୍ଷତ୍ର ପୁଞ୍ଜ ରହିଛନ୍ତି । ହେଲେ ପୁରାଣକାର ମାନେ ଏ ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡକୁ ଚଉଦବ୍ରହ୍ମାଣ୍ଡ ବୋଲି କହନ୍ତି । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ନାମରେ ମୁଖ୍ୟତଃ ତିନିଭୁବନ ରହିଛି । ଏହାକୁ ତ୍ରୈଲୋକ ବୋଲି ମଧ୍ୟ କୁହାଯାଇଥାଏ । ସ୍ୱର୍ଗକୁ ଦେବଲୋକ, ମର୍ତ୍ତ୍ୟକୁ ମାନବ ଲୋକ ଓ ପାତାଳକୁ ଦାନବ ଲୋକ ବୋଲିମଧ୍ୟ କୁହାଯାଏ । ସେହିପରି ବ୍ରହ୍ମାଙ୍କ ଭୁବନକୁ ବ୍ରହ୍ମଲୋକ ବିଷ୍ଣୁଙ୍କ ଭୁବନକୁ ଗୋଲକ, ଶିବଙ୍କ ଭୁବନକୁ ଶିବଲୋକ କୁହାଯାଏ । ଏହାଛଡ଼ା ନାଗଲୋକ, ଯକ୍ଷଲୋକ, ଚନ୍ଦ୍ର ଲୋକ, ଖଗୋଳ ଇତ୍ୟାଦି ଅନେକ ଲୋକ ଅଛି ।

ସୃଷ୍ଟି ସର୍ଜନା ପରେ ସଂସାର ପାଳନ ପାଇଁ ତ୍ରିନାଥ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ସାହାଯ୍ୟକରିବା ନିମନ୍ତେ ବହୁ ଦେବ ଦେବୀ ସୃଷ୍ଟି ହୋଇଛନ୍ତି । ସେହି ଦେବ ଦେବୀମାନେ ସୃଷ୍ଟି କରିବା ପାଇଁ, ପାଳନ କରିବା ପାଇଁ ଏବଂ ଶେଷରେ ବିନାଶ କରିବା ପାଇଁ ଶକ୍ତି ପାଇଥାନ୍ତି । ଭୂଲୋକ ବା ପୃଥିବୀ ସୃଷ୍ଟି ହେବା ଆଗରୁ ଅନ୍ୟ ଲୋକ ଗୁଡ଼ିକ ସୃଷ୍ଟି ହୋଇ

---

ବିଷ୍ଣୁଙ୍କ ଗୋଲକ ତଳେ ବ୍ରହ୍ମଲୋକ (ସତ୍ୟଲୋକ), ତପଲୋକ, ଜନଲୋକ, ମହାଲୋକ, ସ୍ୱର୍ଲୋକ, ଭୁବର୍ଲୋକ, ଭୂଲୋକ ନାମରେ ସପ୍ତ ଊର୍ଦ୍ଧ୍ୱ ଲୋକ ।

ଭୂଲୋକ ତଳେ—ଅତଳ, ବିତଳ, ସୁତଳ, ରସାତଳ, ତଳାତଳ, ମହାତଳ ଓ ପାତାଳ ଅଛି ।

ଯାଉଥିଲା । ମଣିଷ ସୃଷ୍ଟି ହେବା ପୂର୍ବରୁ ବ୍ରହ୍ମା ଦେବ ଓ ଦାନବ ସୃଷ୍ଟି କରିଥିଲେ । ଦେବତା ମାନଙ୍କ ମାଁ ଙ୍କୁ ଦିତି ଓ ଦାନବମାନଙ୍କ ମାଁଙ୍କୁ ଅଦିତି କୁହାଯାଏ । ଦିତି ଓ ଅଦିତି ଦୁଇ ଭଉଣୀ । ହେଲେ ସୃଷ୍ଟି କରିବା ସମୟରେ ବ୍ରହ୍ମା କେବଳ ଯେ ଭଲ ଗୁଣ ସୃଷ୍ଟି କରୁଥିଲେ ତାଁ ନୁହେଁ ମନ୍ଦ ମଧ୍ୟ ସୃଷ୍ଟି ହୋଇଯାଉଥାଏ । ତାହା ପରୀକ୍ଷା ନିରୀକ୍ଷା ଦେଇ ସୃଷ୍ଟି କାର୍ଯ୍ୟ କରାଯାଉଥାଏ । ତେବେ କ୍ରମେ ଭଲ ଗୁଣକୁ ରଖି ମନ୍ଦ ଗୁଣକୁ ବାଦ୍ ଦେବା କାର୍ଯ୍ୟ ପାଳନକର୍ତ୍ତା ବିଷ୍ଣୁଙ୍କ ଉପରେ ପଡେ । ସେ ଭଲମାନଙ୍କୁ ରକ୍ଷା କରନ୍ତି ଆଉ ମନ୍ଦ ଗୁଣଙ୍କୁ ସଂହାରକର୍ତ୍ତା ଶିବଙ୍କ ଶକ୍ତିରେ ଧ୍ୱଂସ କରନ୍ତି ।

ସେତେବେଳେ ବ୍ରହ୍ମା ଦେବ ଓ ଦାନବଙ୍କୁ ଜାତକଲେ । ଦେବତାମାନେ ଭଲଗୁଣ ନେଇ ଓ ଦାନବମାନେ ମନ୍ଦଗୁଣ ନେଇ ଜାତ ହୋଇଗଲେ । ପରସ୍ପର ମଧ୍ୟରେ ଭାଇ ଭାଇ ସମ୍ପର୍କ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ମତଭେଦ ଲାଗି ରହୁଥିଲା । ଦେବତାମାନେ ଥିଲେ ଶାନ୍ତ, ସୁନ୍ଦର, ସରଳ ଓ ସମସ୍ତ ଭଲଗୁଣର ଅଧିକାରୀ କିନ୍ତୁ ଦାନବମାନେ ଥିଲେ ଏହାର ଠିକ୍ ବିପରୀତ । ସେମାନେ ଥିଲେ ଦୁର୍ଦ୍ଦାନ୍ତ, ଅସୁନ୍ଦର, ବଳବାନ୍ ଓ ସମସ୍ତ ଦୁର୍ଗୁଣର ଅଧିକାରୀ । ବଳବାନ ହୋଇଥିବା ଯୋଗୁଁ ସେମାନେ ଦେବତାମାନଙ୍କ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହୁଁଥିଲେ । ଦେବତାମାନଙ୍କ ଭଲକାମ ଗୁଡ଼ିକୁ ସେମାନେ ନଷ୍ଟକରି ଦେଉଥିଲେ । ଏହି ମତଭେଦ ଯୋଗୁଁ ଭଗବାନ ବିଷ୍ଣୁଙ୍କୁ ପ୍ରଥମରୁ ହିଁ ଅବତାର ଗ୍ରହଣ କରିବାକୁ ପଡ଼ିଥିଲା ।



# ସୂଚୀପତ୍ର



—o—




ଅନନ୍ତ ଶୟନରେ ଭଗବାନ ବିଷ୍ଣୁ ଶୟନ କରି ସଂସାର ସର୍ଜନା ଓ ପ୍ରାଣୀ ମାନଙ୍କ ଉତ୍ପତ୍ତି ସମ୍ପର୍କରେ ଚିନ୍ତା କରୁଥିଲେ । ବ୍ରହ୍ମାଙ୍କୁ ନିଜ ନାଭିପଦ୍ମରୁ ସୃଷ୍ଟି କରିବା ପରେ ସୃଷ୍ଟି ସର୍ଜନା ପାଇଁ ତାଙ୍କୁ ଶିକ୍ଷା ଦେଲେ । ବିଷ୍ଣୁ ସୃଷ୍ଟି କଲେ ଚାରିଗୋଟି ବେଦ ପୁସ୍ତକ । ସେଗୁଡ଼ିକ ହେଲା ଋକ୍, ସାମ, ଯଜୁଃ ଓ ଅଥର୍ବ । ଏହି ବେଦ ପୁସ୍ତକ ଗୁଡ଼ିକର ରଙ୍ଗ ମଧ୍ୟ ଥିଲା ଚାରି ପ୍ରକାରର—ଶ୍ୱେତ (ଧଳା), ଲୋହିତ (ଲାଲ୍) ପୀତ (ହଳଦିଆ) ଏବଂ ନୀଳ । ଏହି ପୁସ୍ତକ ଗୁଡ଼ିକ ଦ୍ୱାରା ବ୍ରହ୍ମା ସୃଷ୍ଟି ସର୍ଜନା କରିବାରେ ଲାଗିଲେ । ଚାରିଗୋଟି ବେଦ ପାଇଁ ବ୍ରହ୍ମାଙ୍କର ଚାରିଗୋଟି ମୁଣ୍ଡ ଥିଲା । ଚାରି ମୁହଁରେ ଚାରିବେଦ ଉଚ୍ଚାରଣ କରି ସେ ସୃଷ୍ଟି ସର୍ଜନା କରୁଥାନ୍ତି । ମଝିରେ ମଝିରେ ବିଷ୍ଣୁଙ୍କୁ ସ୍ତୁତି କରି ପରାମର୍ଶ ମାଗି ନେଉଥାନ୍ତି ।

ପ୍ରଥମେ ବ୍ରହ୍ମା ଦେବ ଓ ଦାନବ ସୃଷ୍ଟି କରିଦେଲେ । ଦେବତା ମାନଙ୍କ ପାଇଁ ସ୍ୱର୍ଗରେ ସ୍ଥାନ କରାଗଲା । ସେହିଭଳି ଦାନବ ମାନଙ୍କ ପାଇଁ ପାତାଳପୁରୀ ସୃଷ୍ଟି କରାଯାଇ ସ୍ଥାନ ଦିଆଗଲା । ଗୁଣ ଅନୁସାରେ ରାକ୍ଷସ ଗୁଡ଼ାକ ମନ୍ଦ ଓ ଦେବତାମାନେ ଭଲ ଥିଲେ । କିନ୍ତୁ ଭଗବାନ ବିଷ୍ଣୁ ଚାହୁଁଥିଲେ ଭଲ ଓ ମନ୍ଦ ଉଭୟ ପ୍ରକାର ଗୁଣ ଥାଇ ମାନବ ସୃଷ୍ଟି

କରିବା ପାଇଁ । ଏହି ମାନବ ବା ମଣିଷ ମାନଙ୍କ ପାଇଁ ମର୍ତ୍ତ୍ୟ ନାମରେ ଏକ ଭୁବନ ସୃଷ୍ଟି ପାଇଁ ସେ ଇଚ୍ଛାକଲେ । ମହାକାଶ ଉପର ସ୍ତରରେ ରହିବା ଦେବତା ମାନଙ୍କ ସ୍ୱର୍ଗ ଏବଂ ଅତଳ ତଳ ଜଳ ସ୍ତର ଅବପଃରେ ରହିଲା ପାତାଳ । ପାତାଳରେ ରହିଥାନ୍ତି ରାକ୍ଷସ । ହେଲେ ଏ ଜଳ ଉପରେ; ମଧ୍ୟ ସ୍ତରରେ, ପୃଥିବୀ ସୃଷ୍ଟି ପାଇଁ ବିଷ୍ଣୁ ଚିନ୍ତା କରୁଥାନ୍ତି । ପାତାଳରେ ରାକ୍ଷସମାନେ ଖୁବ୍ ଉତ୍ପାତ ହେଉଥାନ୍ତି । ଯେ ଶଯ୍ୟରେ ବିଷ୍ଣୁ ଶୟନ କରିଥିବା କ୍ଷୀର ସାଗରରେ ପ୍ରବଳ ଲହରୀ ମାନ ଉଠୁଥାଏ । କ୍ଷୀର ସାଗର ଲହରୀରୁ କିଛି ଫେଣ ବିଷ୍ଣୁ ଭଗବାନଙ୍କ କାନ ମୂଳରେ ଛିଟିକି ପଡ଼ିଲା । ବିଷ୍ଣୁ ଏହି ଫେଣଗୁଡ଼ିକ କାନର ମଳି ବୋଲି ବାହାର କରି ଫିଙ୍ଗିଦେଲେ । ଭଗବାନଙ୍କ ଅଦ୍ଭୁତ ଲୀଳା । ବିଷ୍ଣୁଙ୍କ କାନମଳିରୁ ଦୁଇଟା ପ୍ରକାଣ୍ଡ ରାକ୍ଷସ ଜନ୍ମ ହେଲେ । ସେମାନେ ବିଷ୍ଣୁଙ୍କୁ ଦେଖି ଗର୍ଜନ କରି କହିଲେ ତୁମେ ଆମର ଶତ୍ରୁ । ଆମେ ଦାନବ ଆଉ ତୁମେ ଦେବତା । ଶକ୍ତି ଥିଲେ ଆମ ସହିତ ଯୁଦ୍ଧ କର । ବିଷ୍ଣୁ ଅଳ୍ପହସି ରାକ୍ଷସ ମାନଙ୍କ ସହିତ ଯୁଦ୍ଧକଲେ । ନିଜ ଦେହ ମଳିରୁ ରାକ୍ଷସ ଦୁଇଟା ଜନ୍ମ ହୋଇଥିଲେ ହେଁ ବିଷ୍ଣୁ ସେମାନଙ୍କୁ ନିଜେ ମାରିବା ପାଇଁ ଇଚ୍ଛାକଲେ ନାହିଁ । ଜାଣି ଜାଣି ଯୁଦ୍ଧରେ ହାରିଗଲେ । ସେ ରାକ୍ଷସ ଦୁଇଟା ହସିଉଠିଲେ । କହିଲେ—"ଦେଖିଲତ ତୁମେ ଆମକୁ ବଳରେ ପାରିଲ ନାହିଁ । ଆମେ ହେଲୁ ବୀର ରାକ୍ଷସ ମଧୁ ଓ କୈଟଭ । କେବଳ ତୁମକୁ ନୁହେଁ ସବୁ ଦେବତା ମାନଙ୍କୁ ପରାସ୍ତ କରି ଆମେ ସ୍ୱର୍ଗରେ ରହିବୁ ।"

ବିଷ୍ଣୁ କହିଲେ—"ହେ ବୀର ମଧୁ-କୈଟଭ ତୁମ ଦୁହିଁଙ୍କ ବଳରେ ମୁଁ ସନ୍ତୁଷ୍ଟ ହେଲି । ତୁମେ ମୋଠାରୁ କି ବର ମାଗିବ ମାଗିନିଅ ।"

ରାକ୍ଷସମାନେ କହିଲେ—"ତୁମେତ ଆମଠାରୁ ହାରି ଯାଇଛ । ଏଥିରୁ ଜଣାଗଲା ତୁମେ ଆମ ଦୁହିଁଙ୍କ ଠାରୁ ସବୁ କଥାରେ ଊଣା । ତୁମେ ଦୁର୍ବଳ । ଦୁର୍ବଳ ଠାରୁ ସବଳ ମାନେ କ'ଣ ବର ନେଇଥାନ୍ତି ? ବରଂ ତୁମେ ଆମ ଠାରୁ ବର ମାଗିନିଅ । ଆମେ ଦେବୁ ।"

ବିଷ୍ଣୁ କହିଲେ—"ବେଶ୍ ! ମୁଁ ରାଜି ଅଛି । ତୁମେ ଦୁହେଁ ମୋ ଇଚ୍ଛାରେ ପ୍ରାଣ ତ୍ୟାଗକର ।"

ରାକ୍ଷସମାନେ କହିଲେ—'ତଥାସ୍ତୁ' । ତାପରେ ସାମାନ୍ୟ ଯୁଦ୍ଧରେ ବିଷ୍ଣୁ ରାକ୍ଷସ ମାନଙ୍କୁ ତାଙ୍କ ବର ଅନୁସାରେ ଓ ଇଚ୍ଛାରେ ମାରିଦେଲେ । ଏସବୁ ରାକ୍ଷସ ମାନଙ୍କ ମେଦ (ମାଂସକୁ) ମେଦା ମେଦ କରି ମେଦିନୀ ସୃଷ୍ଟି କଲେ । ସେହି ପ୍ରକାଣ୍ଡ ମେଦିନୀ ପୃଥିବୀ ନାମରେ ନାମିତ ହେଲା । ତା'ପରେ ବିଷ୍ଣୁଙ୍କ ନିର୍ଦ୍ଦେଶରେ ମାତା ଧରଣୀଙ୍କୁ ପୃଥିବୀ ଦାୟିତ୍ୱ ଦିଆଗଲା । ପୃଥିବୀ ମାତା ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଜୀବ ସୃଷ୍ଟି କରିବେ ବୋଲି ସ୍ଥିର କରାଗଲା ।

ବ୍ରହ୍ମା ପୃଥିବୀରେ ପ୍ରାଣୀ ସର୍ଜନା ପାଇଁ ଯୋଗଧ୍ୟାନରେ ବସିଲେ । ଅସୁରମାନଙ୍କ ସହିତ ଯୁଦ୍ଧ କଲାପରେ ଭଗବାନ ବିଷ୍ଣୁ ପୁଣି ଅନନ୍ତ ଶଯ୍ୟାରେ ବିଶ୍ରାମ ନେଉଥାନ୍ତି । ବ୍ରହ୍ମା ଏକ ଲକ୍ଷ୍ୟରେ ବିଷ୍ଣୁଙ୍କୁ ଧ୍ୟାନ କରୁଥାନ୍ତି ।

ସେ ସମୟରେ ପାତାଳରେ ଯେଉଁ ଦାନବ ମାନେ ଥାନ୍ତି ସେମାନଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଥିଲା ଶଙ୍ଖାସୁର । ସେ ଶୁଣି ପାରିଲା ଯେ ବିଷ୍ଣୁ ମଧୁ ଓ କୈଟଭ ନାମକ ଦୁଇଟି ରାକ୍ଷସଙ୍କୁ ମାରି ମେଦିନୀ ତିଆରି କରିଛନ୍ତି ସେ ମେଦିନୀରେ ମାନବ ସୃଷ୍ଟି କରିବେ । ମାନବମାନେ ଦେବତା ମାନଙ୍କୁ ପୂଜା କରି ରହିବେ । ମାନବ ସୃଷ୍ଟି କରିବା କୌଶଳ ବେଦ ପୁସ୍ତକରେ ଅଛି । ବିଷ୍ଣୁଙ୍କ ଉଦ୍ଦେଶ୍ୟକୁ ବିଫଳ କରିବା ପାଇଁ ଶଙ୍ଖାସୁର ମନେ ମନେ ପ୍ରତିଜ୍ଞା କଲା । ବ୍ରହ୍ମାଙ୍କ ଠାରୁ ବେଦ ପୁସ୍ତକ ଗୁଡ଼ିକ ନେଇ ଆସିଲେ ବ୍ରହ୍ମା ଆଉ ମଣିଷ ସୃଷ୍ଟି କରିପାରିବେ ନାହିଁ ବୋଲି ସେ ନିଷ୍ପତ୍ତି ନେଲା । ସେଠୁ ଶଙ୍ଖାସୁର ପାତାଳରୁ ଉଠି ବ୍ରହ୍ମ-ଲୋକରେ ପହଞ୍ଚିଲା । ବ୍ରହ୍ମା ତ ଯୋଗଧ୍ୟାନରେ ବ୍ୟସ୍ତ । ନିକଟରେ ତାଙ୍କର ଥୁଆ ହୋଇଥାଏ ରଙ୍ଗୀନ ଓ ତେଜସ୍ୱାନ ବେଦ ପୁସ୍ତକ ଗୁଡ଼ିକ । ସେ ସେହି ପୁସ୍ତକ ଗୁଡ଼ିକୁ ଗିଳିଦେଇ ଚୁପ୍ ଚାପ୍ ଫେରି ଆସିଲା ପାତାଳ ପୁରୀକୁ ।

ବ୍ରହ୍ମାଙ୍କ ସ୍ତୁତିରେ ବିଷ୍ଣୁ ବିଶ୍ରାମ ଭଙ୍ଗ କଲେ । ସେ ବ୍ରହ୍ମାଙ୍କୁ କହିଲେ—"ତୁମେ ପୃଥିବୀରେ ବିଭିନ୍ନ ଜୀବ ସୃଷ୍ଟି କରି ଶେଷରେ ଦେବ ଓ ଦାନବ ଗୁଣଥିବା ମଣିଷ ସୃଷ୍ଟି କରିବ । ବେଦ ପୁସ୍ତକରେ ଏ ସମ୍ପର୍କରେ ସମସ୍ତ ତଥ୍ୟ ଅଛି । ନାନା ପରୀକ୍ଷା ନିରୀକ୍ଷା ଦେଇ ତୁମକୁ ଗତି କରିବାକୁ ହେବ । ମୁଁ ସର୍ବଦା ତୁମକୁ ଏ ଦିଗରେ ସାହାଯ୍ୟ କରିବି ।" ବ୍ରହ୍ମା ବିଷ୍ଣୁଙ୍କୁ ନମସ୍କାର ଜଣାଇ ପୃଥିବୀରେ ପ୍ରାଣୀ ସୃଷ୍ଟି କାର୍ଯ୍ୟ ଆରମ୍ଭ କଲେ । ମାତ୍ର ଅସଲ ଉପାଦାନ ବେଦ ପୁସ୍ତକ ଗୁଡ଼ିକ ଦେଖି ନପାରି ତାଙ୍କର ବୁଦ୍ଧି ହଜିଗଲା । ମହାକାଶରେ ଥିବା ସୂର୍ଯ୍ୟ ଦେବତାଙ୍କୁ ପୁସ୍ତକ ସମ୍ପର୍କରେ ପଚାରିଲେ ସୂର୍ଯ୍ୟ ଦେବତା ସବୁ ଘଟଣା ଦେଖି-ଥିଲେ । ଦୁଷ୍ଟ ଶଙ୍ଖାସୁର କିପରି ବେଦ ପୁସ୍ତକ ଗୁଡ଼ିକୁ ଗିଳିଦେଇ ପାତାଳକୁ ଚାଲି ଯାଇଛି । ସେ କଥା କହିଦେଲେ ।

ବ୍ରହ୍ମା ପୁଣି ବିଷ୍ଣୁଙ୍କୁ ସ୍ତୁତିକଲେ ଓ ସମସ୍ତ ଘଟଣା କହିଲେ । ଭଗବାନ ବିଷ୍ଣୁ ବ୍ରହ୍ମାଙ୍କ ଠାରୁ ସବୁ ଶୁଣିବା ପରେ କହିଲେ—"ଦେବବର ବ୍ରହ୍ମା; ତୁମେ ଚିନ୍ତା କରନାହିଁ । ମୁଁ ଏ କଳ୍ପର ପ୍ରଥମ ଅବତାର ମତ୍ସ୍ୟ ଅବତାର ଗ୍ରହଣ କରିବି । ଅଗାଧ ଜଳ ଭିତରେ ମାଛ ହିଁ ଅବାଧରେ ଗତି କରିପାରେ । ମୁଁ ମହାମତ୍ସ୍ୟ ରୂପରେ ପାତାଳପୁରୀକୁ ଯିବି ଓ ଶଙ୍ଖାସୁରକୁ ଯୁଦ୍ଧରେ ମାରି ତା ଗର୍ଭରୁ ବେଦ ବାହାର କରିବି ।"

ବ୍ରହ୍ମା ପଚାରିଲେ—"ଭଗବାନ ! ଆପଣ ମହାମତ୍ସ୍ୟ ରୂପେ କେଉଁଠି ଓ କେବେ ଜନ୍ମନେବେ ମୋତେ ସେ କଥା କୁହନ୍ତୁ ।" ବିଷ୍ଣୁ କହିଲେ—"ବ୍ରହ୍ମାଦେବ । ଗତ କଳ୍ପରେ ମୁଁ ମହାମତ୍ସ୍ୟ ରୂପେ ପ୍ରକଟ ହୋଇ ମହାପ୍ରଳୟ କାଳରେ ଜ୍ଞାନ, ଔଷଧ, ବୀଜ ମାନଙ୍କ ରକ୍ଷାକରିଥିଲି । ସେହି ମହାମତ୍ସ୍ୟ ବର୍ତ୍ତମାନ ସାଗରର ଅତଳ ଗର୍ଭରେ ଯୋଗଧ୍ୟାନ ରତ । ମୁଁ ସେହି ମହାମତ୍ସ୍ୟର ପାଟିରୁ 'ମତ୍ସ୍ୟନାରାୟଣ' ରୂପ ଧରି ପ୍ରକଟ ହେବି । ଏଥିରୁ ଉପରକୁ

ମୋର ଏ ବିଷ୍ଣୁ ରୂପ ରହିବ ଏବଂ ଅଣ୍ଡାଡଳ ଠାରୁ ମହାମତ୍ସ୍ୟର ରୂପ ରହିବ । ଏହି ରୂପରେ ମୁଁ ଶଙ୍ଖାସୁରକୁ ବଧ କରିବି ।"

ବ୍ରହ୍ମା ପଚାରିଲେ—"ପ୍ରଭୁ ! ଗତ କଳ୍ପରେ ଆପଣ କିପରି ମହାମତ୍ସ୍ୟ ରୂପେ ପ୍ରକଟ ହୋଇଥିଲେ ସେ କାହାଣୀ ମୋତେ କହି କୃତାର୍ଥ କରନ୍ତୁ ।"

ବିଷ୍ଣୁ କହିଲେ—ତେବେ ଶୁଣ ! ଗତ କଳ୍ପ ଶେଷ ହେବାପାଇଁ କିଛିଦିନ ଥିବା ଜାଣି-ପାରି ମୁଁ ମହାମତ୍ସ୍ୟ ରୂପେ ପ୍ରକଟ ହେବାକୁ ଇଚ୍ଛା କଲି କାରଣ କଳ୍ପାନ୍ତରେ ଯେଉଁ ମହା-ପ୍ରଳୟ ହେବ ସେଥିରୁ ଏ ସଂସାରର ମୂଳ ଓ ଲୋକ କଲ୍ୟାଣକାରୀ ଜିନିଷ ମାନଙ୍କୁ ରକ୍ଷା କରିବା ଥିଲା ମୋର ଉଦ୍ଦେଶ୍ୟ । ସେଗୁଡ଼ିକ ହେଲା ଜ୍ଞାନର ଆଧାର ଚାରିବେଦ, ଔଷଧି ସକଳ ଏବଂ ଜୀବ ଓ ବୃକ୍ଷଲତା, ଫଳପୁଷ୍ପ ସୃଷ୍ଟି କାରୀ ବୀଜ; ଏସବୁ ନଷ୍ଟ ହୋଇଗଲେ ନୂତନ କଳ୍ପରେ ସଂସାର ସର୍ଜନା ପାଇଁ ପୁଣି ବହୁତ ଶ୍ରମ ସ୍ୱୀକାର କରିବାକୁ ହୁଏ । ତେଣୁ ମୋତେ ପ୍ରଥମେ ସୁନେଲି ରଙ୍ଗର ଛୋଟ ମାଛଟିଏ ହୋଇ ନଦୀ ଜଳରେ ଜନ୍ମ ନେବାକୁ ହେଲା ।

ସେ ସମୟରେ ସତ୍ୟବ୍ରତ ବୋଲି ଜଣେ ରାଜର୍ଷି ଥିଲେ । ସେ ନଦୀରେ ସ୍ନାନ କରୁଥିବା ସମୟରେ ମୋତେ ସ୍ମରଣ କରି ଜଳ ଅଞ୍ଜୁଳି ଦେଉଥିଲେ । ମୁଁ ତାଙ୍କ ଭକ୍ତିରେ ସନ୍ତୁଷ୍ଟ ହେଲି ଏବଂ ଜଳ ଅଞ୍ଜୁଳି ଭିତରକୁ ଚାଲିଗଲି । ସତ୍ୟବ୍ରତ ମୋତେ ପୁଣି ନଦୀଜଳରେ ଛାଡ଼ି ଦେବାକୁ ଚାହିଁଲେ ମୁଁ ମଣିଷ ଭାଷାରେ କହିଲି—"ହେ ରାଜର୍ଷି ସତ୍ୟବ୍ରତ ! କେଉଟ ଦ୍ୱାରା ଜାଲରେ ଧରାପଡ଼ିବା ଭୟରେ କିମ୍ବା ବଡ଼ ମାଛ ମାନଙ୍କ ଆହାର ହୋଇଯିବା ଭୟରେ ମୁଁ ଆପଣଙ୍କ ଶରଣ ପଶିଛି । ଆପଣ ମୋତେ ନଦୀରେ ପୁଣି ଛାଡ଼ି ଦେଉଛନ୍ତି କାହିଁକି ? ମୋତେ ରକ୍ଷା କରନ୍ତୁ ।"

ରାଜର୍ଷି ସତ୍ୟବ୍ରତ ଆଶ୍ଚର୍ଯ୍ୟ ହେଲେ । ସେ ସେହି ନିଜ ସୁନାରଙ୍ଗର ମାଛଟିକୁ ନିଜ କମଣ୍ଡଳୁ ଭିତରେ ଥିବା ପାଣିରେ ଛାଡ଼ିଦେଲେ । ମାଛଟି କମଣ୍ଡଳୁ ଭିତରେ ମସ୍ତହୋଇ ଆନନ୍ଦରେ ଖେଳିବାକୁ ଲାଗିଲା । ସତ୍ୟବ୍ରତ ନିଜ ରାଜଧାନୀକୁ ଫେରିଗଲେ ।

ତା' ଆରଦିନ ସତ୍ୟବ୍ରତ ଦେଖିଲେ ମାଛଟି କମଣ୍ଡଳୁ ଭିତରେ ଖୁବ୍ ବଡ଼ ହୋଇଯାଇ ଛଟକାର କରୁଛି । ସତ୍ୟବ୍ରତଙ୍କୁ ଦେଖି ମୁଁ କହିଲି—"ହେ ରାଜର୍ଷି ! ଏ ଛୋଟିଆ କମଣ୍ଡଳୁ ଭିତରେ ମୋତେ ସ୍ଥାନ ଅଭାବ ହେଲାଣି; ମୋତେ କୌଣସି ବଡ଼ ପାଣିକୁଣ୍ଡରେ ରଖନ୍ତୁ" ।

ରାଜା ମୋତେ ନେଇ ପାଣି କୁଣ୍ଡରେ ରଖିଲେ । ମାତ୍ର କିଛି ସମୟ ପରେ ମୋ ଦେହଟା କୁଣ୍ଡଠାରୁ ମଧ୍ୟ ବଡ଼ ହୋଇଗଲା । ସେଠୁ ସେ ମୋତେ ବୋହି ନେଇ ଗୋଟିଏ ପୋଖରୀରେ ଛାଡ଼ିଦେଲେ । ମାତ୍ର ପୋଖରୀରେ ପଡ଼ିଁବୁ ପଡ଼ିଁବୁ ମୁଁ ପୋଖରୀ ଠାରୁ ମଧ୍ୟ ଆହୁରି ବଡ଼ ଆକାରର ମାଛ ହୋଇଗଲି । ରାଜର୍ଷି ସତ୍ୟବ୍ରତ ବିସ୍ମିତ ହୋଇଗଲେ ସେ ଥିଲେ ବିଷ୍ଣୁଭକ୍ତ । ଏସବୁ ମୋର ବିଷ୍ଣୁମାୟା ବୋଲି ସେ ଜାଣିଗଲେ । ପୋଖରୀରୁ ବାହାର କରି ସେ ଅତିକଷ୍ଟରେ ମୋତେ ନେଇ ଗୋଟାଏ ଖୁବ ବଡ଼ ନଦୀ ପାଣିରେ

ଛାଡ଼ି ଦେଲେ, ମାତ୍ର ସତ୍ୟବ୍ରତ ଦେଖିଲେ ଯେ ମୁଁ ଗୋଟାଏ ବିରାଟ ମାଛରେ ପରିଣତ ହୋଇ ସାରିଛି, ନଦୀର ପାଣି ମୋ ଦେହର ଅଧା ମଧ୍ୟ ବୁଡ଼ାଇ ପାରୁନାହିଁ । ତେଣୁ ସତ୍ୟବ୍ରତ ମୋତେ ନଦୀ ଧାରରେ ଠେଲି ଠେଲି ନେଇ ମୁହାଣ ରାସ୍ତାରୁ ମହାସମୁଦ୍ରରେ ପକାଇ ଦେଲେ । ସମୁଦ୍ରର ଅଗାଧ ଜଳ ରାଶିରେ ମୁଁ ଆହୁରି ବଡ଼ ହୋଇ ପଡ଼ୁଥାଏ । ସତ୍ୟବ୍ରତଙ୍କୁ କହିଲି— "ରାଜର୍ଷି, ମୋତେ ଏ ସମୁଦ୍ରରେ ଆଣି ଆପଣ ଛାଡ଼ି ଯାଉଛନ୍ତି, ସମୁଦ୍ରରେ ତିମି, ମଗର ଭଳି ଖୁବ୍ ବଡ଼ ବଡ଼ ମାଛ ଅଛନ୍ତି । ସେମାନେ ମୋତେ ମାରି ଦେଇ ପାରନ୍ତି । ତେଣୁ ମୋର ସୁରକ୍ଷା ପାଇଁ ଆପଣ ଅନ୍ୟ କିଛି ସ୍ଥାୟୀ ବ୍ୟବସ୍ଥା କରନ୍ତୁ ।"

ସତ୍ୟବ୍ରତ ହାତ ଯୋଡ଼ି କହିଲେ— "ହେ ପ୍ରଭୁ ! ଆପଣ ମୋତେ ଲଜ୍ଜିତ କରନ୍ତୁନି ! ଆପଣ ସ୍ୱୟଂ ମହାମତ୍ସ୍ୟ ରୂପି ଭଗବାନ ବିଷ୍ଣୁ । ପ୍ରତି କ୍ଷଣରେ ଯିଏ ଶହ ଶହ ଯୋଜନ ପର୍ଯ୍ୟନ୍ତ ନିଜର ଦେହ ବଢ଼ାଇ ପାରେ ଏ ମହାସମୁଦ୍ରର ଜଳଚର ଜୀବମାନେ ତାଙ୍କର କି କ୍ଷତି ବା କରିପାରିବେ ? ମୁଁ ବର୍ତ୍ତମାନ ଆପଣଙ୍କର ଶରଣ ପଶିଛି । ଅନ୍ୟ ଯାହା ଆଦେଶ ଦେବେ ମୁଁ ତାହା ପାଳନ କରିବା ପାଇଁ ପ୍ରସ୍ତୁତ ।"

ମୁଁ ସେତେବେଳେ ସତ୍ୟବ୍ରତଙ୍କୁ କହିଲି—"ରାଜର୍ଷି ! ତୁମ ଭକ୍ତିରେ ମୁଁ ସନ୍ତୁଷ୍ଟ । ଆଜି ମାତ୍ର ସପ୍ତାହକ ପରେ ଏହି କଳ୍ପ ଶେଷ ହୋଇଯିବ । କଳ୍ପାନ୍ତର ମହାପ୍ରଳୟ ଜଳରେ ସଚରାଚର ତ୍ରିଭୁବନ ବୁଡ଼ିଯିବ । ଚାରିଆଡ଼େ ଅନ୍ଧକାର ଘୋଟିଯିବ । ସେହି ପ୍ରଳୟ ଜଳ ତୁମର କିଛି କ୍ଷତି କରିପାରିବ ନାହିଁ । ସେ ଜଳ ଉପରେ ତୁମେ ଭାସୁ ଭାସୁ ଦେଖିପାରିବ ଗୋଟାଏ ବିରାଟ ନୌକା ସାତଟି ଆଲୋକ ବିନ୍ଦୁ ସହ ତୁମ ପାଖକୁ ଆସୁଥିବ । ତୁମେ ପୂର୍ବରୁ ଜ୍ଞାନ, ଔଷଧି ଓ ବୀଜର ସାରାଂଶ ଗୁଡ଼ିକ ନିଜ ପୁଣ୍ୟ ବଳରେ ସଂଗ୍ରହ କରି ରଖିଥିବ । ସେଗୁଡ଼ିକ ସହ ତୁମେ ସେହି ନୌକାରେ ଆଶ୍ରୟ ନେବ । ନୌକାରେ ପୂର୍ବରୁ ଯେଉଁ ସାତୋଟି ଆଲୋକ ବିନ୍ଦୁ ତୁମେ ଦେଖି ପାରିବ ସେମାନେ ହେଲେ ସପ୍ତର୍ଷିଙ୍କ ତେଜ ପୁଞ୍ଜ । ଠିକ୍ ସେତିକବେଳେ ତୁମେ ମୋତେ ସ୍ମରଣ କରିବ ଏବଂ ମୁଁ ଏହାଠାରୁ ଆହୁରି ବଢ଼ିଯାଇଥିବା ମତ୍ସ୍ୟ ଶରୀରରେ ସେ ପ୍ରଳୟ ଜଳରେ ଦେଖା ଦେବି, ମୋ ମୁଣ୍ଡ ଉପରେ ଗୋଟାଏ ସିଂଘ ମଧ୍ୟ ସେତେବେଳେ ତୁମେ ଦେଖି ପାରିବ । ସେ ଶୃଙ୍ଗକୁ ଗୁଡ଼ାଇ ହୋଇ ସୋଇଥିବ ଗୋଟାଏ ବିରାଟ ସର୍ପ । ତୁମେ ସେହି ସର୍ପକୁ ଦଉଡ଼ି ରୂପେ ବ୍ୟବହାର କରି ନୌକାଟିକୁ ଶୃଙ୍ଗ ସହ ବାନ୍ଧିଦେବ । ସେହି ନୌକାଟିକୁ ମୁଁ ଉତ୍ତର ଦିଗକୁ ଟାଣି ନେଇ ଯଥା ସ୍ଥାନରେ ସୁରକ୍ଷିତ କରି ରଖିବି । ଏହି ମହତ୍ କାର୍ଯ୍ୟ କରିଦେବା ଯୋଗୁଁ ଆସନ୍ତା କଳ୍ପରେ ତୁମେ ମନୁ ହୋଇ ପ୍ରକଟ ହେବ ଓ ତୁମର ନାମ ହେବ ବୈବସ୍ୱତ ମନୁ ।"

ଏହାପରେ ସତ୍ୟବ୍ରତ ମୋତେ ପ୍ରଣାମ ଜଣାଇ ଜ୍ଞାନ, ଔଷଧି ଓ ବୀଜ ସାର ସଂଗ୍ରହ ପାଇଁ ଚାଲିଯାଇଥିଲେ । ମୋର ଆଜ୍ଞା ଅନୁସାରେ ସେ ନିଜର କର୍ତ୍ତବ୍ୟ ସମ୍ପାଦନ କରି ସେହି ଜୀବନ ଗୁଡ଼ିକୁ ମହା ପ୍ରଳୟରୁ ରକ୍ଷା କରିଥିଲେ । ସୃଷ୍ଟି ସର୍ଜନା ପାଇଁ ମୁଁ ଏ କଳ୍ପରେ ସେ ସବୁ ତୁମକୁ ଦେଇ ସାରିଛି । ମାତ୍ର ଜ୍ଞାନର ଆଧାର ସ୍ୱରବେଦ ବର୍ତ୍ତମାନ

ଶଙ୍ଖାସୁର ଗର୍ଭକୁ ସ୍ୱଳିଯାଇଛି । ତାହାକୁ ବଧ କରିବା ପାଇଁ ମୋର ଅଂଶରୁ ପ୍ରକଟ ହୋଇଥିବା ମହାମତ୍ସ୍ୟ ବର୍ତ୍ତମାନ ମୋ ଅପେକ୍ଷାରେ ଅଛନ୍ତି । ମୁଁ ସେହି ମହାମତ୍ସ୍ୟରୁ 'ମତ୍ସ୍ୟନାରାୟଣ ଅବତାର ଧାରଣ କରିବି । ମୁଁ ଫେରିବା ପର୍ଯ୍ୟନ୍ତ ତୁମେ 'ସୃଷ୍ଟି ସର୍ଜନା କାର୍ଯ୍ୟ' ବନ୍ଦ ରଖି ଯୋଗଧ୍ୟାନ କରୁଥାଅ ।"

ବ୍ରହ୍ମା ଯୋଗଧ୍ୟାନରେ ବସିଗଲେ । ଏଥର ଭଗବାନ ବିଷ୍ଣୁ ମହାମତ୍ସ୍ୟ ଶରୀରରେ ପୁଣି ପ୍ରବେଶ କଲେ । ବିଶ୍ରାମ ନେଉଥିବା ସେହି ପ୍ରକାଣ୍ଡ ମାଛଟି ସାଗର ତମାମ ପହଁରି ପହଁରି ପାତାଳରେ ପହଞ୍ଚିଲା । ଶଙ୍ଖାସୁରର ସେନାପତି ସୋମକାସୁର ମହାମତ୍ସ୍ୟକୁ ଦେଖି ଆକ୍ରମଣ କଲା । ମାତ୍ର ମହାମତ୍ସ୍ୟ ସୋମକାସୁରକୁ ଗିଳି ପକାଇଲା । ଏଥିରେ ଭୟଭୀତ ହୋଇ ଶଙ୍ଖାସୁର ପ୍ରକାଣ୍ଡ ଶଙ୍ଖ ଆକାରରେ ପାତାଳ କ୍ଷୀର ସାଗର ଜଳରେ ପହଁରି ଲୁଚିବାକୁ ଚେଷ୍ଟା କଲା । ମାତ୍ର ମହାମତ୍ସ୍ୟ ଶଙ୍ଖାସୁରକୁ ଗୋଡ଼ାଇ ଗୋଡ଼ାଇ ଗୋଟିଏ ସ୍ଥାନରେ ଧରି ନେଲେ । ଶଙ୍ଖ ଭିତରୁ ଶଙ୍ଖାସୁର ଆସି ତାହାରି ମହାମତ୍ସ୍ୟକୁ ଆକ୍ରମଣ କଲା । ନିଜର ବିରାଟ ଗଦା ସାହାଯ୍ୟରେ ସେ ମହାମତ୍ସ୍ୟର ମୁଣ୍ଡକୁ ପିଟିଦେଲା । ମହାମତ୍ସ୍ୟର ପାଟି ମେଲା ହୋଇଗଲା ଆଉ ସେହି ପାଟି ଭିତରୁ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରୀ ବିଷ୍ଣୁ ପ୍ରକଟ ହେଲେ । ନିଜର ସୁଦର୍ଶନ ଚକ୍ର ଦ୍ୱାରା ଶଙ୍ଖାସୁରକୁ ସେ ଟିକି ଟିକି କରି କାଟି ଦେଲେ । ତା' ପେଟ ଭିତରୁ ଶ୍ୱେତ, ଲୋହିତ, ପୀତ ଓ ନୀଳ ରଙ୍ଗର ଚାରିବେଦ ଖସି ପଡ଼ିଲେ । ବିଷ୍ଣୁ ସେମାନଙ୍କୁ ଧରି ବ୍ରହ୍ମାଙ୍କ ପାଖକୁ ଗଲେ ।

ମତ୍ସ୍ୟରୂପୀ ନାରାୟଣଙ୍କୁ ଦର୍ଶନ କରି ବ୍ରହ୍ମା ଆନନ୍ଦରେ ଗଦ୍ ଗଦ୍ ହୋଇ ନିଜର ଚାରି ମୁଖରେ ସ୍ତୁତି କରିବାକୁ ଲାଗିଲେ । ସ୍ୱର୍ଗରୁ ଦେବତା ମାନେ ମଧ୍ୟ ସେହି ମୀନ ରୂପଧାରୀ ଭଗବାନଙ୍କୁ ଦର୍ଶନ କରି ଧନ୍ୟ ହେଲେ । ବ୍ରହ୍ମା କହିଲେ—"ହେ ପ୍ରଭୁ ! ବିପଦ କାଳରେ ହେଉ କି ସମ୍ପଦ କାଳରେ ହେଉ ଯିଏ ଆପଣଙ୍କ ଏହି ଆଦ୍ୟ ଅବତାରକୁ ଧ୍ୟାନ କରିବ ତାହାର ସମସ୍ତ ବିପଦ ଘୁଞ୍ଚିଯାଉ । ଆପଣ ମୋର ଦୁଃଖ ଦୂର କରିଥିବାରୁ ମୁଁ ଆପଣଙ୍କ ଚରଣରେ ବାରମ୍ବାର ପ୍ରଣାମ କରୁଅଛି ।" ଭଗବାନ ନାରାୟଣ କହିଲେ— "ତଥାସ୍ତୁ ! ହେ ବ୍ରହ୍ମା ଏହି ଚାରିବେଦକୁ ତୁମେ ଏଣିକି ଅତି ସତର୍କରେ ରଖିବ । ପୃଥିବୀରେ ମାନବ ସୃଷ୍ଟି ପାଇଁ ତୁମେ ମୋର ଏହି ପ୍ରଥମ ଅବତାର ମୀନ ରୂପକ ପ୍ରାଣୀ ସର୍ଜନା କର । ଏବେ ନୂଆ ହୋଇ ଗଢ଼ା ହୋଇଥିବା ପୃଥିବୀ ତମାମ କେବଳ ଜଳପୂର୍ଣ୍ଣ ହୋଇ ରହିଛି । କ୍ରମେ ଜଳସ୍ତର କମି ଯିବ ଓ ସ୍ଥଳ ଭାଗ ଦେଖାଦେବ । ସ୍ଥଳଭାଗ ପ୍ରକଟ ହେଲା ପର୍ଯ୍ୟନ୍ତ ତୁମେ ମତ୍ସ୍ୟ ଜାତୀୟ ଜଳଚର ପ୍ରାଣୀ ସୃଷ୍ଟି କରି ପୃଥିବୀରେ ପ୍ରାଣୀ ସଂଖ୍ୟା ବଢ଼ାଅ ।"

ବ୍ରହ୍ମା ଭଗବାନଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲେ । ବିଷ୍ଣୁ ମତ୍ସ୍ୟାବତାର କାର୍ଯ୍ୟ ଶେଷ କରି ନିଜର ବୈକୁଣ୍ଠକୁ ଫେରିଗଲେ ।

—o—




ଶିଙ୍ଘାସୁର ଓ ସୋମକାସୁର ମଲାପରେ ଅସୁର ମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା । ଦେବତା ମାନଙ୍କ ସହିତ ତାଙ୍କ ଶତ୍ରୁ ପଣିଆ ବଢ଼ିଗଲା । ସବୁବେଳେ ଦେବ ଓ ଦାନବଙ୍କ ମଧ୍ୟରେ କଳହ ବଢ଼ିବାକୁ ଲାଗିଲା । ରାକ୍ଷସ ମାନଙ୍କ ଉତ୍ପାତ ଯୋଗୁଁ ଦେବତା ମାନେ ଅତିଷ୍ଠ ହୋଇଗଲେ । ସେମାନେ ବ୍ରହ୍ମା ଓ ଶିବଙ୍କୁ ଧରି ଯାଇ ବିଷ୍ଣୁଙ୍କୁ ଗୁହାରି ଜଣାଇଲେ ।

ବ୍ରହ୍ମା ବିଷ୍ଣୁଙ୍କୁ ପଚାରିଲେ—ପ୍ରଭୁ ! ଯୁଗେ ଯୁଗେ ଦାନବ ଗଣ ଦେବତା ମାନଙ୍କୁ କଷ୍ଟ ଦେବେ ବୋଲି ଜାଣି ଜାଣି ଆପଣ ସେମାନଙ୍କୁ ସୃଷ୍ଟି କରିବା ପାଇଁ ଇଚ୍ଛା କଲେ କାହିଁକି ? ”

ବିଷ୍ଣୁ କହିଲେ—“ହେ ଦେବଗଣ ! ଦାନବ ମାନଙ୍କ ଦ୍ୱାରା ବହୁତ ଦେବ କାର୍ଯ୍ୟ ହେବ ; ତେଣୁ ସେମାନଙ୍କୁ ସୃଷ୍ଟି କରାଯାଇଥିବା କଥା ବୋଧେ ଆପଣମାନେ ମଧ୍ୟ ଜାଣନ୍ତି ନାହିଁ । ଦେବତା ମାନଙ୍କ ଦେବତ୍ୱ ପାଇଁ ‘ଅମୃତ’ ନିହାତି ଦରକାର । ଏହି ପବିତ୍ର ଅମୃତ ଗତ ମହାପ୍ରଳୟ କାଳରେ ପ୍ରଳୟ ଜଳର ଅତଳ ଗର୍ଭରେ ଲୁଚି ରହିଛି ।

ଅନ୍ୟାନ୍ୟ ଦୁର୍ଲଭ ଜିନିଷ ମଧ୍ୟ ସେ ଜଳ ମଧ୍ୟରେ ଏ ପର୍ଯ୍ୟନ୍ତ ଅଜ୍ଞାତ ଅବସ୍ଥାରେ ରହିଛି । ସେହି ଅମୃତ ଓ ଅନ୍ୟାନ୍ୟ ଦୁର୍ଲଭ ପଦାର୍ଥ ପାଇବା ପାଇଁ ଏହି ସାଗର ଜଳକୁ ମନ୍ଥିବାକୁ ପଡ଼ିବ । କିନ୍ତୁ ଏ ସାଗର ମନ୍ଥନ କାମଟା ସହଜସାଧ୍ୟ ନୁହେଁ । ଦେବତା ମାନଙ୍କ ଠାରୁ ବଳରେ ଅଧିକ ଓ ସଂଖ୍ୟାରେ ଅଧିକ କେବଳ ଅସୁର ମାନଙ୍କ ସାହାଯ୍ୟରେ ହିଁ ଦେବତା ମାନେ ସମୁଦ୍ର ମନ୍ଥନ କରିପାରିବେ । ସେଥିପାଇଁ ମୁଖ୍ୟତଃ ଅସୁର ମାନଙ୍କ ସୃଷ୍ଟି କରା-ଯାଇଛି ।

ସମସ୍ତ ଦେବତା ବର୍ତ୍ତମାନ ଠାରୁ ଦାନବ ମାନଙ୍କ ସହିତ ମିତ୍ରତା ସ୍ଥାପନ କରନ୍ତୁ । ସେମାନଙ୍କୁ ଅମୃତ ମିଳିବ ବୋଲି ଆଶା ଦେଖାଇ ସମୁଦ୍ର ମନ୍ଥିବା ବ୍ୟବସ୍ଥା କରନ୍ତୁ ।"

"ଇନ୍ଦ୍ର ହେଉଛନ୍ତି ଦେବତା ମାନଙ୍କ ରାଜା । ସେ ପଚାରିଲେ ପ୍ରଭୁ ! ଏତେ ବଡ଼ ସମୁଦ୍ରକୁ କି ଉପାୟରେ ମନ୍ଥାଯାଇ ପାରିବ ଆମକୁ ଆଶ୍ଚର୍ଯ୍ୟ ଲାଗୁଛି । ସନ୍ଦେହ ମୋଚନ କରନ୍ତୁ ।"

ନାରାୟଣ କହିଲେ—"ପୃଥିବୀ ପୃଷ୍ଠରେ ଥିବା ମନ୍ଦର ପର୍ବତକୁ ଆଣି ଏ ସାଗର ଜଳରେ ନିକ୍ଷେପ କରିବା ପାଇଁ ହେବ । ଏହା ହେବ ମନ୍ଥନ ପାଇଁ ମନ୍ଥନ ଦଣ୍ଡ । ଆଉ ମୁଁ ଶୟନ କରିଥିବା ଶିବଙ୍କ ଅଂଶ ସମ୍ଭୂତ ଏଇ ଶେଷନାଗ ହେବ ମନ୍ଥନ ରଜ୍ଜୁ । ସର୍ପର ମୁହଁ ପଟେ ଅସୁର ମାନେ ରହିବେ ଏବଂ ଲାଙ୍ଗୁଡ଼ ପଟେ ଦେବତା ମାନେ ରହି ଏହାକୁ ଟାଣିବେ । ଫଳରେ ସମୁଦ୍ର ଦହି ମନ୍ଥିବା ଭଳି ମନ୍ଥି ହୋଇଯିବ ।"

ବାୟୁଦେବତା କହିଲେ—"ମନ୍ଦର ପର୍ବତର ଆୟତନ ଏଗାର ସହସ୍ର ଯୋଜନ । ତଥାପି ଏ ପ୍ରଳୟ ଜଳର ଅନନ୍ତ ଗର୍ଭରେ ତାହା କେଉଁଆଡେ ବୁଡ଼ି ଲୁଚିଯିବ କହିହେବ ନାହିଁ । ଏଇଟା କ'ଣ ମନ୍ଥନ ପାଇଁ ମନ୍ଥନ ଦଣ୍ଡ ହୋଇପାରିବ ପ୍ରଭୁ ? "

ନାରାୟଣ କହିଲେ—"ମନ୍ଦର ପର୍ବତ ଅଗାଧ ଜଳରେ ଯେପରି ବୁଡ଼ି ନଯାଏ ମୁଁ ତାହାର ବ୍ୟବସ୍ଥା କରିବି, ମୋତେ ଏଥିପାଇଁ ଏ କଳ୍ପର ଦ୍ୱିତୀୟ ଅବତାର ଗ୍ରହଣ କରିବାକୁ ପଡ଼ିବ । ଏହା ହେବ ମୋର କଚ୍ଛପ ଅବତାର । କଚ୍ଛପର ଉନାକାର ପୃଷ୍ଠରେ ମନ୍ଦର ପର୍ବତ କୁ ମୁଁ ଟେକି ଧରିବି । ଏହା ଅଗାଧ ଜଳରେ ଆଉ ବୁଡ଼ିଯିବ ନାହିଁ ଓ ମନ୍ଥନ ପ୍ରକ୍ରିୟା ସହଜରେ ହୋଇପାରିବ ।"

ଦେବତା ମାନେ ଏଥିରେ ଶ୍ରୀହରିଙ୍କ ଜୟଧ୍ୱନି କରି ଚାଲିଗଲେ । ସାଗର ମନ୍ଥିବା ପାଇଁ ଆୟୋଜନ ଚାଲିଲା । ଦାନବ ମାନଙ୍କୁ ଅମୃତ ମିଳିଯିବ ବୋଲି ଦେବତା ମାନେ ଆଶା ଦେଖାଇବାରୁ ସେମାନେ ସମୁଦ୍ର ମନ୍ଥନରେ ସହଯୋଗ କରିବେ ବୋଲି ରାଜି ହେଲେ । ଦେବତା ଓ ଅସୁର ମାନଙ୍କ ମଧ୍ୟରେ ଶତ୍ରୁତା ଆଉ ରହିଲା ନାହିଁ । ଏଣିକି ସେମାନେ ଭାଇ ଭାଇ ମିଳିମିଶି ରହିବାକୁ ଲାଗିଲେ ।

ସବୁ ଆୟୋଜନ ସରେ ପରେ ଭଗବାନ ବିଷ୍ଣୁଙ୍କ ପରାମର୍ଶରେ ମନ୍ଦର ଭଳି ବିରାଟ ପର୍ବତକୁ ଆଣି ପ୍ରଳୟ ସମୁଦ୍ର ଜଳରେ ପକାଗଲା । ପ୍ରଥମେ ତାହା ଅଗାଧ ଜଳରେ ବୁଡ଼ିଗଲା । ମାତ୍ର ପରମୁହୂର୍ତ୍ତରେ ଏହା ପୁଣି ଜଳ ଉପରକୁ ଉଠିଲା । ଏଣେ ନାରାୟଣ ଏକ ବିରାଟ କଚ୍ଛପ ଆକାର ଧରି ପର୍ବତଟିକୁ ଟେକି ଧରିଥାନ୍ତି । ଏଥର ପର୍ବତ ଦେହରେ ଶେଷ-ନାଗକୁ ଦଉଡ଼ି ଭଳି ଗୁଡ଼ା ହେଲା । ରାକ୍ଷସମାନେ ଜିଦ୍ ଧରିଲେ ଯେ ସେମାନେ ସର୍ପର ମୁଣ୍ଡପାଖଟି ଧରିବେ । ଲାଞ୍ଜ ପାଖଟି ଧରିବା ଅସମ୍ମାନ ଜନକ ବୋଲି ସେମାନେ ଭାବୁଥିଲେ । ଭଗବାନ ଆଗରୁ ସାପର ଲାଞ୍ଜ ପାଖ ଧରିବା ପାଇଁ ଦେବତାମାନଙ୍କୁ କହିଥିବାରୁ ସେମାନେ ଆଉ ପ୍ରତିବାଦ ନକରି ଲାଞ୍ଜ ପାଖ ଧରିଲେ । ତାପରେ ଚାଲିଲା ସମୁଦ୍ର ମନ୍ଥନ । ସମୁଦ୍ରର ଜଳ ଭଉଁରି ମାରି ଉପରକୁ ଉଠିଲା । ଫେଣ ସବୁ ମହାକାଶକୁ ଛୁଇଁକି ପଡ଼ିଲା । ଅଗାଧ ଜଳ ଓଲଟ ପାଲଟ ହେବାକୁ ଲାଗିଲା । ତଳୁ ସବୁ ଜୀବଜନ୍ତୁ କ୍ରମେ ଉପରକୁ ଆସିଗଲେ । ଘର୍ଷଣର ଚାପ ମନ୍ଦର ପର୍ବତ ସହି ପାରୁନଥାଏ କିନ୍ତୁ ଭଗବାନ ବିଷ୍ଣୁ ଏଣେ ସେ ଚାପ ସହି କଚ୍ଛପ ରୂପେ ପର୍ବତକୁ ଆଶ୍ରମ ଦେଉଥାନ୍ତି । ଦେବତା ମାନଙ୍କୁ ରାକ୍ଷସ ମାନେ ନିଜର ବଳ ଦେଖାଇ ପରିହାସ କରୁଥାନ୍ତି । ଶେଷନାଗ ଦାଉରୀକୁ ଦଉଡ଼ି ଭଳି ପ୍ରବଳ ଟଣା ଓଟରା କରିବାରୁ ତା ଫଣାରୁ ବାହାରିଲା ସର୍ବଗ୍ରାସୀ ଗରଳ । ସେ ହଳାହଳ ବିଷର ବର୍ଣ୍ଣଥିଲା ଗାଢ଼ ନୀଳ ବର୍ଣ୍ଣ ଏବଂ ତାହାର ବାଷ୍ପ ଥିଲା ପ୍ରଳୟ ଅଗ୍ନି ଭଳି ଉତପ୍ତ । ତାହା ବାହାରିବାରୁ ସାରା ବିଶ୍ୱ ବ୍ରହ୍ମାଣ୍ଡ ଜଳ ପୋଡ଼ି ଯିବାକୁ ଲାଗିଲା । ଦେବତା ଓ ରାକ୍ଷସ ମାନେ ଆଉ ସର୍ପକୁ ଧରିବେ କ'ଣ ଛାଡ଼ି ଦେଇ ଯାହି ଯାହି ଡାକ ପକାଇଲେ ।

ଭଗବାନ ବିଷ୍ଣୁ ତ କଚ୍ଛପ ଅବତାର ଗ୍ରହଣ କରି ଅଗାଧ ଜଳରେ ବୁଡ଼ି ରହିଥିଲେ ତେଣୁ ସମସ୍ତେ ଏହି ବିପଦରୁ ଉଦ୍ଧାର କରିବା ନିମନ୍ତେ ଦେବ ଦେବ ମହାଦେବଙ୍କୁ କାତର ପ୍ରାର୍ଥନା କଲେ । ଶିବ ସଙ୍ଗେ ସଙ୍ଗେ ସେଠାରେ ପ୍ରକଟ ହେଲେ ଏବଂ ବାସୁକୀର ହଳାହଳ ବିଷକୁ ନିଜର ଅପାର ଶକ୍ତି ବଳରେ ପାନ କଲେ । ସେ ଉତ୍କଟ ବିଷ ପିଇଦେବାରୁ ଶିବଙ୍କର କଣ୍ଠ ଦେଖି ବିଷ ପ୍ରଭାବରୁ ନୀଳବର୍ଣ୍ଣ ହୋଇଗଲା । ସେହି ଦିନଠାରୁ ତାହାଙ୍କର ଅନ୍ୟ ଗୋଟିଏ ନାମ ହେଲା ନୀଳକଣ୍ଠ । ଶିବ ସମସ୍ତ ଜଗତକୁ ଧ୍ୱଂସ ମୁଖରୁ ବଞ୍ଚାଇ ଦେଲେ ଅଥଚ ବିଷ ପ୍ରଭାବରେ ସେ ଦବୃଦନ ପାଇଁ ଜ୍ୱାଳା ଅନୁଭବ କଲେ । ତାଙ୍କ ଶରୀରକୁ ଶୀତଳ କରିବା ନିମନ୍ତେ ସେହି ଦିନଠାରୁ ଶୀତଳ ଜଳ, ଶୀତଳ କ୍ଷୀର ତାଙ୍କ ଦେହରେ ଢଳା ଯାଉଛି । ଥଣ୍ଡା ବୋଲି ସେ ନାଗ ସାପକୁ ମଧ୍ୟ କଣ୍ଠରେ ଗୁଡ଼ାଇ ଅଛନ୍ତି । କେବଳ ସେତିକି ନୁହେଁ ସମୁଦ୍ର ମନ୍ଥନ ସମୟରେ ପ୍ରଥମେ ସେଥିରୁ ଚନ୍ଦ୍ର ବାହାରିଲେ ଏବଂ ଭଗବାନ ଶିବ ଶୀତଳ ବୋଲି ଚନ୍ଦ୍ରଙ୍କୁ ନିଜ ଶିରରେ ଧାରଣ କଲେ ଓ ଚନ୍ଦ୍ରଶେଖର ବା ଚନ୍ଦ୍ର କଳେଶ୍ୱର ନାମରେ ନାମିତ ହେଲେ ।

କ୍ରମେ ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଜାତ ହେଲେ । ସେ ବୈଜୟନ୍ତୀ ମାଳା ଧରି ଭଗବାନ ବିଷ୍ଣୁଙ୍କୁ ବରଣ କଲେ ଓ ତାଙ୍କର ପତ୍ନୀ ହୋଇଗଲେ । ସେହିଦିନୁ ବିଷ୍ଣୁଙ୍କର ଅନ୍ୟ ନାମ

ହେଲ ଲକ୍ଷ୍ମୀକାନ୍ତ । ଉଚ୍ଚୈଃଶ୍ରବା ଅଶ୍ୱ, କଳ୍ପବୃକ୍ଷ, କାମଧେନୁ, ଐରାବତ ହସ୍ତୀ ଏଭଳି ସମୁଦ୍ର ମନ୍ଥନରୁ ଯେଉଁ ଦୁର୍ଲଭ ରତ୍ନ ସବୁ ବାହାରିଲା ସେ ଗୁଡ଼ିକ ରାକ୍ଷସମାନେ ନେବାକୁ ଚାହିଁଲେ ନାହିଁ । ଫଳରେ ଦେବତାମାନେ ସେ ସବୁ ନେଇଗଲେ । ରାକ୍ଷସ ମାନଙ୍କର ଏକ ମାତ୍ର ଉଦ୍ଦେଶ୍ୟ ଥିଲା ପାଇବା ପାଇଁ ଅମୃତ । ସେମାନେ ବଳଶାଳୀ ଥିବାରୁ ଠାକି ରଖିଥିଲେ ଯେ ଅମୃତ ପାଇବା ଷଣି ଜବରଦସ୍ତ ତାହାନେଇ ପିଇଯିବେ ।

ଦେବତାମାନେ ପ୍ରମାଦ ଗଣୁଥାନ୍ତି । ରାକ୍ଷସମାନେ ଯଦି ଅମୃତ ପିଇଯାଆନ୍ତି ତେବେ କଥା ସରିଯିବ । ସେ ଦୁଷ୍ଟମାନେ ଅମର ହୋଇ ଏ ସଚରାଚର ବ୍ରହ୍ମାଣ୍ଡକୁ ଅଧିକାର କରିନେବେ । ଦେବତା ଆଉ ମଣିଷ ମାନଙ୍କୁ ଯୁଗ ଯୁଗ ଧରି ନିର୍ଯ୍ୟାତନା ଦେବେ । ଏଥିରୁ ରକ୍ଷା କରିବା ପାଇଁ ସେମାନେ "ସର୍ବେ ହୋଇଣ ଏକମୁଖ : କହିଲେ ନାରାୟଣ ରଖ ।"

ଶେଶେପରେ ବିଷ୍ଣୁଙ୍କ ଅଂଶରେ ଭଗବାନ ଧନ୍ୱନ୍ତରି ହାତରେ ଅମୃତ କଳସ ଓ ଔଷଧ ସବୁ ନେଇ ସମୁଦ୍ରରୁ ବାହାରିଲେ । ଅମୃତକୁ ଦେବତାମାନେ ନେବାପାଇଁ ଆଗଭର ହେଲେ ମାତ୍ର ଦାନବମାନେ ତ ଏହି ସୁଯୋଗକୁ ଜଗି ବସିଥିଲେ ସେମାନେ ଅମୃତକୁ ଛାଡ଼ିଲେ ନାହିଁ । ଦେବ ଓ ଦାନବଙ୍କ ମଧ୍ୟରେ ଲାଗିଗଲା ଘୋର ଯୁଦ୍ଧ । ପ୍ରବଳ ପରାକ୍ରାନ୍ତ ରାକ୍ଷସ ମାନଙ୍କୁ ଦେବତାମାନେ ପାରିଲେ ନାହିଁ । ରାକ୍ଷସମାନେ ଅମୃତ କଳସ ଛଡ଼ାଇ ନେଲେ । ଦେବତାମାନେ ହତାଶ ହୋଇ ପଡ଼ିଲେ । ତଥାପି ଭଗବାନ ବିଷ୍ଣୁଙ୍କୁ ସେମାନେ ସ୍ମରଣ କରୁଥାନ୍ତି ।

ବିଷ୍ଣୁ ମାୟା ଆରମ୍ଭ ହେବ । ରାକ୍ଷସମାନଙ୍କ ଭିତରୁ କିଏ ଆଗ ଅମୃତ ଖାଇବ ସ୍ଥିର ହୋଇ ପାରୁନଥିଲା । ଫଳରେ ସେମାନେ ଅମୃତ ପିଇବେ କ'ଣ ନିଜ ନିଜ ମଧ୍ୟରେ ଝଗଡ଼ା ଆରମ୍ଭ କରିଦେଲେ । ଠିକ୍ ଏହି ସମୟରେ ଭଗବାନ ବିଷ୍ଣୁ କଚ୍ଛପ ଅବତାର ତ୍ୟାଗକରି ଜଗତ୍ ମୋହିନୀ ରୂପରେ ଦେଖାଦେଲେ । ରାକ୍ଷସମାନେ ହଠାତ୍ ଜଣେ ଅପୂର୍ବ ସୁନ୍ଦରୀଙ୍କୁ ଦେଖିପାରି ମୁଗ୍ଧ ହୋଇଗଲେ । ସେହି ମୋହିନୀ ନାରୀ ରାକ୍ଷସମାନଙ୍କୁ ମୋହିତ କରି ଅମୃତ କଳସଟିକୁ ହାତକୁ ନେଲେ । ମଧୁର ସ୍ୱରରେ କହିଲେ—"ତୁମେ ସବୁ କଳହ କରୁଛ କାହିଁକି ? ଧାଡ଼ିବାନ୍ଧି ବସିଯାଅ ମୁଁ ସମସ୍ତଙ୍କୁ ସମାନ ଭାବରେ ଏ ଅମୃତ ବାଣ୍ଟି-ଦେବି ।" ଏଥିରେ ରାକ୍ଷସମାନେ ରାଜିହେଲେ ଓ ଧାଡିବାନ୍ଧି ବସିଗଲେ । ତା' ପରେ ଜଗତ ମୋହିନୀ ଦେବତାମାନଙ୍କୁ ମଧ୍ୟ ଧାଡ଼ିବାନ୍ଧି ବସିବା ପାଇଁ କହିଲେ । ଦେବତାମାନେ ପ୍ରଥମେ ଏ ଜଗତ୍ ମୋହିନୀ କିଏ ଏବଂ କେଉଁଠାରୁ ଆସିଲେ ଚିହ୍ନାଣି ପାଇନଥାନ୍ତି । ମାତ୍ର ବିଷ୍ଣୁଙ୍କ ମାୟା ବୋଲି ପରେ ସେମାନେ ଜାଣି ଚୁପ୍ ଚାପ୍ ଧାଡ଼ି ବାନ୍ଧି ବସିଗଲେ ।

ଏଥର ବିଷ୍ଣୁ ମୋହିନୀ ନିଜ ମାୟାବଳରେ ଦେବତାମାନଙ୍କୁ ଅମୃତ ଆଉ ଦାନବ ମାନଙ୍କୁ ମଦ୍ୟ ପରଷି ଦେଇ ଗଲେ । ସେ ମଦ୍ୟ ପାନକରି ରାକ୍ଷସମାନେ ମାତାଲ ହୋଇଗଲେ । ସେମାନଙ୍କ ବୁଦ୍ଧି ବିବେକ କିଛି କାମ କଲା ନାହିଁ ସେମାନେ ବଳହୀନ ହୋଇ ବହିବା ସ୍ଥାନରେ ହିଁ ଘୁମାଇବାକୁ ଲାଗିଲେ । ଏଣେ ଦେବତାମାନେ ଅମୃତ ପାନକରି ଅମର ହେବା ସଙ୍ଗେ ସଙ୍ଗେ ବେଶ୍ ବଳବାନ୍ ହୋଇ ଉଠିଥାନ୍ତି ।

ସମସ୍ତଙ୍କର ତେଜ ବଢ଼ିଯାଉଥାଏ । ଅସୁରମାନଙ୍କ ଧାଡ଼ିରେ ବସିଥିଲା କାଳରାକ୍ଷସ। ସିଂହିକାର ପୁଅ ରାହୁକେତୁ । ସେ ଥିଲା ବଡ଼ ମାୟାବି ଓ ଚତୁର । ଦେବତାମାନଙ୍କ ତେଜ ଓ ଅନ୍ୟ ପକ୍ଷରେ ରାକ୍ଷସମାନଙ୍କର ମଳିନତା ଦେଖି ତା ମନରେ ସନ୍ଦେହ ହେଲା । ସେ ଅନୁମାନ କରିନେଲା ଯେ ମୋହିନୀ ନାରୀ ରାକ୍ଷସମାନଙ୍କୁ ମୋହିତ କରି ଦେବତା ମାନଙ୍କୁ ଅମୃତ ଦେଉଛନ୍ତି । ତେଣୁ ସେ ଚଟାପଟ ନିଜର ରୂପ ବଦଳାଇ ଦେବତା ରୂପ ଗ୍ରହଣ କଲା ଏବଂ ଦେବତା ମାନଙ୍କ ଧାଡ଼ିରେ ବସିପଡ଼ିଲା ଅମୃତ ମଧ୍ୟ ପାନ କରିଦେଲା । ଏକଥା ଚନ୍ଦ୍ର,ସୂର୍ଯ୍ୟ ଦେଖିପାରି ମୋହିନୀ ବିଷ୍ଣୁଙ୍କୁ କହିଦେଲେ । ବିଷ୍ଣୁ ସୁଦର୍ଶନ ଚକ୍ରରେ ରାକ୍ଷସର ମୁଣ୍ଡଟାକୁ ହାଣି ଦେଲେ । ମାତ୍ର ସେ ତ ଅମୃତ ଖାଇ ସାରିଛି ।-ତା'ର କିଛି କ୍ଷତି ହେଲା ନାହିଁ । କଟା ଯାଇଥିବା ମୁଣ୍ଡ ଓ ଗଣ୍ଡି ଉଭୟ ଯାକ ବଞ୍ଚିରହିଲା । ଆଉ କିଛି ଉପାୟ ନଥିଲା । ଭଗବାନ ଏହି ଦୁଇଟିଯାକ ସଜୀବ ଅଂଶକୁ ଗ୍ରହମଣ୍ଡଳରେ ସ୍ଥାନ ଦେଲେ । ପୂର୍ବରୁ ସାତୋଟି ମାତ୍ର ଗ୍ରହ ସୃଷ୍ଟି ହୋଇଥିଲେ । ସେଥିରେ ରାହୁ ଓ କେତୁ ନାମକ ଆଉ ଦୁଇଟି ଗ୍ରହ ରହିବାରୁ ନବଗ୍ରହ ହେଲେ । ରାହୁ ଓ କେତୁର ରାଗ ସୂର୍ଯ୍ୟ, ଚନ୍ଦ୍ର ଉପରେ ରହିଗଲା । ବିଷ୍ଣୁଙ୍କୁ ଏ ଦୁଇଜଣ କହିଦେବାରୁ ତା'ର ଏ ଭଳି ଦୁଇଟି ଦେହ ହୋଇଗଲା ତେଣୁ ସୁଯୋଗ ପାଇଲେ କୌଣସି କୌଣସି ଅମାବାସ୍ୟାରେ ସୂର୍ଯ୍ୟଙ୍କୁ ଏବଂ ପୂର୍ଣ୍ଣିମାରେ ଚନ୍ଦ୍ରଙ୍କୁ କେତୁ ବା ରାହୁ ଗିଳି ପକାନ୍ତି । ମାତ୍ର କିଛି ସମୟ ପରେ ଚନ୍ଦ୍ର, ସୂର୍ଯ୍ୟ ନିଜ ପ୍ରଭାବ ଯୋଗୁଁ ମୁକ୍ତ ହୋଇଯାନ୍ତି । ଏହାକୁ ସୂର୍ଯ୍ୟୋପରାଗ ବା ଚନ୍ଦ୍ରଗ୍ରହଣ ବୋଲି କୁହାଯାଏ ।

ଦେବତାମାନଙ୍କୁ ଅମୃତ ଦେଇ ଅମର କରାଇ ଦେଇ ଭଗବାନ ବିଷ୍ଣୁ ନିଜର ମାୟା ମୋହିନୀ ରୂପ ତ୍ୟାଗ କରି ବୈକୁଣ୍ଠକୁ ଫେରିଗଲେ । ମୋହିନୀ କନ୍ୟାଙ୍କ ଅନ୍ତର୍ଦ୍ଧାନ ପରେ ରାକ୍ଷସମାନଙ୍କର ମୋହ ଭାଙ୍ଗି ଗଲା । ସେମାନେ ନିଜର ମୂର୍ଖତା ବୁଝି ପାରିଲେ ଓ ଅନୁତାପ କଲେ । ଦେବତାମାନଙ୍କ ଉପରେ ପୁଣି ସେମାନେ ବିଗିଡ଼ି ଗଲେ ଓ ସେମାନଙ୍କୁ ନିଜର ଚିର ଶତ୍ରୁ ବୋଲି ମନେକଲେ । ସୁଯୋଗ ଦେଖି ଦେବତାମାନଙ୍କୁ ବିଶେଷତଃ ମାୟାବୀ ବିଷ୍ଣୁଙ୍କୁ ଠିକଣା ଜବାବ ଦେବା ପାଇଁ ସଙ୍କଳ୍ପ ହେଲେ ।

ବିଷ୍ଣୁ ବ୍ରହ୍ମାଙ୍କୁ ସୂଚାଇ ଦେଲେ ଯେ ପୃଥିବୀରେ ସ୍ଥଳଭାଗ ଦେଖା ଦେଲାଣି । ଏଥର ଜଳ ଓ ସ୍ଥଳ ଉଭୟ ସ୍ଥାନରେ ରହିପାରିବା ଭଳି କଚ୍ଛପ ଜାତୀୟ ପ୍ରାଣୀ ସର୍ଜନା କରନ୍ତୁ । ବ୍ରହ୍ମା ସେହିଭଳି ପ୍ରାଣୀ ସୃଷ୍ଟି ପାଇଁ ମନଦେଲେ । ବିଷ୍ଣୁ ନିଜ ବୈକୁଣ୍ଠ ସୁଖରେ ବିଶ୍ରାମ ନେଲେ । ମାତା ଲକ୍ଷ୍ମୀ ତାଙ୍କର ପଦ ସେବାରେ ଲାଗିଥାନ୍ତି । ବିଶ୍ରାମ ସମୟରେ ପ୍ରଭୁ ତାହାଙ୍କୁ ଦର୍ଶନ ନଦେବା ପାଇଁ ନିଜର ଦୁଇ ଦ୍ୱାରପାଳ ଜୟ ଓ ବିଜୟଙ୍କୁ ନିଯୁକ୍ତ କରି ବିଶ୍ରାମ ନେଲେ ।

—୦—




ବ୍ରହ୍ମାଙ୍କର ଚାରିପୁତ୍ର ସନକ, ସନନ୍ଦ, ସନତ ଓ ସନାତନ ବିଷ୍ଣୁଙ୍କ ଦର୍ଶନ ପାଇଁ ଥରେ ବୈକୁଣ୍ଠକୁ ଗଲେ । ସେମାନେ ଜଗତ୍ ପିତାଙ୍କ ଦର୍ଶନ ପାଇଁ ଯାଉଥିବାରୁ ବାଳକ ଭଳି ରୂପ ଧରିଥିଲେ । ଦ୍ୱାରପାଳ ଜୟ ବିଜୟ ସେମାନଙ୍କୁ ବା ଚିହ୍ନିବେ କାହିଁକି ? ଭଗବାନ ବିଶ୍ରାମ ନେଉଥିବାରୁ ସେମାନେ ଏହି ଚାରି ବ୍ରହ୍ମର୍ଷିଙ୍କୁ ଛାଡ଼ିଲେ ନାହିଁ । ଉଭୟ ପକ୍ଷଙ୍କ ଭିତରେ ଖୁବ୍ ଯୁକ୍ତିତର୍କ ହେଲା ! ବିଷ୍ଣୁଙ୍କ ଦ୍ୱାର ସବୁବେଳେ ଭକ୍ତମାନଙ୍କ ପାଇଁ ଖୋଲା ବୋଲି ଯୁକ୍ତି ଦେଖାଇ ଚାରି ଦର୍ଶକ ଭିତରକୁ ପଶିବା ପାଇଁ ଉଦ୍ୟମ କଲେ । ଏଥିରେ ରାଗିଯାଇ ଜୟ ଓ ବିଜୟ ସେମାନଙ୍କୁ ଠେଲା ପେଲା କରିଦେଲେ । ବ୍ରହ୍ମାପୁତ୍ର ମାନେ ରାଗିଯାଇ ଅଭିଶାପ ଦେଲେ— "ରେ ଜୟ ବିଜୟ ତୁମେ ବିଷ୍ଣୁଙ୍କ ସେବକ ହୋଇମଧ୍ୟ ରାକ୍ଷସ ଭଳି ଆଚରଣ କରୁଥିବାରୁ ତୁମ୍ଭେମାନେ ଦାନବ ରାଜ୍ୟରେ ରାକ୍ଷସ ହୋଇ ଜନ୍ମହୁଅ ।"

ଦ୍ୱାର ଦେଶରେ ଏଭଳି ପାଟିଗୋଳ ଶୁଣି ମହାଲକ୍ଷ୍ମୀ ଜଣେ ଘଟଣା କ'ଣ ବୁଝିବା ପାଇଁ ପହଞ୍ଚିଲେ । ବ୍ରହ୍ମାପୁତ୍ରମାନଙ୍କୁ ଚିହ୍ନିପାରି ସେ ଆଦରରେ ଭିତରକୁ ଡାକି

ଦେଲେ । ଜୟ ବିଜୟ ନିଜର ଭୁଲ୍ ବୁଝି ପାରିଲେ ଏବଂ ମୁନି ଅଭିଶାପରୁ ରକ୍ଷା ପାଇବା ପାଇଁ ବିଷ୍ଣୁଙ୍କୁ ଗୁହାରି ଜଣାଇଲେ । ଭଗବାନ ବିଷ୍ଣୁ ସେମାନଙ୍କୁ କହିଲେ—"ବ୍ରହ୍ମାପୁତ୍ର-ମାନଙ୍କର ବ୍ରହ୍ମ ଅଭିଶାପ ଅନ୍ୟଥା ହେବନାହିଁ । ତେବେ ଶାପଫଳ ପାଇ ମୋ ସହିତ ଯଦି ମିତ୍ରଭାବ ରଖି ଭକ୍ତି କରିବ ତେବେ ସାତଜନ୍ମ ପରେ ଅଭିଶାପ ମୁକ୍ତ ହେବ । ଆଉ ଯଦି ଶତ୍ରୁଭାବ ରଖି ଜନ୍ମହେବ ତେବେ ମାତ୍ର ତିନି ଜନ୍ମରେ ମୁନିର ଅଭିଶାପ ଦୋଷ ଦୂର ହେବ । ତୁମ ତୁମେ ମିତ୍ରତା ନା ଶତ୍ରୁତା ଇଚ୍ଛା କରୁଛ ?"

ଜୟ, ବିଜୟ କିନ୍ତୁ ଅତିଶୀଘ୍ର ଶାପମୁକ୍ତ ହେବାକୁ ଚାହୁଁଥିଲେ । ସୁତରାଂ ସେମାନେ ଶତ୍ରୁଭାବ ନେଇ ପଛେ ଜନ୍ମ ହେବେ ମାତ୍ର ତିନିଜନ୍ମରେ ଅଭିଶାପ ମୁକ୍ତ ହେବାକୁ ନିଜ ଇଚ୍ଛା ଜଣାଇ ଦେଲେ । ଭଗବାନ କହିଲେ—"ତଥାସ୍ତୁ" । ବ୍ରହ୍ମା କୁମାରମାନେ କହିଲେ "ଭଗବାନ ! ଆପଣ ମହାନ୍ ; ଆମେ ଏବେ ବୁଝିପାରୁଛୁ ଜଳୁମେ ଶାନ୍ତତା ଆଚରଣ କରି ମଧ୍ୟ ଆପଣଙ୍କୁ ଭକ୍ତି କରିଯାଇ ପାରେ । ଦ୍ୱାରପାଳମାନଙ୍କ ତ୍ରୁଟି ସାମାନ୍ୟ କାରଣ ଯୋଗୁଁ ଆମେ ରାଗିଯିବା ଉଚିତ ନଥିଲା । ଆମକୁ ମଧ୍ୟ କ୍ଷମା କରନ୍ତୁ । ଆମ ଦେହରୁ ସବ ଭଲ ମନ୍ଦଗୁଣକୁ ହରଣ କରନ୍ତୁ ।"

ଭଗବାନ୍ ସେମାନଙ୍କ ଇଚ୍ଛା ପୂରଣ କଲେ । କଶ୍ୟପ ପ୍ରଜାପତିଙ୍କ ପତ୍ନୀ ଅଦିତିଙ୍କ ଗର୍ଭରେ ଜୟ ବିଜୟ ଜନ୍ମ ହେଲେ । ଜଣଙ୍କର ନାମ ହେଲା ହିରଣ୍ୟକଶିପୁ ଓ ଅନ୍ୟଟିର ନାମ ହେଲା ହିରଣ୍ୟାକ୍ଷ । ଜନ୍ମରୁ ହିଁ ସେମାନେ ଖୁବ୍ ବଳଶାଳୀ ଥିଲେ । ନିଜ ନିଜକୁ ଅଜେୟ ଓ ଶକ୍ତିଶାଳୀ କରିବା ନିମନ୍ତେ ସେମାନେ ଘୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ବ୍ରହ୍ମା ସନ୍ତୁଷ୍ଟ ହେଲେ । ସେ ତପସ୍ୟା ସ୍ଥାନରେ ଉପସ୍ଥିତହେଲେ ଏବଂ ଦୁଇ ରାକ୍ଷସଙ୍କୁ ବର ମାଗିବାକୁ କହିଲେ । ଦୁହେଁ ବ୍ରହ୍ମାଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ କହିଲେ —"ପ୍ରଭୁ ! ଆମକୁ ଅମର ବର ଦିଅନ୍ତୁ ।"

ମାତ୍ର ବ୍ରହ୍ମା କହିଲେ—"ଅମୃତ ନଖାଇଲେ କେହି କେବେ ଏ ଜଗତରେ ଅମର ହୋଇ ପାରିବ ନାହିଁ । ଜନ୍ମ ହେଲେ ମୃତ୍ୟୁ ମୁଖରେ ପଡ଼ିବାକୁ ହିଁ ହେବ । ତୁମେ ଦୁଇଭାଇ ଅମର ବର ଛାଡ଼ି ଯାହା ମାଗିବ ମୁଁ ଦେଇପାରେ ମାତ୍ର ଅମରବର ଦେବା ପାଇଁ ମୋର ଶକ୍ତି ନାହିଁ ।"

ଦୁଇରାକ୍ଷସ ନିଜ ନିଜ ଭିତରେ ପରାମର୍ଶ କଲେ । ଅମର ନ ହେଲେ ମଧ୍ୟ ଅମର ହେବା ଭଳି କଠିନ ବର ମାଗିବା ପାଇଁ ସ୍ଥିର କଲେ । ସେମାନେ ହାତଯୋଡ଼ି କହିଲେ —"ପ୍ରଭୁ ! ଯଦି ଅମର ବର ଦେବାକୁ ଆପଣଙ୍କ ଶକ୍ତି ନାହିଁ । ତେବେ ଆମକୁ ଏହି ବର ଦିଅନ୍ତୁ ଯେ ଆମେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁରର ଈଶ୍ୱର ହୋଇରହୁ । ଆମର ମୃତ୍ୟୁ ଦେବତାମାନଙ୍କ ଦ୍ୱାରା, ପଶୁ, ପକ୍ଷୀ, ମଣିଷ ଦ୍ୱାରା ହେବ ନାହିଁ । ଆମେ ଜଳରେ ବୁଡ଼ି ମରିବୁ ନାହିଁ ଜମ୍ମା ନିଆଁରେ ପୋଡ଼ି ମଧ୍ୟ ମରିବୁ ନାହିଁ । କୌଣସି ପ୍ରକାର ଅସ୍ତ୍ର

ଶସ୍ତ୍ରରେ ଆମର ମୃତ୍ୟୁ ହେବ ନାହିଁ । ପତନରେ ଆମେ ଭୁଡ଼ିଯିବୁ ନାହିଁ । ଆମ ଦହିଁଙ୍କର ମୃତ୍ୟୁ ଦନରେ ହେବ ନାହିଁ କ ରାତରେ ମଧ୍ୟ ହେବନାହିଁ । ଆମେ ନଜ ନଜର ବାହୁ ବଳରେ ପୃଥିବୀକୁ ମଧ୍ୟ ଟଳାଇ ଦେଇ ପାରବୁ ।"

ବ୍ରହ୍ମା କହିଲେ ତଥାସ୍ତୁ । ରାକ୍ଷସ ଭାଇ ଦୁଇଟି ବ୍ରହ୍ମାଙ୍କ ବରରେ ବଳୀୟାନ ହୋଇଯିବା ପରେ ପ୍ରଥମେ ଅସୁର ରାଜ୍ୟରେ ପହଞ୍ଚି ଅସୁର ମାନଙ୍କୁ ଏକାଠି କଲେ । ରାଜ୍ୟ ପ୍ରତଷ୍ଠା କଲେ । ବଡ଼ ଭାଇ ହିରଣ୍ୟକଶିପୁ ରାକ୍ଷସ ରାଜା ରୂପେ ଅଭିଷିକ୍ତ ହେଲ । ସାନ ଭାଇ ହିରଣ୍ୟାକ୍ଷ ରାକ୍ଷସ ବାହିନୀର ସେନାପତ ହେଲ ।

ରାକ୍ଷସ ରାଜ୍ୟ ବଢ଼ାଇବା ପାଇଁ ପ୍ରଥମେ ଜିତିପୁର ଜୟ କରିବା ନିମନ୍ତେ ହିରଣ୍ୟାକ୍ଷ ଭାଇର ଅନୁମତ ନେଇଥିଲ । ଦେବତାମାନେ ଅମୃତ ଖାଇବା ଘଟଣାରୁ ଦେବତା ଓ ଅସୁର ମାନଙ୍କ ମଧ୍ୟରେ ଥିବା ଶତ୍ରୁତା ଘୃତ୍ ବଢ଼ି ଯାଇଥିଲ । ସେହି ଦେବତାମାନଙ୍କୁ ପ୍ରଥମେ ଉପଯୁକ୍ତ ଶିକ୍ଷା ଦେବାଲଗି ହିରଣ୍ୟକଶିପୁ ସାନ ଭାଇକୁ ଆଦେଶ ଦେଲ । ବିଶେଷତଃ ଦେବତାମାନଙ୍କ ରକ୍ଷାକର୍ତ୍ତା ବିଷ୍ଣୁଙ୍କୁ ମାରିବା ନିମନ୍ତେ ସେମାନେ ମନ୍ତ୍ରଣା କଲେ ।

ହିରଣ୍ୟାକ୍ଷ ବ୍ରହ୍ମାଙ୍କ ବରରେ ମହାବୀର ହୋଇଥିବା ଯୋଗୁଁ ସେ ଏକ ବିରାଟ ସେନାବାହିନୀ ନେଇ ପ୍ରଥମେ ସ୍ୱର୍ଗପୁର ଆକ୍ରମଣ କଲ । ସ୍ୱର୍ଗର ରାଜା ଇନ୍ଦ୍ର, ଅଗ୍ନି, ବରୁଣ, ଯମ, ପବନ ପ୍ରଭୃତ ଦେବତାମାନେ ହିରଣ୍ୟାକ୍ଷ ବିରୁଦ୍ଧରେ ଯୁଦ୍ଧ କଲେ । ଦେବତା ଓ ରାକ୍ଷସ ମାନଙ୍କ ମଧ୍ୟରେ ପ୍ରବଳ ଲଢ଼େଇ ହେଲ । ଦେବତା ମାନଙ୍କ ଅସ୍ତ୍ର ଆଘାତରେ ବହୁତ ରାକ୍ଷସ ମଲେ ମାତ୍ର ହିରଣ୍ୟାକ୍ଷର କିଛିବି ହେଲେ କ୍ଷତ ହେଲନାହିଁ । ଦେବତାମାନେ ପିଠା ଅମୃତ ଖାଇଥିବାରୁ ମଲେ ନାହିଁ ମାତ୍ର ହିରଣ୍ୟାକ୍ଷର ପ୍ରବଳ ଆକ୍ରମଣରେ ଭୀଷଣ ଆହତ ହେଲେ । ଯୁଦ୍ଧ ପଡ଼ିଆରେ ପଡ଼ି ରହିଲେ । ଉଠିବା ପାଇଁ ମଧ୍ୟ ସେମାନଙ୍କର ଶକ୍ତି ନଥିଲ ।

ହିରଣ୍ୟାକ୍ଷ ଇନ୍ଦ୍ରଙ୍କ ସମେତ ସମସ୍ତଙ୍କୁ ବନ୍ଦୀ କଲ । ଏବେ ଇନ୍ଦ୍ରଙ୍କ ସିଂହାସନରେ ବସି ସ୍ୱର୍ଗକୁ ରାକ୍ଷସ ରାଜ୍ୟର ଅଂଶରୂପେ ଘୋଷଣା କଲ । ତା' ପରେ ଦେବ-ଦେବୀ ମାନେ ଏଣେ ତେଣେ ଲୁଚି ରହିଲେ । ସ୍ୱର୍ଗରାଜ୍ୟ ଅଧିକାର ପରେ ହିରଣ୍ୟାକ୍ଷର ଦୃଷ୍ଟି ପୃଥିବୀ ଉପରେ ପଡ଼ିଲ । ମର୍ତ୍ତ୍ୟଧାମ ପୃଥିବୀର ସେତେବେଳକୁ ବହୁ ପରିବର୍ତ୍ତନ ଘଟିସାରିଥିଲ । ଜଳଚର ଜଳରେ ଆଗେ ସ୍ଥଳଚର ସୃଷ୍ଟି ହୋଇଥିଲ ଜଳଚର ଜଳ ସ୍ଥଳ ଉଭୟଚର ପ୍ରାଣୀ ଓ ପକ୍ଷୀ ସୃଷ୍ଟି ହୋଇ ସାରିଥିଲେ । ସ୍ଥଳଚର ପଶୁମାନଙ୍କ ସୃଷ୍ଟି ଆରମ୍ଭ ହେଉଥିଲ । ହିରଣ୍ୟାକ୍ଷ ପୃଥିବୀକୁ ଆସିଲ, ମାତ୍ର ସେଠାରେ ତା' ସହିତ ଯୁଦ୍ଧ କରିବା ପାଇଁ କେହି ନଥିଲେ ।

ସେଠୁ ସେ ମନେ ମନେ ଠିକ୍ କଲ ଅସଲ ଶତ୍ରୁ ବିଷ୍ଣୁଙ୍କୁ ଗ୍ରେପ୍ତ କରିବା ପାଇଁ । ହେଲେ ବିଷ୍ଣୁ କେଉଁଠି ରହନ୍ତି ସେ କଥା ସେ ଜାଣିନଥିଲ । ତାପରେ ବିଷ୍ଣୁ ପୃଥିବୀ

ଉପରେ କେଉଁଠି ଥିବେ ସବୁ ତାଙ୍କୁ ଖୋଜିବାକୁ ଲାଗିଲା । ନୂଆ ହୋଇ ତିଆରି ହୋଇଥିବା ପୃଥିବୀ ଉପରେ ହିରଣ୍ୟାକ୍ଷ ଭଳି ଏକ ପ୍ରଚଣ୍ଡ ଶକ୍ତିଶାଳୀ ଓ ବିରାଟ ରାକ୍ଷସ ରାଗ ତମ ତମ ହୋଇ ବୁଲବୁଲି କରିବାରୁ ପୃଥିବୀରେ ଭୂମିକମ୍ପ ହେଲା । ପୃଥିବୀ ଉପରେ ଥିବା ସମୁଦ୍ରରେ ବଡ଼ ଲହରୀ ଉଠିଲା । ଆଗ୍ନେୟଗିରିରୁ ଅଗ୍ନି ଉଦ୍ଗାର ଆରମ୍ଭ ହେଲା । ବହୁ ଗଛ ଲତା ଜୀବଜନ୍ତୁ ମୃତ୍ୟୁମୁଖରେ ପଡ଼ିଲେ । ପୃଥିବୀ କ୍ରମେ ମହାଶୂନ୍ୟରୁ ପ୍ରଳୟ ଜଳ ଭିତରକୁ ଖସିବାକୁ ଲାଗିଲା ।

ଏଣେ ଦେବତାମାନେ ହିରଣ୍ୟାକ୍ଷ ଠାରୁ ଆଘାତ ଓ ଅପମାନ ପାଇ ଶିବଙ୍କ ଠାରେ ଶରଣ ପଶିଲେ । ମାତ୍ର ବ୍ରହ୍ମାଙ୍କ ବର ଯୋଗୁଁ ରାକ୍ଷସକୁ ମାରିବା ଶକ୍ତି ଶିବଙ୍କର ନଥିଲା । ସେ; ସବୁ ଦେବତାମାନଙ୍କ ସହିତ ଯାଇ ବିଷ୍ଣୁଙ୍କ ନିକଟରେ ପହଞ୍ଚିଲେ । ଭଗବାନ ବିଷ୍ଣୁ ସବୁ ଶୁଣିବାପରେ କହିଲେ—"ଦେବଗଣ ମୋତେ ପୁଣିଥରେ ଅବତାର ଗ୍ରହଣ କରିବାକୁ ପଡ଼ିବ । ମୁଁ ରାକ୍ଷସକୁ ମାରି ଆପଣମାନଙ୍କୁ ରକ୍ଷା କରିବି ।" ସେଠୁ ସେ ବ୍ରହ୍ମାଙ୍କୁ ଡ଼କାଇ ରାକ୍ଷସର ମରଣଭେଦ ପଚାରିଲେ । ବ୍ରହ୍ମା କହିଲେ—"ଭଗବାନ ! ରାକ୍ଷସ ହିରଣ୍ୟାକ୍ଷ ମରଣଭେଦ ବଡ଼ ଜଟିଳ । ଦେବ, ଦାନବ, ମାନବ, ପଶୁ, ପକ୍ଷୀ ବା କୌଣସି ପ୍ରକାର ଅସ୍ତ୍ର ଶସ୍ତ୍ରରେ ସେ ମରିବ ନାହିଁ ବୋଲି ବରମାଗି ନେଇଛି । ପୁଣି ଦିନରେ ବା ରାତିରେ ସେ ମରିବ ନାହିଁ । ଏଥିକୁ ଦେଖି ଆପଣ କି ଅବତାର ଗ୍ରହଣ କରିବେ କରନ୍ତୁ ।"

ଭଗବାନ ବିଷ୍ଣୁ କହିଲେ—"ଠିକ୍ ଅଛି । ଆପଣ ସମସ୍ତ ଦେବତାମାନଙ୍କୁ ନେଇ ବ୍ରହ୍ମଲୋକରେ ଏକ ବିଘ୍ନନାଶନ ଯଜ୍ଞ କରନ୍ତୁ । ମୁଁ ସେ ଯଜ୍ଞ କୁଣ୍ଡରୁ ଅବତାର ଗ୍ରହଣ କରି ରାକ୍ଷସକୁ ବଧ କରିବି ।"

ଦେବତାମାନେ ନାରାୟଣଙ୍କ ଜୟଗାନ କରି ଫେରିଗଲେ । ଠିକ୍ ସେହି ସମୟରେ ଧରଣୀ ଦେବୀଙ୍କୁ ନେଇ ନାରଦ ମଧ୍ୟ ନାରାୟଣଙ୍କ ନିକଟରେ ପହଞ୍ଚିଲେ । "ରାକ୍ଷସର ପଦାଘାତରେ ମୁଁ ଆଉ ପୃଥିବୀର ଭାର ସମ୍ଭାଳି ପାରୁନାହିଁ" ବୋଲି ଧରଣୀ ଭଗବାନଙ୍କୁ ନିଜ ଦୁଃଖ ଜଣାଇଲେ । ଭଗବାନ କହିଲେ—"ଦେବୀ ଖୁବ୍ କମ୍ ଦିନ ଭିତରେ ତୁମ ଦୁଃଖ ମୁକ୍ତହେବ ତେଣୁ ମୋର ବରାହ ଅବତାର ହେବା ପର୍ଯ୍ୟନ୍ତ ଅପେକ୍ଷା କର ।" ସେଠୁ ଭଗବାନ ନାରଦଙ୍କୁ କହିଲେ—ଦେବର୍ଷି ନାରଦ ! ତୁମେ ପୃଥିବୀକୁ ଯାଇ ହିରଣ୍ୟାକ୍ଷ ମନରେ ମୋ ପ୍ରତି ଆହୁରି ଅଧିକ ବୈର ଭାବ ଜାତ କରାଅ କାରଣ ବିଶେଷ ଭାବେ ଶତ୍ରୁତା ଆଚରଣ ନକଲେ ତାକୁ ବଧ କରିବା ମୋ ନୀତି ବିରୁଦ୍ଧ ।"

ନାରଦ ଓ ଧରଣୀ ପ୍ରଭୁଙ୍କୁ ପ୍ରଣାମ ଜଣାଇ ଫେରିଗଲେ । ଏଣେ ବ୍ରହ୍ମାମଧ୍ୟ ବ୍ରହ୍ମଲୋକରେ ଏକ ବିଘ୍ନନାଶନ ମହାଯଜ୍ଞ ଆରମ୍ଭ କରିଦେଲେ । ବହୁ ସିଦ୍ଧାତ୍ମା, ମୁନୀଋଷି, ଦେବ ଦେବୀ ସେ ଯଜ୍ଞରେ ଉପସ୍ଥିତ ରହିଥାନ୍ତି ।

ନାରଦ ଯାଇ ବିଷ୍ଣୁଙ୍କୁ ଖୋଜୁଥିବା ହିରଣ୍ୟାକ୍ଷ ନିକଟରେ ପହଞ୍ଚିଗଲେ । ତାଙ୍କୁ କହିଲେ—"କିରେ ହିରଣ୍ୟାକ୍ଷ ! ବିଷ୍ଣୁ ବଡ଼ ଶାନ୍ତଶିଷ୍ଟ । ଭୟାଳୁ ମଧ୍ୟ । ତୁ ତର୍ଜି ସୁର

ବଳସ୍ୱୀ ଥାଅ । ତୋ ଡରରେ ଦେବ ଯାଇ କେଉଁଠି ନା କେଉଁଠି ଲୁଚିଥିବେ । ତୁ ଶୋଷାଏ ଜାମତର । ବିଷ୍ଣୁ ନିଶ୍ଚୟ ଅସି ଓଆଇ ବରଣିବା ଏହି ପୃଥିବୀଟାକୁ ଟେକି ନେଇ ପ୍ରଳୟଜଳରେ ରସାତଳକୁ ନିକ୍ଷେପ କରିଦେ । ଏହା ବିଷ୍ଣୁ ସହିପାରିବେ ନାହିଁ । ସେ ତୋ ଆଗକୁ ଆସିବେ । ତୁ ତ ମହାବଳୀୟାନ ! ତାଙ୍କୁ ଯୁଦ୍ଧରେ ପରାସ୍ତ କରିଦେବୁ ।"

ନାରଦଙ୍କ ଏହି କୂଟକଥା ହିରଣ୍ୟାକ୍ଷର ମନକୁ ପାଇଗଲା । ସେ ତ ବାହୁ ବଳରେ ପୃଥିବୀକୁ ମଧ୍ୟ ଟଳାଇ ପାରିବ ବୋଲି ବର ପାଇଥିଲା ସଙ୍ଗେ ସଙ୍ଗେ ନିଜର ପାରିବା ପଣ ଦେଖାଇବାରେ ଲାଗିଲା । ନାରଦ ପୃଥିବୀରୁ ସିଧା ବ୍ରହ୍ମଲୋକକୁ ଉଡ଼ିଗଲେ । ଆଉ ରାକ୍ଷସ ମହାଶୂନ୍ୟରେ ରହି ନିଜ ଦେହର ଆକାର ଖୁବ୍ ବଢ଼ାଇ ଦେଲା ଏବଂ ଏତେବଡ଼ ପୃଥିବୀ-ଟାକୁ ଦୁଇହାତରେ ଟେକିବାକୁ ଲାଗିଲା ଧରଣୀ ମହାଭୟ ପାଇ ରକ୍ଷାକର.....ରକ୍ଷାକର ବୋଲି ଚିତ୍କାର କଲେ ।

ଠିକ୍ ସେତିକି ସମୟକୁ ବ୍ରହ୍ମାଙ୍କ ଯଜ୍ଞର ପୂର୍ଣ୍ଣାହୁତି ହେଲା । ଯଜ୍ଞର ଅଗ୍ନି କୁଣ୍ଡ ମଧ୍ୟରୁ ଜଳନ୍ତା ଅଗ୍ନି ଶିଖା ମଧ୍ୟରୁ ଏକ ତେଜସ୍ୱାନ୍ ଜ୍ୟୋତି ବିନ୍ଦୁ ବାହାରିଲା । କ୍ରମେ ସେହି ଜ୍ୟୋତି ବିନ୍ଦୁର ଆକାର ବଢ଼ି ବଢ଼ି ସୂର୍ଯ୍ୟଠାରୁ ତେଜସ୍ୱାନ୍ ଦେଖାଗଲା । ସେହି ଜ୍ୟୋତି ଭିତରେ ଦେଖାଦେଲେ ଏକ ଧଳା ରଙ୍ଗର ବରାହ । ସେହି ବରାହ ବିଷ୍ଣୁଙ୍କ ଅବତାର ବୋଲି ବ୍ରହ୍ମା ଜାଣିପାରିଲେ । ସେ ଓ ସମସ୍ତ ଦେବା ଦେବୀ ତାଙ୍କୁ ସ୍ତୁତିକଲେ । କ୍ରମେ ଶ୍ୱେତବରାହର ମୂର୍ତ୍ତି ଦ୍ୟୁତିର ସମସ୍ତ ଦେହ ଉଭେଇ ଗଲା ଏବଂ ପରକ୍ଷଣରେ ଦେଖାଗଲେ ବରାହ ମୂର୍ତ୍ତି ଧାରୀ ଚତୁର୍ଭୁଜ ବିଷ୍ଣୁ । ବ୍ରହ୍ମା ଏହାଙ୍କ ନାମ କରଣ କଲେ ଯଜ୍ଞ ବରାହ । ଯଜ୍ଞ ବରାହ ରୂପୀ ବିଷ୍ଣୁଙ୍କ ଆକାର ବଢ଼ିବାକୁ ଲାଗିଲା ଏବଂ କ୍ଷଣକ ପରେ ତାଙ୍କର ବିରାଟ ଦିବ୍ୟରୂପ ସମଗ୍ର ଅନ୍ତରୀକ୍ଷ ବ୍ୟାପୀ ବିରାଜମାନ ହେଲା । ବରାହ ମୁଖମଣ୍ଡଳରେ ଥିବା ଦୁଇଟି ଚକ୍ଷୁ ନିଆଁ ଭଳି ଦପ୍ ଦପ୍ ହେଉଥିଲା । ପାଟିର ଦୁଇ ପଟେ ଥିଲା ଦୁଇଟି ଖଡ୍ଗଦନ୍ତ ଏବଂ ନାକ ଉପରେ ଥିଲା ଏକ ବିରାଟ ଶୃଙ୍ଗ ।

ଠିକ୍ ସେତିକିବେଳେ ରାକ୍ଷସ ହିରଣ୍ୟାକ୍ଷ ପୃଥିବୀକୁ ଧରି ପ୍ରଳୟଜଳ ମଧ୍ୟଦେଇ ରସାତଳକୁ ନିକ୍ଷେପ କଲା । ପୃଥିବୀ ବୁଡ଼ିବାକୁ ଲାଗିଲା । ଯଜ୍ଞ ବରାହ ଏଥିରେ କ୍ରୋଧ ହୋଇ ଭୟଙ୍କର ଗର୍ଜନ କଲେ । ସେ ଶବ୍ଦରେ ଜନପୁର ଜର୍ମି ଉଠିଲା । ଯଜ୍ଞ ବରାହ ପ୍ରଳୟ ଜଳକୁ ଚିରି ପଶିଲେ । ମୁହୂର୍ତ୍ତକ ମଧ୍ୟରେ ନିଜର ଦୁଇଦନ୍ତ ଏବଂ ନାସା ଶୃଙ୍ଗ ଉପରେ ରସାତଳ ଗାମୀ ପୃଥିବୀକୁ ଟେକିଧରି ପୁଣି ମହାକାଶରେ ଦେଖାଦେଲେ ।

ଯଜ୍ଞ ବରାହଙ୍କ ଭୟଙ୍କର ଗର୍ଜନ ଶୁଣିବା ପରେ ରାକ୍ଷସ ହିରଣ୍ୟାକ୍ଷ ମଧ୍ୟ ଏକ ଭୟଙ୍କର ଗର୍ଜନ କଲା । ଯଜ୍ଞ ବରାହ ସେହି ଗର୍ଜନର ପ୍ରତ୍ୟୁତ୍ତର ଦେବାକୁ ଯାଇ ପୁଣି ଗର୍ଜନକରି କହିଲେ—"ହେ ଦୁଷ୍ଟ, ରାକ୍ଷସ ! ତୁ ଦେବତାମାନଙ୍କୁ ଦୁଃଖ ଦେଇ-ଥିବାରୁ ମୁଁ ତୋତେ ଶାସ୍ତି ଦେବାପାଇଁ ଆସିଛି । ତୁ କେଉଁଠି ଅଛୁ ସାହସ ଥିଲେ ମୋ ଆଗକୁ ଆସେ ।"

ରାକ୍ଷସ ପଚାରିଲା—"ତୁ କ'ଣ ଅସୁର ମାନଙ୍କର ଶତ୍ରୁ, ଦେବତା ମାନଙ୍କ ରକ୍ଷାକର୍ତ୍ତା ବିଷ୍ଣୁ" ?

ଯଜ୍ଞ ବରାହ କହିଲେ—"ହଁ ! ମୁଁ ସେହି ବିଷ୍ଣୁ ।"

ହିରଣ୍ୟାକ୍ଷ ବିଷ୍ଣୁଙ୍କ ନାମ ଓ ପରିଚୟ ଶୁଣି ଅଟ୍ଟହାସ କରି ଉଠିଲା । ଅସ୍ତ୍ର ଶସ୍ତ୍ର ଧରି ବିଷ୍ଣୁଙ୍କ ଆଡ଼କୁ ମାଡ଼ି ଆସିଲା । ଯଜ୍ଞ ବରାହ ବିଷ୍ଣୁ ମଧ୍ୟ ନିଜର ଗଦା ଓ ଚକ୍ର ଉଠାଇ ପୃଥିବୀକୁ ଦାନ୍ତ ଅଗରେ ଟେକି ରଖିଥିବା ଅବସ୍ଥାରେ ରାକ୍ଷସ ଆଡ଼କୁ ମାଡ଼ିଗଲେ ।

ମହାଶୂନ୍ୟରେ ଦୁଇ ମହାଯୋଦ୍ଧାଙ୍କର ଭେଟ ହେଲା । ଦୁହେଁ ବରିଷ୍ଠ ଆୟୁଧ ଧରିଥାନ୍ତି । ରାକ୍ଷସ ଶୂଳ ଏବଂ ବିଷ୍ଣୁ ସୁଦର୍ଶନ ଚକ୍ର ଧରି ଦୁହେଁ ଦୁହିଁଙ୍କୁ ଆକ୍ରମଣ କଲେ । ଘୋର ଯୁଦ୍ଧ ହେଲା । କେତେବେଳେ ବିଷ୍ଣୁଙ୍କର ତ କେତେବେଳେ ରାକ୍ଷସର ବିଜୟ ହେଉଥାଏ । ଅସ୍ତ୍ର ଶସ୍ତ୍ର ଯୁଦ୍ଧରେ କେହି କାହାରିକୁ ହରାଇ ପାରିଲେ ନାହିଁ । ସେଠୁ ବାହୁ ବଳ ଉପରେ ଦୁହେଁ ହାତା ହାତି ଯୁଦ୍ଧ କଲେ । ଯୁଦ୍ଧ ବେଳକୁ ବେଳ ଭୟଙ୍କର ହେଲା । ଶେଷରେ ଭଗବାନ ବରାହ ବିଷ୍ଣୁ ପୃଥିବୀକୁ ନିଜ ଶୃଙ୍ଗରୁ ବାହାର କରି ମହାଶୂନ୍ୟରେ ସ୍ଥାପନ କଲେ ଏବଂ ରାକ୍ଷସକୁ ସେହି ପରମ ଶକ୍ତିଶାଳୀ ଶୃଙ୍ଗ ସାହାଯ୍ୟରେ ଭୁଷି ମାରି ପକାଇଲେ । ଏଥିରେ ବ୍ରହ୍ମାଙ୍କ ବରର କୌଣସି ଅସମ୍ମାନତା ମଧ୍ୟ ହେଲା ନାହିଁ । ପ୍ରଳୟ ଜଳ ଓ ସମୁଦ୍ରର ସୀମାନ୍ତରେ ଉଷା କାଳରେ ରାକ୍ଷସର ମୃତ୍ୟୁ ହେଲା । ତା'ର ବିରାଟ ଶରୀର ପ୍ରଳୟ ଜଳ ମଧ୍ୟରେ ଲୀନ ହୋଇଗଲା । ଏହି ଭଳି ଭାବରେ ଜୟ ପ୍ରଥମ ରାକ୍ଷସ ଜନ୍ମରୁ ମୁକ୍ତି ପାଇ ବୈକୁଣ୍ଠକୁ ଗଲା । ଦେବତାମାନେ କଷ୍ଟ ହନ ପାଇଁ ଆଶ୍ୱସ୍ତ ହେଲେ । ଶ୍ରୀ ବିଷ୍ଣୁ ମଧ୍ୟ ନିଜର ବରାହ ଅବତାର ଶେଷ କରି ବୈକୁଣ୍ଠରେ ବିଶ୍ରାମ ନେଲେ ।






ଯଜ୍ଞ ବରାହଙ୍କ ଦ୍ୱାରା ପାତାଳରେ ହିରଣ୍ୟାକ୍ଷ ଏଭଳି ଅସ୍ୱାଭକ ମରିଯିବ ବୋଲି ହିରଣ୍ୟକଶିପୁ କଳ୍ପନା ମଧ୍ୟ କରିନଥିଲା । ମହା ଶକ୍ତିଶାଳୀ ଜି ପ୍ରିୟ ବଳସ୍ୱୀ ଭାଇର ମୃତ୍ୟୁରେ ଅତି ଦୁଃଖିତ ହେଲା । ନିଜର ଡାହାଣ ହାତ କଟିଗଲା ଭଳି ତାକୁ ବୋଧହେଲା । ବିଷ୍ଣୁଙ୍କ ପ୍ରତି ତା'ର ରାଗ ଖୁବ୍ ବଢ଼ିଗଲା । ସେ ଚରମ ପ୍ରତିଶୋଧ ନେବା ପାଇଁ ପ୍ରତିଜ୍ଞା କଲା । ଶକ୍ତି ସଂଚୟ ପାଇଁ ସେ ତପସ୍ୟା କରିବା ଲାଗି ହିମାଳୟକୁ ଉପଯୁକ୍ତ ମନେ କରି ଚାଲିଗଲା ।

ସେତେବେଳକୁ ପୃଥିବୀରେ ଭଗବାନଙ୍କ ବରାହ ଅବତାରର ପ୍ରଭାବ ରୂପେ ପଶୁ, ଅର୍ଦ୍ଧନର ଓ ଅର୍ଦ୍ଧପଶୁ ଶ୍ରେଣୀସ୍ଥ ଜୀବ ସୃଷ୍ଟି ହୋଇ ସାରିଥାନ୍ତି । ବାକିଥାଏ ଦେବତାଙ୍କ ଭଳି ଆକାର ପ୍ରକାରର ମଣିଷ ସୃଷ୍ଟି ।

ହିରଣ୍ୟକଶିପୁ ରାଜ୍ୟରେ ନଥାଏ । ହିରଣ୍ୟାକ୍ଷ ତ ଆଗରୁ ମରିଯାଇ ଥିଲା । ଅସୁର ରାଜ୍ୟରେ ଅରାଜକତା ଦେଖା ଦେଇଥାଏ । ଅସୁରମନ୍ତ୍ରୀ ମାନେ ରାଜ୍ୟକୁ ଯେ କୌଣସି ପ୍ରକାରେ ଚଳାଉ ଥାନ୍ତି । ଏହି ସୁଯୋଗ ଦେଖି ଦେବରାଜ ଇନ୍ଦ୍ର ନିଜ ଦଳ ବଳ ନେଇ ଅସୁର ରାଜ୍ୟ ଆକ୍ରମଣ କଲେ । ଯୁଦ୍ଧରେ ବହୁ ଅସୁରଙ୍କୁ ମାରି ସେ ପୂର୍ବ ଶତ୍ରୁତାର

ପ୍ରତିଶୋଧ ନେଲେ । ହିରଣ୍ୟକଶିପୁର ରାଣୀ ଲୀଳାବତୀଙ୍କୁ ବଳପୂର୍ବକ ସ୍ୱର୍ଗରାଜ୍ୟକୁ ନେଇଗଲେ । ମାତ୍ର ଆକାଶ ମାର୍ଗରେ ଯାଉଥିବେଳେ ଲୀଳାବତୀର ଚିତ୍କାର ଶୁଣି ଦେବର୍ଷି-ନାରଦ ଆକାଶ ମାର୍ଗରେ ଇନ୍ଦ୍ରଙ୍କୁ ଅଟକାଇ କହିଲେ—"ଦେବରାଜ ଇନ୍ଦ୍ର । ଏଭଳି ଅନ୍ୟାୟ କାର୍ଯ୍ୟ ଆପଣ କରିବା ଅନୁଚିତ । ତା' ଛଡ଼ା ବର୍ତ୍ତମାନ ଲୀଳାବତୀ ଗର୍ଭବତୀ ଅଛନ୍ତି । ତାଙ୍କ ଗର୍ଭରେ ଅଛନ୍ତି ଜଣେ ବିଷ୍ଣୁଭକ୍ତ ବାଳକ । ଏହି ବାଳକ ଦେବ କାର୍ଯ୍ୟ କରିବା ନିମନ୍ତେ ଜନ୍ମହେବେ । ସୁତରାଂ ଆପଣ ଲୀଳାବତୀଙ୍କୁ ଛାଡ଼ି ଦେଇ ଯାଆନ୍ତୁ ।" ଇନ୍ଦ୍ରଙ୍କ ରାଗ ଶାନ୍ତ ହୋଇ ଯାଇଥାଏ । ସେ ସେହିଠାରେ ହିଁ ଲୀଳାବତୀଙ୍କୁ ଛାଡ଼ି ଦେଇ ସ୍ୱର୍ଗକୁ ଫେରିଗଲେ । ନାରଦ ଲୀଳାବତୀଙ୍କୁ ନିଜ ଆଶ୍ରମରେ ସ୍ଥାନ ଦେଲେ ।

ନାରଦଙ୍କ ଆଶ୍ରମରେ ବିଷ୍ଣୁଙ୍କ ଗୁଣ କୀର୍ତ୍ତନ ଅହରହ ଚାଲିଥାଏ । ନାରଦ ସର୍ବଦା ବିଷ୍ଣୁଙ୍କ ସ୍ତୁତିଗାନ କରୁଥାନ୍ତି । ଜଗତର ମୂଳ ଆଧାର ପରମାତ୍ମା ବିଷ୍ଣୁଙ୍କ ଅନନ୍ତ ଶକ୍ତି ଓ ମହିମା କଥା ଲୀଳାବତୀଙ୍କୁ ଶୁଣାଉଥାନ୍ତି । ଲୀଳାବତୀଙ୍କ ଗର୍ଭରେ ଥିବା ଶିଶୁଟି ଉପରେ ବିଷ୍ଣୁଭକ୍ତିର ଚମତ୍କାର ପ୍ରଭାବ ପଡ଼ୁଥାଏ । ଉପଯୁକ୍ତ ସମୟରେ ଲୀଳାବତୀଙ୍କର ଏକ ଦିବ୍ୟ ସୁନ୍ଦର ପୁଅ ଜନ୍ମ ହେଲା । ସେହି ପୁଅ ଜନ୍ମ ହେବା କ୍ଷଣି ଚାରିଆଡ଼େ ଶୁଭ ଲକ୍ଷଣ ପ୍ରକାଶ ପାଇଲା । ପୁଅଟିର ସୁନ୍ଦର ରୂପ ଦେଖିବା କ୍ଷଣି ମନରେ ଅପାର ଆନନ୍ଦ ଜାତ ହେଉଥିଲା । ନାରଦ ଏହି ପୁଅର ନାମ ଦେଲେ ପ୍ରହ୍ଲାଦ ବା ଆନନ୍ଦ । ଶିଶୁଟି କ୍ରମେ ଚନ୍ଦ୍ରକଳା ଭଳି ବଢ଼ିବାରେ ଲାଗିଲା ।

ହିରଣ୍ୟକଶିପୁ ଘୋରତପସ୍ୟା କରି ପୁଣିଥରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲା ଓ ପୁଣି ଅମର ବର ପାଇଁ ପ୍ରାର୍ଥନା କଲା । ବ୍ରହ୍ମା ଏଥିପାଇଁ ନିଜର ଅକ୍ଷମତା ପ୍ରକାଶ କଲେ । ସେ କହିଲା "ତେବେ ମୋର ମୃତ୍ୟୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ,ପୃଥିବୀ ବା ଆକାଶରେ ଦିନରେ ବା ରାତିରେ ହେବନାହିଁ । ମୁଁ ଘରଭିତରେ ବା ବାହାରେ ମରିବି ନାହିଁ, କୌଣସି ଅସ୍ତ୍ର ଶସ୍ତ୍ରରେ ମୋତେ ମାରିଯାଇ ପାରିବ ନାହିଁ । ମୋର ଗଦାପାତରେ ଯେତେ କଠିନ ବସ୍ତୁ ହେଲେ ମଧ୍ୟ ଖଣ୍ଡି ଖସି ପଡ଼ିବ ।" ବ୍ରହ୍ମା କହିଲେ—"ତଥାସ୍ତୁ ।"

ହିରଣ୍ୟକଶିପୁ ପୂର୍ବାପେକ୍ଷା ନିଜକୁ ଅଧିକ ଶକ୍ତିଶାଳୀ କରି ଗର୍ବରେ ଫେରିବା ସମୟରେ ରାସ୍ତାରେ ନାରଦଙ୍କ ସହିତ ତା'ର ଭେଟ ହେଲା । ନାରଦଙ୍କ ଠାରୁ ନିଜ ସ୍ତ୍ରୀ ଓ ପୁତ୍ରଙ୍କ ସମ୍ବାଦ ପାଇ ସେ ଆଶ୍ରମକୁ ଯାଇ ସେମାନଙ୍କୁ ନିଜରାଜ୍ୟକୁ ନେଇ ଆସିଲା । କିନ୍ତୁ ରାଜ୍ୟରେ ପହଞ୍ଚି ଦେଖିଲା ସେ ଅସୁର ରାଜ୍ୟ ଛାରଖାର ହୋଇ ଯାଇଛି । ଦେବ-ରାଜ ଇନ୍ଦ୍ରଙ୍କ ପ୍ରତିଶୋଧ ନେବା ପାଇଁ ସେ ଅସୁରମାନଙ୍କୁ ନେଇ ଦଳେ ସଙ୍ଗେ ସ୍ୱର୍ଗକୁ ଧାଇଁଲା । ସାମାନ୍ୟ ଯୁଦ୍ଧରେ ଦେବଗଣ ପରାସ୍ତ ହେଲେ । ଇନ୍ଦ୍ରଙ୍କୁ ପଦଚ୍ୟୁତ କରି ନିଜେ ସେ ଇନ୍ଦ୍ର ସିଂହାସନରେ ବସିଲା । ଦେବତାମାନେ ପୁଣି ଯିଏ ଯେଉଁଆଡ଼େ ପାରିଲେ ଲୁଚିଲେ । ଯେଉଁମାନେ ଧରାପଡ଼ିଲେ ସେମାନଙ୍କୁ ସେ ପାଦତଳେ ଚକଟାଇଲା । ଇନ୍ଦ୍ରଙ୍କ

ରାଣୀ ଇନ୍ଦ୍ରାଣୀ ଶଚୀଦେବୀଙ୍କୁ ନିଜର ରାଣୀ ହେବା ପାଇଁ ବାଧ୍ୟକଲା, ମାତ୍ର ନୀଳାବତୀ ଅନେକ ଅନୁନୟ ବିନୟ କରି ହିରଣ୍ୟକଶିପୁକୁ ସେଥିରୁ କ୍ଷାନ୍ତ କରାଇଲେ ।

ହିରଣ୍ୟକଶିପୁ ଏଣିକି ଧ୍ୱସ୍ତ ବିଧ୍ୱସ୍ତ ଅସୁର ସାମ୍ରାଜ୍ୟ ପାତାଳରେ ନରଖି ନୂତନ ଗଠିତ ପୃଥିବୀ ଉପରେ ନିଜର ସାମ୍ରାଜ୍ୟ ସ୍ଥାପନ ପାଇଁ ଇଚ୍ଛା କଲା । ଦେବତାମାନଙ୍କ ଶିଳ୍ପ, ଶାସ୍ତ୍ରକାର ଓ ଦେବ ଶିଳ୍ପୀ ବିଶ୍ୱକର୍ମାଙ୍କୁ ଆଦେଶ ଦେଲା ପୃଥିବୀ ଉପରେ ସୁନ୍ଦର ସୁନ୍ଦର ସହର, ନଗର, ପୁର, ପଲ୍ଲୀ ନିର୍ମାଣ ପାଇଁ । ସେତେବେଳକୁ ପୃଥିବୀ ପୃଷ୍ଠରେ ନାନା ପରିବର୍ତ୍ତନ ହୋଇ ସାରିଥାଏ । ବ୍ରହ୍ମା ବାନର ଓ ମାନବ ସୃଷ୍ଟି କରି ସାରିଥାନ୍ତି । ତାହାଙ୍କ ଆଦେଶରେ ବ୍ରହ୍ମାଙ୍କ ପୁତ୍ର ତଥା ସେହିଭଳି ମୁନି ଋଷି ମାନେ ପୃଥିବୀ ଉପରେ ଥିବା ରମଣୀୟ ସ୍ଥାନ ଗୁଡ଼ିକରେ ଆଶ୍ରମ କରି ତପସ୍ୟା ଓ ଯୋଗାଭ୍ୟାସ କରୁଥାନ୍ତି । ଅନ୍ୟ କେତେକ ସ୍ଥାନରେ ଆଦିମାନବ ମାନେ ନିଜ ନିଜର ଅଂଶ ବିକଶିତ ବୁଦ୍ଧି ଅନୁସାରେ ଚଳପ୍ରଚଳ ହେଉଥାନ୍ତି । କ୍ରମେ ପୃଥିବୀ ହୋଇ ଉଠୁଥାଏ ଅଧିକ ଜୀବଜନ୍ତୁ ଆଉ ସୁନ୍ଦର, ଶସ୍ୟ ଶ୍ୟାମଳ । ଯଜ୍ଞ ବରାହ ରସାତଳଗାମୀ ପୃଥିବୀକୁ ରକ୍ଷା କରିବା ପରେ ତାହାକୁ ମହାଶୂନ୍ୟରେ ସ୍ଥାୟୀ ଭାବେ ସ୍ଥାପନ କରି ଦେଇଥାନ୍ତି । ସକଳ ଶକ୍ତିର ଆଧାର ଭଗବାନ ସୂର୍ଯ୍ୟଙ୍କ ଏକ ଗ୍ରହ ରୂପେ ପୃଥିବୀ ତାହାଙ୍କୁ ପରିକ୍ରମଣ କରିବାକୁ ଲାଗିଥାଏ । କେବଳ ସେତିକି ନୁହେଁ ପୃଥିବୀ ନିଜର ଅକ୍ଷ ବା ମେରୁଦଣ୍ଡରେ ଘୂରି ଘୂରି ଆବର୍ତ୍ତନ କରୁଥାଏ । ଠିକ୍ ଅନ୍ୟ ଗ୍ରହମାନଙ୍କ ଭଳି ପୃଥିବୀ ସୌର ପରିବାରରେ ସାମିଲ ହୋଇ ସାରିଥାଏ । ଦିନ ରାତି ଋତୁ ପରିବର୍ତ୍ତନ ପ୍ରଭୃତି ଯୋଗୁଁ ଏଥିରେ କ୍ରମେ ଜୀବଜଗତ ସୃଷ୍ଟି କରିଥାନ୍ତି ବ୍ରହ୍ମା । ମେଘ, ପବନ, ଅଗ୍ନି ପ୍ରଭୃତି ସମସ୍ତ ଦେବ ଦେବୀଙ୍କୁ ପୃଥିବୀ ପାଳନ ପାଇଁ ବିଷ୍ଣୁ ଆଦେଶ ଦେଇ ସାରିଥାନ୍ତି । ପ୍ରଳୟ ଜଳ ଭଗବାନ ନାରାୟଣଙ୍କ ଦେହରେ ଲୀନ ହୋଇ ସାଇଥାଏ । କେବଳ ପୃଥିବୀରେ ତାହାର ଅଂଶ ବିଶେଷ ହୋଇ ପାବନ ହୋଇଯାଇ ଥାଏ । ମୋଟ ଉପରେ ସେ କାଳରେ ସର୍ଗକୁ ଛାଡ଼ିଦେଲେ ପୃଥିବୀ ଭଳି କୌଣସି ସ୍ଥାନ ବସବାସ ପାଇଁ ଆରାମ ଦାୟକ ନଥିଲା ।

ଭଗବାନ ବିଶ୍ୱକର୍ମା ବିଷ୍ଣୁଙ୍କ ଅଂଶରୁ ଜାତ । ସେ ହିରଣ୍ୟକଶିପୁ ତରଫରେ ପୃଥିବୀକୁ ଆସିଲେ । ନିଜର ଅଭୂତପୂର୍ବ ଶକ୍ତି ବଳରେ ଏ ପୃଥିବୀ ପୃଷ୍ଠରେ ସୁନ୍ଦର ସୁନ୍ଦର ସହର ନଗର ନିର୍ମାଣ କଲେ । ହିରଣ୍ୟକଶିପୁ ପୃଥିବୀ ଉପରେ ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କରି ସୁଖରେ ରହିଲା । ଦେବ ଓ ଦାନବ ଉଭୟ ଗୁଣ ଥିବାରୁ ମନୁଷ୍ୟ ରାକ୍ଷସମାନଙ୍କ ସହିତ ମିଳିମିଶି ଚଳିବାକୁ ଲାଗିଲା ।

ନିଜ ରାଜ୍ୟର ପ୍ରାପ୍ତି ପରେ ପରେ ହିରଣ୍ୟର କୋପ ଦୃଷ୍ଟି, ପଡ଼ିଲା ନିଜ କୁଳର ଅସଲ ଶତ୍ରୁ ଭଗବାନ ବିଷ୍ଣୁଙ୍କ ଉପରେ । ସେ ନିଜର ଅଜେୟ ଗଦା ନେଇ ଏକା ଏକା ବିଷ୍ଣୁଙ୍କୁ ଖୋଜିବା ପାଇଁ ବାହାରିଲା । ପ୍ରଭୁଙ୍କ ଅପାର ଲୀଳା । ରାକ୍ଷସ ରାଜ ପୁର ,

ଚଉଦ ବ୍ରହ୍ମାଣ୍ଡ ଯାକ ଖୋଜିଲେ ସିନା ବିଷ୍ଣୁଙ୍କ ଦେଖା ପାଇଲେ ନାହିଁ । ଏପରିକି ବୈକୁଣ୍ଠ ପୁରରେ ମଧ୍ୟ ବିଷ୍ଣୁଙ୍କୁ ସେ ଦେଖି ପାରିଲେ ନାହିଁ । ଘୋଷଣା କଲେ ସେ ତାଙ୍କୁ ଭୟକରି ଡରକୁଳା ବିଷ୍ଣୁ କେଉଁଠି ଆତ୍ମଗୋପନ କରିଛନ୍ତି । ମାତ୍ର ଯେଉଁ ଦିନ ସେ ବିଷ୍ଣୁଙ୍କୁ ଦେଖିବ ଠିକଣା ଜବାବ ଦେବ ଓ ଭାଇ ହତ୍ୟାର ପ୍ରତିଶୋଧ ନେବ । ଅଗତ୍ୟା ହିରଣ୍ୟ ନିଜ ରାଜଧାନୀକୁ ଫେରି ଆସିଲା ।

ଏଣେ ପ୍ରହ୍ଲାଦ କ୍ରମେ ବଡ଼ ହେଉଥାଏ । ବୟସ ସହିତ ବଢୁଥାଏ ପ୍ରହ୍ଲାଦର ବିଷ୍ଣୁ ଭକ୍ତି ସେତିକି ବଢ଼ି ଯାଉଥାଏ । ସବୁବେଳେ ସେ ହରି... ହରି... ନାରାୟଣ... ନାରାୟଣ... ବିଷ୍ଣୁ... ବିଷ୍ଣୁ ଏଭଳି ଭଗବାନଙ୍କ ବିଭିନ୍ନ ନାମ ଉଚ୍ଚାରଣ କରୁଥାଏ । ହିରଣ୍ୟ-କଶିପୁ ପ୍ରହ୍ଲାଦକୁ ଖୁବ୍ ଭଲ ପାଉଥିଲା ମାତ୍ର ସେଦିନ ତାଠାରୁ ନିଜ ଶତ୍ରୁ ବିଷ୍ଣୁଙ୍କ ନାମ ତା' ପାଟିରୁ ଶୁଣିକି ଆଶ୍ଚର୍ଯ୍ୟ ହୋଇଗଲା । ଏଭଳି ବଂଶ ଦ୍ରୋହୀ ଶତ୍ରୁର ନାମ ନ ଧରିବା ପାଇଁ ପୁଅକୁ ଉପଦେଶ ଦେଲା । ମାତ୍ର ବିଷ୍ଣୁଭକ୍ତ ପ୍ରହ୍ଲାଦ ବିଷ୍ଣୁଙ୍କ ନାମ ଛାଡ଼ିପାରିଲା ନାହିଁ । ନିଜ ରାକ୍ଷସ କୁଳରେ ଏଭଳି ଗୋଟିଏ କୁଳଦ୍ରୋହୀ, ଜାତିଦ୍ରୋହୀ ପୁତ୍ର କେମିତି ଜାତ ହେଲା ହିରଣ୍ୟକଶିପୁ ଚିନ୍ତା କରିପାରୁ ନଥିଲା ।

ପ୍ରହ୍ଲାଦର ପାଠ ପଢ଼ିବା ବୟସ ହୋଇ ଯାଇଥାଏ । ଷଣ୍ଡ ଓ ମାର୍କ ନାମକ ଦୁଇଜଣ ଗୁରୁଙ୍କୁ ପ୍ରହ୍ଲାଦର ବିଦ୍ୟା ଶିକ୍ଷା ଦାୟିତ୍ୱ ଦିଆଗଲା । ହିରଣ୍ୟ ସେମାନଙ୍କୁ କହି ଦେଇଥାଏ ଯେ ପ୍ରହ୍ଲାଦ ଯେପରି ହରି ନାମକୀର୍ତ୍ତନ ଭୁଲିଯିବ ସେହିଭଳି ଶିକ୍ଷା ଦେବା ପାଇଁ । ଗୁରୁ ଦୁଇଜଣ ପ୍ରହ୍ଲାଦକୁ ନିଜ ଆଶ୍ରମକୁ ନେଇଗଲେ । ପ୍ରହ୍ଲାଦ ସହପାଠୀମାନଙ୍କ ସହିତ ଏକାଠି ବସି ପାଠ ପଢ଼ୁଥାନ୍ତି । ପାଠପଢ଼ା ଅପେକ୍ଷା ଭଗବାନଙ୍କ ନାମକୀର୍ତ୍ତନ ଭଜନ ଓ ଆଧ୍ୟାତ୍ମିକ ଚର୍ଚ୍ଚା ପ୍ରତି ପ୍ରହ୍ଲାଦର ଆଗ୍ରହ ବଢୁଥାଏ । ସେ ନିଜ ସହପାଠୀମାନଙ୍କୁ ମଧ୍ୟ ହରି ଭକ୍ତି ଶିଖାଇଦେଲା । ଆଶ୍ରମରେ ହରି ମାହାତ୍ମ୍ୟ କୀର୍ତ୍ତନ ହେଲେ । ଗୁରୁ ଦୁଇଜଣ ଯେତେ ଚେଷ୍ଟାକଲେ ମଧ୍ୟ ପ୍ରହ୍ଲାଦଙ୍କୁ ହରି ଭକ୍ତିରୁ ଟଳାଇ ପାରିଲେ ନାହିଁ । ବରଂ ସେ ଦୁଇଜଣ ମଧ୍ୟ ପ୍ରହ୍ଲାଦଙ୍କ ସଂସ୍ପର୍ଶରେ ଆସି ହରି ପ୍ରେମରେ ପାଗଳ ହୋଇଗଲେ । ଅଦୌ ନପଢ଼ି ମଧ୍ୟ ପ୍ରହ୍ଲାଦ ଅଳ୍ପ ସମୟ ମଧ୍ୟରେ ସକଳ ବିଦ୍ୟାରେ ଧୁରନ୍ଧର ହୋଇଗଲା । ଗୁରୁମାନେ ଏଥିରେ ଖୁବ୍ ଆଶ୍ଚର୍ଯ୍ୟ ହେଲେ । ଏ ସବୁ ନିର୍ମଳ ବିଷ୍ଣୁ ଭକ୍ତିର ସୁଫଳ ବୋଲି ସେମାନେ ଅନୁମାନ କଲେ । ଯଥା ସମୟରେ ଗୁରୁ ଆଶ୍ରମରେ ବିଦ୍ୟାଶିକ୍ଷା ଶେଷ କରି ପ୍ରହ୍ଲାଦ ରାଜ ଉଆସକୁ ଫେରିଲେ ।

ବହୁଦିନ ପରେ ପୁଅକୁ ଦେଖି ହିରଣ୍ୟ ବହୁତ ଆଦର କରି କୋଳରେ ବସାଇଲା । ପଚାରିଲା—"ପ୍ରିୟ ପୁତ୍ର ମୋର ! ବାବୁ ପ୍ରହ୍ଲାଦ, ତୁ ଗୁରୁ ଆଶ୍ରମରୁ କିଭଳି ବିଦ୍ୟା ଅର୍ଜନ କରି ଆସିଛୁ ମୋତେ ଶୁଣାଇ ଖୁସି କରାଅ ।"

ପ୍ରହ୍ଲାଦ କହିଲେ—"ବାପା ! ମୁଁ ଗୁରୁକୃପାରୁ ସମସ୍ତ ବିଦ୍ୟା ଶିକ୍ଷା କରି-ସାରିଛି !"

ହିରଣ୍ୟକଶିପୁ କହିଲେ—"ସାବାସ୍ ! ଶୁଣି ଖୁସୀ ହେଲି । ହେଲେ ବାବୁ କହିଲୁ ସବୁଠାରୁ ଶ୍ରେଷ୍ଠ ବିଦ୍ୟା କ'ଣ ?"

ପ୍ରହ୍ଲାଦ କହିଲେ—"ଏ ସଂସାରରେ ସବୁଠାରୁ ଶ୍ରେଷ୍ଠ ବିଦ୍ୟା ହେଲା ହରିଭକ୍ତି । ଶ୍ରୀହରି ହେଉଛନ୍ତି ଏ ସଂସାରର ସ୍ରଷ୍ଟା । ତାଙ୍କର ଇଙ୍ଗିତରେ ଏ ଚରାଚର ପରିଚାଳିତ । ସେ ପରମାତ୍ମା ହୋଇଛନ୍ତି ଅନାଦି ଅନନ୍ତ । ତାହାଙ୍କ ନାମ ଉଚ୍ଚାରଣ କଲାମାତ୍ରେ ସଂସାର ଜନ୍ମ ବନ୍ଧନରୁ ମୁକ୍ତି ମିଳେ—ଜୀବନ ସାର୍ଥକ ହୁଏ ।"

ଚମକି ପଡ଼ିଲା ହିରଣ୍ୟକଶିପୁ ! ହରିଙ୍କ ନାମ ଶୁଣିବା କ୍ଷଣି ତା ମୁଣ୍ଡରେ ବଜ୍ରପାତ ହେଲାଭଳି ମନେକଲା । ରାଗରେ ଜରହୋଇ ପ୍ରହ୍ଲାଦକୁ କୋଳରୁ ତଳକୁ ଫୋପାଡ଼ି ଦେଲା । ଚଣ୍ଡ ଓ ମାର୍କଙ୍କୁ ଗର୍ଜନ କରି ପଚାରିଲା—କ'ଣ ! ମୋ ପୁଅକୁ ତୁମେ ଏଭଳି ଅପଶିକ୍ଷା ଦେବାପାଇଁ ତୁମ ଦୁହିଁଙ୍କୁ ମୁଁ ଦାୟିତ୍ୱ ଦେଇଥିଲି" ?

ଗୁରୁ ଦୁଇଜଣ ଥରି ଥରି କହିଲେ—"ମହାରାଜ ! ଏଥିରେ ଆମର କୌଣସି ଦୋଷ ନାହିଁ । ଆଶ୍ରମକୁ ଯିବା ପୂର୍ବରୁ ପ୍ରହ୍ଲାଦଙ୍କ ବିଷ୍ଣୁଭକ୍ତି ଥିଲା । ଆମେ ଯେତେ ଚେଷ୍ଟା କଲେ ମଧ୍ୟ ବିଷ୍ଣୁଙ୍କ ପ୍ରତି ପ୍ରହ୍ଲାଦଙ୍କ ଦୃଢ଼ ଭାବ ଛଡ଼ାଇ ପାରିଲୁ ନାହିଁ । ଅଟଳ ବିଷ୍ଣୁଭକ୍ତି ବଳରେ ଏତେ କମ୍ ବୟସରେ ମଧ୍ୟ ସେ ସମସ୍ତ ବିଦ୍ୟା ହାସଲ କରିପାରିଛନ୍ତି । ଆପଣ ଚେଷ୍ଟାକଲେ ହୁଏତ ପ୍ରହ୍ଲାଦଙ୍କୁ ବଦଳାଇ ପାରିବେ । ଆମକୁ କ୍ଷମା କରନ୍ତୁ ।"

ଗୁରୁ ଦୁହିଁଙ୍କ କଥାନୁସାରେ ହିରଣ୍ୟ ପ୍ରହ୍ଲାଦକୁ ଧରି ରାଣୀହଂସପୁରକୁ ଗଲା । ଲୀଳାବତୀଙ୍କୁ ଡକାଇ ପୁଅଙ୍କ ଆଗେ ବୁଝାଇଲା—"ବାବୁ ପ୍ରହ୍ଲାଦ ! ତୁ ଯେଉଁ ବିଷ୍ଣୁଙ୍କ ନାମ କୀର୍ତ୍ତନ କରୁଛୁ ସେ ଆମ ରାକ୍ଷସ କୁଳର ପରମ ଶତ୍ରୁ । ସେ ତୋର ବଡ଼ବାପା ହିରଣ୍ୟାକ୍ଷର ହତ୍ୟାକାରୀ ! ଆମ ଶତ୍ରୁ; ଦେବତାମାନଙ୍କୁ ରକ୍ଷା କରିବା ଆଳରେ ସେ ସବୁବେଳେ ରାକ୍ଷସ କୁଳ ନାଶ କରି ଆସିଛନ୍ତି । ତାଙ୍କୁ ଭକ୍ତି କରିବା ଘୋର ଅପରାଧ । ତେଣୁ ଆଜିଠାରୁ ତୁ ବିଷ୍ଣୁଙ୍କ ନାମ ଆଉ ଉଚ୍ଚାରଣ କରିବୁ ନାହିଁ । ବରଂ ମୋ ନାମ-କୀର୍ତ୍ତନ କର । ତୁ ଜାଣୁ ମୋ ଡରରେ ବିଷ୍ଣୁ ଲୁଚି ରହିଛି । ସେଇଟା ଗୋଟାଏ ଭୀରୁ, କାପୁରୁଷ ।"

ପ୍ରହ୍ଲାଦ ଉପରେ କିନ୍ତୁ ବାପାଙ୍କ ଏ କଥାର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ ପୂର୍ବଭଳି ଶାନ୍ତ କଣ୍ଠରେ କହିଲେ—"ବାବା ! ଆପଣ ପରମ ଶକ୍ତିଶାଳୀ ଦାନବ ରାଜା ହୋଇପାରନ୍ତି କିନ୍ତୁ ଆପଣ ମନେ ରଖିବା ଉଚିତ ଆପଣଙ୍କୁ ଯିଏ ଆଜି ଏତେ ଉଚ୍ଚ ଆସନ ଦେଇଛନ୍ତି ସେ ହେଉଛନ୍ତି ଏକମାତ୍ର ହରି । ଆପଣ ହରିଙ୍କୁ ଯଦି ଭକ୍ତି କରନ୍ତେ ତା ହେଲେ ଆପଣଙ୍କ ମର୍ଯ୍ୟାଦା ଆହୁରି ବଢ଼ି ଯାଆନ୍ତା । କିନ୍ତୁ ହରିଙ୍କ ସହ ଶତ୍ରୁତା କରିବା ଦ୍ୱାରା ଆପଣଙ୍କ ଅମଙ୍ଗଳ ହୋଇପାରେ ।"

"ରେ ମୂର୍ଖ !" ଗର୍ଜି ଉଠିଲା ହିରଣ୍ୟକଶିପୁ ! "ତୋ ଭଳି କୁଳାଙ୍ଗାର ମୋ ପୁତ୍ର ହୋଇ ଜାତ ହେବା ଦୁର୍ଭାଗ୍ୟ ଜନକ ? ସାମାନ୍ୟ ବାଳକ ହୋଇ ମୋତେ ତୁ ଉପଦେଶ ଦେଉଛୁ ? ଖବରଦାର ! ଭୁଲରେ ସୁଦ୍ଧା ଚରଣତ୍ତ୍ୱ ହରିର ନାମ ମୋ ଆଗରେ ଧରିବୁ ନାହିଁ । ଯଦି ଧରୁ ତେବେ ମୁଁ ତୋତେ କଠୋର ଶାସ୍ତି ଦେବି ।"

ପ୍ରହ୍ଲାଦ ହସି ହସି କହିଲା—"ହେଅନ୍ତୁ ପିତା ! ଆପଣ ଯେଉଁ ଶାସ୍ତି ଦେବେ ମୁଁ ମଥାପୋତି ମାନି ନେବି କିନ୍ତୁ ହରି ନାମ ଛାଡ଼ି ପାରିବି ନାହିଁ । ଶ୍ରୀହରି ...... ।"

ଛୋଟ ବାଳକଟାଏ ସେ ପୁଣି ହିରଣ୍ୟକଶିପୁ ଆଦେଶ ଅବମାନନା କରିବ ? କ୍ରୋଧରେ ଦାନ୍ତ କୁ ଓଠରେ ଚୁପି ଧରିଲା ରାକ୍ଷସ । ସାରା ଦେହଟା ତା'ର କ୍ରୋଧରେ ଥରି ଉଠିଲା । ଗର୍ଜି ଉଠିଲା ସେ —"ରେ ଅଧମ ! ତୋର ମୃତ୍ୟୁ ସୁନିଶ୍ଚିତ ! ଆଜିଠାରୁ ତୋର ଖାଇବା ପିଇବା ବନ୍ଦ । ଯେଉଁଦିନ ପର୍ଯ୍ୟନ୍ତ ହରି ନାମ ନଛାଡ଼ିବୁ ସେତେଦିନ ପର୍ଯ୍ୟନ୍ତ ତୋତେ ଅନ୍ଧକାର ବନ୍ଦୀ ଗୃହରେ ରହିବାକୁ ହେବ ।" ହିରଣ୍ୟର ଆଦେଶ ସଙ୍ଗେ ସଙ୍ଗେ ପାଳିତ ହେଲା । ପ୍ରହରୀମାନେ ପ୍ରହ୍ଲାଦକୁ ଟାଣି ନେଇ ଗୋଟାଏ ବନ୍ଦୀଘରେ ତାଲା ପକାଇ ରଖିଦେଲେ ।"

ଲୀଳାବତୀ ମାଁ ହୋଇ ଗେଲବସରରେ ବଢ଼ାଇ ଆଣିଥିବା ସୁକୁମାର ପୁଅଟିର ଏ ଦୁଃଖ ସହି ପାରୁନଥାନ୍ତି । ରାଜାଙ୍କୁ ସେ ବହୁତ ଅନୁନୟ ବିନୟ ହୋଇ ପ୍ରହ୍ଲାଦକୁ କ୍ଷମା କରିଦେବାକୁ କହୁଥାନ୍ତି ମାତ୍ର କୌଣସି ଫଳ ହେଉନଥାଏ । ଶେଷରେ ଲୀଳାବତୀ ମଧ ଖିଆ ପିଆ ଛାଡ଼ି ଶୋଇ ରହିଲେ । କିଛିଦିନ ପରେ ଲୀଳାବତୀଙ୍କ କନ୍ଦାକଟା ଓ ଉପବାସ ଦେଖି ହିରଣ୍ୟକଶିପୁ ପ୍ରହ୍ଲାଦକୁ ମୁକ୍ତ କରି ଦେଲା, ମାତ୍ର ବନ୍ଦୀଘରେ ହରିଙ୍କୁ ଧ୍ୟାନ କରୁଥିବା ପ୍ରହ୍ଲାଦର ଚେହେରା ଝଟକୁ ଥିଲା । ଖାଦ୍ୟ ପାଣି ନ ପାଇ ମଧ ସେ ଦିଶୁଥିଲା ସତେଜ ଓ ସୁନ୍ଦର । ମାତା ଓ ପୁତ୍ରର ମିଳନ ଦେଖି ହିରଣ୍ୟ ଆନନ୍ଦିତ ହେଲା ହେଲେ ମାତ୍ର ପୁଣି ପ୍ରହ୍ଲାଦଙ୍କ କଣ୍ଠରୁ ହରିନାମ କୀର୍ତ୍ତନ ଶୁଣି ତା ମୁଣ୍ଡ ବିଗିଡ଼ି ଗଲା । ସେ ପ୍ରହ୍ଲାଦକୁ ନେଇ ହାତୀ ପାଦତଳେ ପକାଇ ଦେଲା । ରାଜାଙ୍କ ଆଦେଶରେ ମାହୁନ୍ତ ହାତୀକୁ ପ୍ରହ୍ଲାଦ ଉପରେ ଚଳାଇବା ପାଇଁ ଚେଷ୍ଟା କଲା । ପ୍ରହ୍ଲାଦ ତଳେ ପଡ଼ି କେବଳ ହରି...ହରି ସ୍ମରଣ କରୁଥାଏ । ଐରାବତ ଭଳି ହାତୀଟା ଗର୍ଜନ ତର୍ଜନ କରି ମାଡ଼ି ଆସିଲା ସିନା ପ୍ରହ୍ଲାଦ ପାଖରେ ପହଞ୍ଚିବା କ୍ଷଣି ନିଶ୍ଚଳ ହୋଇ ଠିଆହେଲା । ମାହୁନ୍ତ ଅଙ୍କୁଶ ଫୋଡ଼ି ହାତୀକୁ ସେଠିକି ଟିକାର ବାଧ କଲେ ମଧ କିଛି ଫଳ ହେଲା ନାହିଁ । ଏଥିପାଇଁ ହାତୀଶାଳରୁ ନୂଆ ହାତୀ ମାନଙ୍କୁ ଅଣାଗଲା ମାତ୍ର ସବୁଗୁଡ଼ାକ ପ୍ରହ୍ଲାଦକୁ ପାଦରେ ଦଳିବେ କ'ଣ ଓଲଟି ଶୁଣ୍ଢ ଦ୍ୱାରା ସମ୍ମାନ ଜଣାଇ ପଛକୁ ହଟିଗଲେ ।

କୁଳାଙ୍ଗାର ପ୍ରହ୍ଲାଦକୁ ମାରିବା ପାଇଁ ହିରଣ୍ୟକଶିପୁ ପୁଣି ନୂଆ ଯୋଜନା କଲା । ସେ ସାପୁଆମାନଙ୍କୁ ଡକାଇ ବିଷାକ୍ତ ସାପ ଦ୍ୱାରା ପ୍ରହ୍ଲାଦକୁ ଦଂଶନ କରାଇବା ବ୍ୟବସ୍ଥା କଲା । ବିଷଧର ସର୍ପ ଗୁଡ଼ିକୁ ପ୍ରହ୍ଲାଦ ଉପରେ ପକାଇ ଦିଆଗଲା । ମାତ୍ର ସାପ-

ଗୁଡ଼ିକ ପ୍ରହ୍ଲାଦଙ୍କୁ ଆଦୌ ଦଂଶନ କଲେ ନାହିଁ । ମହାଦେବଙ୍କ କଣ୍ଠରେ ଗୁଡ଼ାଇ ହେବାଭଳି ତା' ଦେହରେ ଗୁଡ଼ାଇ ହୋଇ ଝୁଲିଲେ । ପ୍ରହ୍ଲାଦର କିଛି ହେଲେ କ୍ଷତ ହେଲା ନାହିଁ । ହରିଙ୍କ ପ୍ରତି ତା ଦୃଢ଼ଭକ୍ତି ଯୋଗୁଁ ଏପରି ଘଟୁଥିଲା ହେଲେ ମୂର୍ଖ ରାକ୍ଷସ ସେକଥା ବୁଝିପାରୁନଥିଲା ।

ଦିନ ଯାଏ ରାତି ଆସେ । ପ୍ରତିଦିନ ପ୍ରହ୍ଲାଦଙ୍କୁ ମାରିବା ପାଇଁ ହିରଣ୍ୟକଶିପୁ ଚେଷ୍ଟା ଚଳାଇଥାଏ । ମାତ୍ର ପ୍ରହ୍ଲାଦର କ୍ଷତିହୁଏ ନାହିଁ । ପୂର୍ବଭଳି ସେ ସ୍ୱଚ୍ଛନ୍ଦରେ ରହି ହରିନାମ ଭଜନରେ ଲାଗିଥାଏ । ଦିନେ ପ୍ରହ୍ଲାଦଙ୍କୁ ହାତ ଗୋଡ଼ ବାନ୍ଧି ଖୁବ୍ ଉଚ୍ଚ ପର୍ବତ ଉପରୁ ଫୋପାଡ଼ି ଦିଆଗଲା । ମାତ୍ର ଫୁଲଭଳି ଖସି ସେ କୋମଳ ଘାସ ପଡ଼ିଆରେ ଶୋଇଗଲା ସେଠୁ ପ୍ରହ୍ଲାଦଙ୍କୁ ସମୁଦ୍ରର ଗଭୀର ଜଳରେ ବନ୍ଦୀକରି ବୁଡ଼ାଇ ଦିଆଗଲା । ସମସ୍ତେ ଭାବିଲେ ପ୍ରହ୍ଲାଦ ମରିଗଲା କିନ୍ତୁ ଦୂତଙ୍କୁ ଫେରି ଦେଖିବା ବେଳକୁ ପ୍ରହ୍ଲାଦ ବାଲି ଉପରେ ବସି ହସି ହସି ହରିନାମ କୀର୍ତ୍ତନ କରୁଛି । ଏ ସମ୍ବାଦ ପାଇ ହିରଣ୍ୟକଶିପୁର ବୁଦ୍ଧି ହଜିଗଲା । ସେ ଉତ୍କଟ ବିଷକୁ କ୍ଷୀରରେ ମିଶାଇ ପ୍ରହ୍ଲାଦଙ୍କୁ ଆଦର କରି ପିଇବାକୁ ଦେଲା । ଭାବିଥିଲା ବିଷର ବିଷାକ୍ତ ପ୍ରକ୍ରିୟାରେ ପ୍ରହ୍ଲାଦ ଶେଷ ହୋଇଯିବ। ମାତ୍ର ପ୍ରହ୍ଲାଦ ହରି ହରି ସ୍ମରଣ କରି ସେତକ ପିଇଦେଲା । କିନ୍ତୁ କୌଣସି ପ୍ରଭାବ ତା' ଉପରେ ପଡ଼ିଲାନାହିଁ । ଏଥିରେ ରାଗିଯାଇ ହିରଣ୍ୟ ଗୋଟାଏ ତୀକ୍ଷ୍ଣ ଖଣ୍ଡାରେ ପ୍ରହ୍ଲାଦଙ୍କୁ ହାଣିଦେଲା । ମାତ୍ର ଖଣ୍ଡାଟା ଦୁଇଗଡ଼ ହୋଇ ଭାଙ୍ଗିଗଲା ପିଲା ପ୍ରହ୍ଲାଦର କିଛି କ୍ଷତ ହେଲା ନାହିଁ ।

ଏଭଳି ଯେତେ ଉପାୟ କଲେ ମଧ୍ୟ ପ୍ରହ୍ଲାଦଙ୍କୁ ମାରି ନପାରି ହିରଣ୍ୟକଶିପୁ ମହାଚିନ୍ତାରେ ପଡ଼ିଗଲା । ହିରଣ୍ୟକଶିପୁର ଭଉଣୀ ହୋଲିକା ତା' ଭାଇ ନିକଟକୁ ଆସି କହିଲା—"ତୁମେ ଚିନ୍ତା କରନା ଭାଇ, ବ୍ରହ୍ମାଙ୍କ ବର ପ୍ରଭାବରେ ମୁଁ ନିଆଁରେ ପଶି ପାରିବି ଅଥଚ ପୋଡ଼ିଯିବି ନାହିଁ । ପ୍ରହ୍ଲାଦକୁ ମାରିବା ଭାର ମୋତେ ଦିଅ । ମୁଁ ଆସନ୍ତା କାଲି ସକାଳେ ପ୍ରହ୍ଲାଦକୁ କୋଳରେ ଧରି ନିଆଁରେ ପ୍ରବେଶ କରିବି । ନିଆଁରେ ସେ ପୋଡ଼ିଯିବ ମୁଁ ତା' ପରେ ଫେରି ଆସିବି ।"

ହିରଣ୍ୟକଶିପୁ କହିଲା — 'ସାବାସ୍ ! ତୋ ଭଳି ଶକ୍ତିମନ୍ତ ଭଉଣୀ ଥାଉ ମୁଁ ଅଯଥା ଚିନ୍ତା କରୁଛି । ଠିକ୍ ଅଛି ସେଆ କର । ମୋର ଚିରଶତ୍ରୁ ନାରାୟଣ ମୋ ପୁଅ ରୂପେ ବୋଧେ ଜନ୍ମ ହୋଇଛି । ସେଟାକୁ ମାରି ତୁ ମୋତେ ଚିନ୍ତାମୁକ୍ତ କର ହୋଲିକା ।"

ତା' ପର ଦିନ ଏ ଅଦ୍ଭୁତ ଦୃଶ୍ୟ ଦେଖିବା ପାଇଁ ରାଜ୍ୟଟା ଯାକର ଅସୁର ପ୍ରଜା ଗୋଟାଏ ଖୋଲା ପଡ଼ିଆରେ ଜମା ହୋଇଥାନ୍ତି । ବଡ଼ବଡ଼ କାଠ ଗଣ୍ଡି ସଜା ହୋଇ ଥାଏ । ହିରଣ୍ୟର ଆଦେଶରେ ହୋଲିକା ପ୍ରହ୍ଲାଦକୁ କୋଳରେ ଧରି ସେ କାଠ ଗଦା ଉପରେ ବସିଗଲା । ଘିଅ ଢାଳି କାଠ ଗଦାରେ ନିଆଁ ଲଗାଇ ଦିଆଗଲା । ହୁଡ୍ ହୁଡ୍ ହୋଇ ଶିଖା ଟେକି ନିଆଁ ଜଳିବାକୁ ଲାଗିଲା । ପ୍ରଜାମାନେ ଏ ଦୃଶ୍ୟ ଦେଖି ହାସ୍ ହାସ୍ କରୁଥାନ୍ତି । ରାଣୀ ଲୀଳାବତୀ ପୁଅକୁ ମନେ ପକାଇ କାନ୍ଦି କାନ୍ଦି ଜ୍ଞାନଶୂନ୍ୟ ହୋଇ ପଡ଼ୁଥାନ୍ତି ।

ଜଳ ଜଳ କାଠଗଦାଟା ପାଉଁଷ ଗଦାରେ ପରିଣତ ହେଲା । କିନ୍ତୁ ଏ କ'ଣ ? ବେକରେ ଫୁଲମାଳ ଲମ୍ବିଥିବା ପ୍ରହ୍ଲାଦ ସେ ପାଉଁଷ ଗଦାରୁ ହସି ହସି ବାହାରି ଆସିଲା । ଅଥଚ ରକ୍ଷସୀ ହୋଲିକାର ବସ୍ଥକାୟ ଦେହଟା ପାଉଁଷ ଆକାରରେ ପଡ଼ି ରହିଥାଏ । ଠିକ୍ ସେହି ସମୟରେ ଶୂନ୍ୟବାଣୀ ହେଲା—"ହୋଲିକା ବିନା ଅପରାଧରେ ଶିଶୁହତ୍ୟା କରିବା ପାଇଁ ଅଭିଳାଷ ରଖି ନିଆଁରେ ପ୍ରବେଶ କରିବାରୁ ନିଜେ ପୋଡ଼ି ମରିଛି ।"

ଏ ଖବର ପାଇବା କ୍ଷଣି ହିରଣ୍ୟକଶିପୁ ଭଉଣୀ ପାଇଁ ଖୁବ୍ ଦୁଃଖ ପ୍ରକାଶ କଲା । କ୍ରୋଧରେ ତା'ର ସର୍ବାଙ୍ଗ କମ୍ପିବାକୁ ଲାଗିଲା । ସେ ପ୍ରହ୍ଲାଦକୁ ଚାହିଁକରି ପଚାରିଲା—"ରେ ଅକାଳ କୁଷ୍ମାଣ୍ଡ ! ଯେତେ ଉପାୟ କଲେ ମଧ୍ୟ ତୋର ମରଣ ହେଲା ନାହିଁ । କହ ଏହାର କାରଣ କ'ଣ ?

ପ୍ରହ୍ଲାଦ କହିଲା—"କାରଣ ତ ମୁଁ ବହୁ ଆଗରୁ କହିସାରିଛି ବାବା ! ହରି ରଖେ ମାରେ କିଏ ? ମାରେ ହରି ରଖେ କିଏ ? ମୋର ମରିବା ବଞ୍ଚିବା ସେହି ପରମ ଦୟାମୟ ଲୀଳା ପୁରୁଷୋତ୍ତମ ଭଗବାନ ବିଷ୍ଣୁଙ୍କ ଇଚ୍ଛା ଉପରେ ନିର୍ଭର କରେ । ସେହି ନାରାୟଣ ହିଁ ମୋତେ ସବୁ ଆପଦ ବିପଦରୁ ଉଦ୍ଧାର କରନ୍ତି ।"

"ଉଃ ! ହରି.. ହରି...ହରି !" ଗର୍ଜି ଉଠିଲା । ହିରଣ୍ୟକଶିପୁ ! "ରେ କୁଳାଙ୍ଗାର ! ହରି ହରି ବୋଲି ଦିନ ରାତି ଘୋଷି ହେଉଛୁ । କାହିଁ ତୋର ସେହି ହରି ? ସେଇଟା ମୋତେ ଲୁଚି ରହିଛି କାହିଁକି ? ଦେଖାଇ ପାରିବୁ ମୋର ପରମଶତ୍ରୁ ସେହି ବିଷ୍ଣୁଙ୍କୁ । ଥରଟିଏ ମାତ୍ର ମୁଁ ତା'ର ଦେଖା ପାଇଲେ ଏଇ ଗଦା ମାଡ଼ରେ ମାରି ପ୍ରତିଶୋଧ ନେଇପାରନ୍ତି । କହ ତୋର ସେ ହରି କେଉଁଠି ?"

ପ୍ରହ୍ଲାଦ ହସି ହସି କହିଲା—"ସେ ତ ସବୁଠି ଅଛନ୍ତି ବାବା । କାଠ, ପଥର, ପଶୁ, ପକ୍ଷୀ, ଦାନବ, ମାନବ, ସମୁଦ୍ର, ଆକାଶ ଏପରିକି ସକଳ ଘଟରେ ନାରାୟଣ ବିଦ୍ୟମାନ ଅଛନ୍ତି । ମୋ ଦେହ ଭିତରେ, ଆପଣଙ୍କ ଦେହ ଭିତରେ, ସବୁଠି ହରି ଅଛନ୍ତି ।"

ହିରଣ୍ୟକଶିପୁର ରାଗ ଖୁବ୍ ବଢ଼ିଗଲା । ସେ ପ୍ରହ୍ଲାଦର ହାତ ଟାଣି ନିଜର ରାଜ ସଭାକୁ ନେଇଗଲା । ସଭାମଣ୍ଡପର ସାମନା ପଟେ ଗୋଟିଏ ଲୁହା ତିଆରି ସ୍ତମ୍ଭ ଥିଲା । ହିରଣ୍ୟକଶିପୁ ପ୍ରହ୍ଲାଦକୁ ପଚାରିଲା—"ଆରେ କୁଳାଙ୍ଗାର ହରିଭକ୍ତ ! ତୋ ହରି କ'ଣ ମୋର ଏ ବିଜୟ ସ୍ତମ୍ଭ ଭିତରେ ଅଛନ୍ତି ?"

ପ୍ରହ୍ଲାଦ ଉତ୍ତର ଦେଲା—"ନିଶ୍ଚୟ ! ମନ ନିର୍ମଳ କରି ତାହାଙ୍କୁ ଡାକିଲେ ସେ ଦେଖାଦିଅନ୍ତି ।"

ଗର୍ଜି ଉଠିଲା ହିରଣ୍ୟକଶିପୁ—"ତୋଠାରୁ ଗୀତ ଉପଦେଶ ଶୁଣିବାକୁ ମୁଁ ଚାହେଁ ନାହିଁ । କହ ଏ ସ୍ତମ୍ଭ ଭିତରେ ହରି ଅଛନ୍ତି କି ନାହିଁ ?"

ପ୍ରହ୍ଲାଦ କହିଲା—"ସେ ସବୁଠାରେ ଅଛନ୍ତି । ଏ ସ୍ତମ୍ଭରେ ମଧ୍ୟ ଅଛନ୍ତି ।"

ହିରଣ୍ୟକଶିପୁ ସେତେବେଳକୁ ରାଗି ନାଲି ଦେଖା ଯାଉଥାଏ । ସେ କାଳବିଳମ୍ବ ନକରି ନିଜର ଗଦାରେ ଲୁହା ସ୍ତମ୍ଭଟାକୁ ଆଘାତ କଲା । ସେ ଆଘାତର ଶବ୍ଦରେ ଦୈତ୍ୟପୁରଯାକ କମ୍ପିଉଠିଲା । ଜଳନ୍ତା ନିଆଁ ଓ ଧୂଆଁରେ ଚତୁର୍ଦ୍ଦିଗ ପୂରିଗଲା । ଏତେ ବଡ଼ ଲୁହା ସ୍ତମ୍ଭଟା ଦୁଇଫାଳ ହୋଇ ଭାଙ୍ଗିଗଲା । ଆଉ ସେହି ସ୍ତମ୍ଭଭିତରୁ ଦେଖା-ଦେଲେ ବିଷ୍ଣୁଙ୍କ ଚତୁର୍ଥ ଅବତାର ନୃସିଂହ । ଦେହଟି ଦେଖିବା ପାଇଁ ତାଙ୍କର ମନୁଷ୍ୟ ପରି କିନ୍ତୁ ମୁଣ୍ଡଟା ସିଂହର । ହାତରେ ବଡ଼ବଡ଼ ମୁନିଆ ନଖ ସବୁ ରହିଥାଏ । ନରସିଂହ ହିରଣ୍ୟକଶିପୁକୁ ଦେଖି ଏମିତି ଗୋଟାଏ ଭୟଙ୍କର ଗର୍ଜନ କଲେ ଯେ ମନେହେଲା ଚରାଚର ମହାପ୍ରଳୟରେ ଲୀନ ହୋଇଯିବ ।

ନୃସିଂହଙ୍କ ଭୟଙ୍କର ରୂପ ଦେଖି ହିରଣ୍ୟ ମହାଭୟ ପାଇଗଲା । ତଥାପି ନିଜର ଦମ୍ଭ ନଛାଡ଼ି କହିଲା—"ପ୍ରହ୍ଲାଦ ! ଏଇ ତେବେ ତୋର ହରି । ଯାହାହେଉ ରାକ୍ଷସ କୁଳର ଚିର ଶତ୍ରୁ ହରିଙ୍କୁ ମୋତେ ଭେଟାଇ ଦେଇ ଉପଯୁକ୍ତ ପୁତ୍ରର କର୍ତ୍ତବ୍ୟ କରିଛୁ । ଏଇ ଦେଖ ତୋ' ହରିକୁ ମୁଁ ଏହି କ୍ଷଣି ମାରି ଯମପୁରକୁ ପଠାଇ ଦେବି ।"

ନିଜର ବିଶାଳକାୟ ଗଦା ନେଇ ସେ ନରସିଂହଙ୍କ ଦେହରେ ପ୍ରହାର କଲା । ମାତ୍ର ସେ ଗଦାଟା ନୃସିଂହଙ୍କ ବଜ୍ର ଭଳି କଠିନ ଦେହରେ ବାଜି ଚୂନ୍‌ଚୂନା ହୋଇଗଲା । ଭଗବାନ ନୃସିଂହ ପୁଣି ଏକ ଭୟଙ୍କର ଗର୍ଜନ କରି ହିରଣ୍ୟକଶିପୁକୁ ହାତରେ ଉଠାଇ ନେଲେ । ସେତେବେଳେ ସମୟ ଥିଲା ସନ୍ଧ୍ୟା—ଦିନ ନୁହେଁ କି ରାତି ନୁହେଁ ଦିନ ରାତିର ସନ୍ଧି ସମୟ । ନୃସିଂହ ଯାଇ ଦୁଆରବନ୍ଧ ଉପରେ ବସିଗଲେ ଯାହା ଘରର ଭିତର ନୁହେଁ କି ବାହାର ମଧ୍ୟ ନୁହେଁ । ରାକ୍ଷସକୁ ନିଜ ଜଙ୍ଘ ଉପରେ ଶୁଆଇ ରଖିଲେ ଯାହା ପୃଥିବୀ ଉପରେ, ଆକାଶରେ ବା ପାତାଳରେ ନୁହେଁ । ନୃସିଂହ ହିରଣ୍ୟକଶିପୁକୁ ନିଜ ନଖ ଦ୍ୱାରା ଚିରି ପକାଇ ମାରିଦେଲେ ଯାହା କୌଣସି ଅସ୍ତ୍ର ନୁହେଁ । ବ୍ରହ୍ମାଙ୍କ ଠାରୁ ମାଗି ନେଇଥିବା ଜଟିଳ ବର ଗୁଡ଼ିକର ସର୍ତ୍ତ ପୂରଣ କରି ହିଁ ଭଗବାନ ହିରଣ୍ୟକଶିପୁକୁ ହତ୍ୟା କଲେ ।

ରାକ୍ଷସମାନେ ନୃସିଂହଙ୍କ ଭୟଙ୍କର ରୂପ ଦେଖି ଯୁଦ୍ଧ କରିବା ପାଇଁ ସାହସ ନକରି ଶରଣ ପଶିଲେ । ଭଗବାନଙ୍କର ଚକ୍ଷୁ ଦୁଇଟାରୁ ଅଗ୍ନି ବର୍ଷଣ ହେଉଥିଲା । ସେ ଯେଉଁ ଆଡ଼େ ଚାହୁଁଥିଲେ ସବୁ ଜଳି ଯାଉଥିଲା । ତାଙ୍କର ଉଗ୍ର ରୂପକୁ ଦେଖି ଦେବତାମାନେ ଏପରିକି ମହାଲକ୍ଷ୍ମୀ ମଧ୍ୟ ଭୟ ପାଇଗଲେ । ସମସ୍ତେ ତାଙ୍କର ବନ୍ଦନା କରି ସ୍ୱର୍ଗ-ଉପରୁ ଫୁଲବର୍ଷା କରାଇଲେ । ଏଥିରେ ଉଗ୍ରବିଷ୍ଣୁ ନୃସିଂହଙ୍କର କ୍ରୋଧ ଶାନ୍ତ ହେଲା ନାହିଁ । ଶେଷରେ ଭକ୍ତ ପ୍ରହ୍ଲାଦଙ୍କ ସ୍ତୁତିରେ ହିଁ ନୃସିଂହ ଶାନ୍ତ ହେଲେ ଓ ନିଜର ଶାନ୍ତସୁନ୍ଦର ମହିମାମୟ ବିଷ୍ଣୁ ରୂପ ଧରିଲେ ।

ତାଙ୍କ ନିର୍ଦ୍ଦେଶରେ ପ୍ରହ୍ଲାଦ ନିଜ ମୃତପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଶେଷ କରି ଶୁଦ୍ଧ ହେଲେ । ପୃଥିବୀର ଅସୁର ରାଜ୍ୟରେ ପ୍ରହ୍ଲାଦ ରାଜା ହେଲେ । ଏହିପରି ଭାବରେ ବିଜୟ ମଧ୍ୟ ନିଜର ପ୍ରଥମ ଅସୁର ଜନ୍ମ ଶେଷ କରି ବୈକୁଣ୍ଠକୁ ଗଲା ।

ତସ୍ମା, କ୍ଷମା,ଶାମ ଦାନ, ଦଣ୍ଡ ଭେଦ ସ୍ୱନୀତ ଅନୁସରଣରେ ପରମ ବିଷ୍ଣୁଭକ୍ତ ପ୍ରହ୍ଲାଦ ପ୍ରଜାମାନଙ୍କୁ ଶାସନ କଲେ । ତାଙ୍କର ପୁତ୍ରଙ୍କ ନାମ ବିରୋଚନ । ବିରୋଚନଙ୍କ ଯୋଗ୍ୟ ବୟସ ହେବାରୁ ପ୍ରହ୍ଲାଦ ପୁଅ ହାତରେ ରାଜ୍ୟଭାର ଦେଇ ନିଜେ ତପସ୍ୟା କରିବା ନିମନ୍ତେ ବଣକୁ ଗଲେ ।

ବିରୋଚନ ମଧ୍ୟ ନିଜ ପିତା ପ୍ରହ୍ଲାଦଙ୍କ ଭଳି ସୁଚାରୁ ରୂପେ ରାଜ୍ୟ ଶାସନ କଲେ । ସେ ମଧ୍ୟ ନିଜ ବୟସ ଖସି ଆସିବାରୁ ପୁଅ ବଳୀଙ୍କୁ ସିଂହାସନରେ ଅଭିଷିକ୍ତ କଲେ । ବଳୀ ଥିଲେ ଯେଭଳି ବୀର ସେହିଭଳି ଧାର୍ମିକ । ହେଲେ ଅଜା ପ୍ରହ୍ଲାଦଙ୍କ ଭଳି ତାଙ୍କ ଠାରେ ଦେବତାମାନଙ୍କ ପ୍ରତି ମାନ୍ୟତା ନଥିଲା । ବଳୀଙ୍କ ପାଇଁ ଭଗବାନ ବିଷ୍ଣୁଙ୍କୁ ପୁଣି ଥରେ ଅବତାର ଗ୍ରହଣ କରିବାକୁ ହୋଇଥିଲା ।






କୁହାଯାଏ ବଳରେ ଯେଉଁମାନେ ଶ୍ରେଷ୍ଠ ସେମାନେ ହେଲେ—

"ବାଳୀ, ବଳୀ, ବଳରାମ,
କହୁ କହୁ ହନୁମାନ।"

ଏହି ନ୍ୟାୟରେ ବଳୀଙ୍କର ବଳ ଥିଲା ଅପରିସୀମ। ସେ ଜନ୍ମରୁ ହିଁ ଶକ୍ତିଶାଳୀ ଥିଲେ। ସିଂହାସନରେ ବସିବା ପରେ ପରେ ସେ ନିଜର ବଳ ପରୀକ୍ଷା ଆରମ୍ଭ କରିଦେଲେ। ପ୍ରଥମେ ସ୍ୱର୍ଗକୁ ଯାଇ ଦେବତାମାନଙ୍କ ମନପବନ ଘୋଡ଼ା ଉଚ୍ଚୈଃଶ୍ରବା ଅଶ୍ୱକୁ ନିଜ ଅଧିକାରକୁ ନେଇ ଆସିଲେ। ଉଚ୍ଚୈଃଶ୍ରବା ଅଶ୍ୱର ସ୍ୱଗୁଣ ଥିଲା ସେ ନିଜ ଆରୋହୀଙ୍କୁ ନେଇ ଜଳ, ସ୍ଥଳ, ଆକାଶ ମାର୍ଗ ଦେଇ ଚଉଦ ବ୍ରହ୍ମାଣ୍ଡକୁ ଯତା ଗତ କରି ପାରୁଥିଲା।

ଏଥିଯୋଗୁଁ ଦେବତାମାନେ ବଳୀଙ୍କ ଉପରେ ଅସନ୍ତୁଷ୍ଟ ହେଲେ। ପୂର୍ବରୁ ଚାଲି ଆସିଥିବା ଦେବ ଓ ଦାନବଙ୍କ ଶତ୍ରୁତା ପୁଣି ଚେଇଁ ଉଠିଲା। ଦେବତାମାନେ ବଳୀଙ୍କୁ ଆକ୍ରମଣ କଲେ। ଅମୃତ ବାଣ୍ଟିବା ଠାରୁ ଆରମ୍ଭ କରି ହିରଣ୍ୟକଶିପୁର ମୃତ୍ୟୁ

ପର୍ଯ୍ୟନ୍ତ ସମସ୍ତ ଘଟଣାବଳୀ ଶୁଣିବା ପରେ ଦେବତାମାନଙ୍କ ପ୍ରତି ତାଙ୍କର କ୍ରୋଧ ଖୁବ୍ ବଢ଼ିଗଲା । ସେ ମଧ୍ୟ ଦେବତାମାନଙ୍କ ଅନ୍ୟାୟର ପ୍ରତିଶୋଧ ପାଇଁ ଯୁଦ୍ଧଯାତ୍ରା କଲେ । ପୂର୍ବଥରେ ଦେବତା ଓ ରାକ୍ଷସମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ଅମୃତର ଶକ୍ତି ବଳରେ ଦେବତାମାନେ ଖୁବ୍ ବଳବାନ ହୋଇ ଯାଇଥିଲେ । ନିଜ ନିଜର ଦେବଶକ୍ତି ଅସ୍ତ୍ର ଓ ବଳରେ ସେମାନେ ରାକ୍ଷସ ମାନଙ୍କୁ ନିପାତ କରିବାକୁ ଲାଗିଲେ । ଅବଶ୍ୟ ବଳୀ ନିଜର ଅଦ୍ଭୁତ ବଳ ପ୍ରଦର୍ଶନ କରି ଦେବତାମାନଙ୍କୁ ଆହତ କରୁଥାନ୍ତି । ମାତ୍ର ନିଜର ବହୁ ଅସୁର ସୈନ୍ୟ ମରିଯାଉଥିବାରୁ ବଳୀଙ୍କର ବିଜୟ ଆଶା ମଉଳି ଯାଉଥାଏ । ସେ ଉପଯୁକ୍ତ ପରାମର୍ଶ ପାଇବା ନିମନ୍ତେ ଦାନବ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଶରଣ ପଶିଲେ । ଶୁକ୍ର ଥିଲେ ବିଚକ୍ଷଣ ପଣ୍ଡିତ । ସେ ନିଜର ତପସ୍ୟା ଓ ସାଧନା ବଳରେ ମୃତ ସଞ୍ଜିବନୀ ମନ୍ତ୍ରର ଅଧିକାରୀ ଥିଲେ । ଦାନବ ରାଜ ବଳୀଙ୍କ ପ୍ରାର୍ଥନାରେ ସେ ସନ୍ତୁଷ୍ଟ ହୋଇ ନିଜର ମୃତ ସଞ୍ଜୀବନୀ ମନ୍ତ୍ର ଶକ୍ତି ପ୍ରଭାବରେ ମୃତ ଅସୁର ମାନଙ୍କୁ ଜୀଆଁଇ ଦେଲେ । ବଳୀଙ୍କର ଚିନ୍ତା ଦୂର ହେଲା । ଅସୁରମାନଙ୍କ ମୃତ୍ୟୁଭୟ ଦୂରେଇଯିବାରୁ ସେମାନେ ଦ୍ୱିଗୁଣ ଉତ୍ସାହରେ ଦେବତାମାନଙ୍କ ସହ ଯୁଦ୍ଧକଲେ । ବଳୀ ନିଜର ବାହୁ ବଳରେ ଦେବତାମାନଙ୍କୁ ପରାସ୍ତ କଲେ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନ ଜୟକରି ନିଜକୁ ଏକାଙ୍ଗ ଚକ୍ରବର୍ତ୍ତୀ ବୋଲା-ଇଲେ । ସ୍ୱର୍ଗରେ ଇନ୍ଦ୍ରଙ୍କୁ ତଡ଼ି ସେ ନିଜର ରାଜ୍ୟ ପ୍ରତିଷ୍ଠା କଲେ । ଦେବତାମାନେ କିଏ କେଉଁଆଡ଼େ ଛିନ୍ନଛତ୍ର ହୋଇ ଲୁଚି ପଳାଇଗଲେ । ଯେଉଁମାନେ ବନ୍ଦୀ ହେଲେ ସେମାନେ ବଳୀଙ୍କ ବଶ୍ୟତା ସ୍ୱୀକାର କରି ରହିଲେ ।

ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ବଳୀ ନିଜ ପାଖରେ ଖୁବ୍ ସମ୍ମାନ ସହକାରେ ପାଦ ପୂଜା କରି ରଖିଥାନ୍ତି । ପଣ୍ଡିତ ଶୁକ୍ରାଚାର୍ଯ୍ୟଙ୍କ ଉପଦେଶ ମାନି ଚାଲୁଥାନ୍ତି । ଶୁକ୍ରାଚାର୍ଯ୍ୟ ବଳୀଙ୍କୁ ପରାମର୍ଶ ଦେଲେ—ସଂସାରରେ ସର୍ବଦା ଧର୍ମର ଜୟ ଓ ପାପର କ୍ଷୟ ହୋଇଥାଏ । ସୁଖ, ସୌଭାଗ୍ୟ ଓ ସମୃଦ୍ଧିରେ ଚାଲିବା ପାଇଁ ସତ୍ ପଥରେ ଚାଲିବା ଧର୍ମ ଆଚରଣ କରିବା, ଦୟା, ଦାନ, କ୍ଷମା ଇତ୍ୟାଦି ମହତ୍ ଗୁଣ ଦ୍ୱାରା ପରୋପକାର କଲେ ଜୀବନ ଧନ୍ୟ ହୁଏ । ଧର୍ମ ପ୍ରଭାବରେ ସ୍ଥାୟୀଭାବେ ଏ ତ୍ରିଭୁବନରେ ସମ୍ରାଟ ହୋଇ ବଳୀ ରହି ପାରିବେ ।”

ବଳୀ ଗୁରୁଙ୍କ କଥା ମାନି ନେଲେ । ମନରୁ ଅହଂକାର, ହିଂସା ଛାଡ଼ିଦେଇ ସେ ଧର୍ମ କର୍ମରେ ସମୟ କଟାଇଲେ । ଶୁକ୍ରାଚାର୍ଯ୍ୟଙ୍କ ସହାୟତାରେ ସେ ଏକ ଶହ ଅଶ୍ୱ-ମେଧ ଯଜ୍ଞ କଲେ ଏବଂ ଅକ୍ଷୟ ପୁଣ୍ୟ ଅର୍ଜନ କଲେ । ତ୍ରିଭୁବନର ସମ୍ରାଟ ହୋଇଥିବାରୁ ଜଗତର ସକଳ ସମ୍ପଦର ସେ ଅଧିକାରୀ ହୋଇ ପାରିଥିଲେ । ଗୁରୁଙ୍କ ପରାମର୍ଶ ଅନୁସାରେ ସେ ଦାନ କର୍ମ ଆରମ୍ଭ କଲେ । ପ୍ରତିଦିନ ହଜାର ହଜାର ପ୍ରଜା ନିଜ ଇଚ୍ଛା ମୁତାବକ ଦାନ ବଳୀଙ୍କ ଠାରୁ ପାଇ ପାରୁଥିଲେ । କ୍ରମେ ମହାଦାନୀ ବଳୀ ନାମରେ ବଳୀଙ୍କ ସୁନାମ ଚତୁର୍ଦ୍ଦିଗରେ ବ୍ୟାପିଗଲା । କ୍ରମେ ଦେବତା ମାନଙ୍କ କଥା ସମସ୍ତେ ଭୁଲିଗଲେ । ସର୍ବ ଶକ୍ତିମାନ, ସକଳ ଇଚ୍ଛା ପୂରଣକାରୀ ବଳୀଙ୍କୁ ଦାନବ ଓ ମାନବମାନେ ପୂଜା କଲେ ।

ଧର୍ମ ପଥରେ ଥିବାରୁ ଦେବତା ମାନେ ମଧ୍ୟ ବଳୀଙ୍କର କିଛି ଅନିଷ୍ଟ କରି ପାରୁନଥିଲେ । ଚକ୍ରବର୍ତ୍ତୀ ବଳୀ ନ୍ୟାୟ ଓ ଧର୍ମରେ ନିରଙ୍କୁଶ ଭାବେ ଶାସନ କାର୍ଯ୍ୟ ଚଳାଇଲେ ।

ଦେବରାଜ ଇନ୍ଦ୍ର ଓ ତାଙ୍କ ଅନୁଗାମୀ ଜେତେକ ଦେବତା ସ୍ୱର୍ଗରୁ ବିତାଡ଼ିତ ହୋଇ ବଣଜଙ୍ଗଲରେ ଲୁଚି ରହିଥାନ୍ତି । ସେମାନେ ଆଉ ସ୍ୱର୍ଗକୁ ଫେରିବା ସମ୍ଭବ ହେଉନଥାଏ । ଶେଷରେ ସେମାନେ ନିଜର ମାତା ଅଦିତୀଙ୍କୁ ନିଜର ଦୁଃଖ ଜଣାଇଲେ । ଅଦିତି ନିଜର ସ୍ୱାମୀ କଶ୍ୟପଙ୍କୁ ପ୍ରାର୍ଥନା କରି କହିଲେ—"ସ୍ୱାମୀ ! ମୋ ଦେବ ସନ୍ତାନ ଗଣ ବହୁକାଳ ହେଲା ବଣପର୍ବତରେ ଲୁଚି ରହିଛନ୍ତି । ମହାବଳୀଙ୍କ ଶତ୍ରୁତା ଯୋଗୁଁ ସେମାନେ ଅନେକ କଷ୍ଟ ପାଉଛନ୍ତି । ଏଣିକି ସେମାନଙ୍କୁ ସ୍ୱର୍ଗ ରାଜ୍ୟରେ ପୁଣି ପ୍ରତିଷ୍ଠିତ କରାଇବା ଉପାୟ କରନ୍ତୁ ।"

ମହର୍ଷି କଶ୍ୟପ ପରାମର୍ଶ ଦେଲେ ଦେବତା ମାନଙ୍କ ଦୁଃଖ ମୋଚନକାରୀ କେବଳ ଭଗବାନ ବିଷ୍ଣୁ ଅଛନ୍ତି । ସମସ୍ତେ ଶ୍ରୀ ବିଷ୍ଣୁଙ୍କ ଶରଣ ପଶିଲେ ସେ ହିଁ ଏଥିନିମନ୍ତେ କିଛି ବ୍ୟବସ୍ଥା କରିବେ । ସେଠୁ ଦେବତା ମାନେ ନିଜ ମାତା ଅଦିତୀଙ୍କ ସହ ଏକାଠି ଭଗବାନ ବିଷ୍ଣୁଙ୍କୁ ଧ୍ୟାନ କଲେ । ସେମାନଙ୍କର ଧ୍ୟାନ ଓ ଆରାଧନାରେ ଭଗବାନ ବିଷ୍ଣୁ ସନ୍ତୁଷ୍ଟ ହେଲେ ଓ ସମସ୍ତଙ୍କୁ ଦର୍ଶନ ଦେଲେ । ଅନ୍ତର୍ଯ୍ୟାମୀ ସମସ୍ତଙ୍କ ଅନ୍ତର କଥା ଜାଣିପାରିଲେ । ସେ ଅଦିତୀଙ୍କୁ ଆଶ୍ୱାସନା ଦେଇ କହିଲେ "ମା ! ତୁମେ ସନ୍ତାନ ମାନଙ୍କୁ ପୁଣି ଥରେ ସ୍ୱର୍ଗରାଜ୍ୟରେ ପ୍ରତିଷ୍ଠିତ କରାଇବା ପାଇଁ ମୁଁ ମନୁଷ୍ୟ ଅବତାର ଗ୍ରହଣ କରିବି । ଖୁବ୍ ଅଳ୍ପଦିନ ମଧ୍ୟରେ ଦେବତା ମାନଙ୍କର କଷ୍ଟ ଦୂର ହେବ ।" ତା'ପରେ ଶ୍ରୀ ବିଷ୍ଣୁ ବାମନ ରୂପେ ଅବତାର ଗ୍ରହଣ କଲେ । କଶ୍ୟପଙ୍କର ସନ୍ତାନରୂପେ ସେ ଜନ୍ମ ହେଲେ ଖୁବ୍ କ୍ଷୁଦ୍ର ଆକାରରେ । ତାଙ୍କର ତେଜ ସୂନା ଭଳି ଝଟକୁ ଥାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ବାମନଙ୍କ ଆକାର ମଧ୍ୟ ସାମାନ୍ୟ ବୃଦ୍ଧି ପାଇଲା । ତାଙ୍କର ଉଚ୍ଚତା ଥିଲା ଦୁଇହାତରୁ କମ୍ । ସେହି ଅନୁପାତରେ ଟିକି ଟିକି ହାତ ଗୋଡ଼ ସାଙ୍ଗକୁ ଛୋଟ ଲମ୍ବା ମୁଣ୍ଡଟି ଦେଖିବାକୁ ଖୁବ୍ ଚମତ୍କାର । ଯଥା ସମୟରେ ବାମନଙ୍କ ଉପନୟନ ଶେଷ ହେଲା । ମହାତ୍ମା କଶ୍ୟପ ତାଙ୍କୁ ସମସ୍ତ ପ୍ରକାର ବୈଦିକ ଶିକ୍ଷା ଦେଲେ । ବାମନ ରୂପୀ ଭଗବାନ ଜଗତର ସମସ୍ତ ପ୍ରକାର ଶାସ୍ତ୍ରରେ ପଣ୍ଡିତ ହୋଇ ଉଠିଲେ ।

ମହାଦାନୀ ବଳୀ ଆରମ୍ଭ କଲେ ସବୁଠାରୁ ଶ୍ରେଷ୍ଠ ବିଶ୍ୱଜିତ୍ ନାମକ ଯଜ୍ଞ । ଏହି ଯଜ୍ଞ କଲେ ଅଶେଷ ପୁଣ୍ୟ ଅର୍ଜନ କରିହୁଏ, ମାତ୍ର ଯଜ୍ଞକର୍ତ୍ତା ଏଥିରେ ନିଜର ସର୍ବସ୍ୱ ଦାନ କରି ଦେଇଥାନ୍ତି । ବଳୀ ମଧ୍ୟ ସେଥିପାଇଁ ବଡ଼ ଧରଣର ଦାନ ଦେଉଥାନ୍ତି । ଚାରି ଆଡେ ବଳୀଙ୍କର ଯଶ ବ୍ୟାପୀ ଯାଇଥାଏ । ବାମନ ବିଷ୍ଣୁ ବଳୀଙ୍କ ଠାରୁ ଦାନ ଗ୍ରହଣ ପାଇଁ କଶ୍ୟପଙ୍କ ଠାରୁ ଅନୁମତି ନେଇ ଯାତ୍ରା କଲେ । ବାମନ ହାତରେ ଧରିଥାନ୍ତି ଛତା ଓ ଆଉ ଏକ ଛୋଟ କମଣ୍ଡଳୁ । ଛୋଟ ଚାଳପତ୍ର ଛତାଟିଏ ମୁଣ୍ଡାଇଥାନ୍ତି । ନିକିଷ୍ଠ ହୋଇ ହଳଦିଆ ଲୁଗା ପିନ୍ଧିଥାନ୍ତି । କାନରେ କୁଣ୍ଡଳ ଓ ଯଜ୍ଞପବିତ୍ର । ଶୋଭା ପାଉଥାଏ । ବ୍ରହ୍ମତେଜରେ ତାଙ୍କ ଦେହ ଝଟକୁ ଥାଏ ।

ବଳୀ ଯଜ୍ଞ ଶାଳରେ ବସିଥିବା ସମୟରେ ହଠାତ୍ ମଧୁର ସ୍ୱର ଶୁଣି ପାରିଲେ "ଭବାନ୍ ଭିକ୍ଷାଂ ଦେହି... ଭବାନ୍ ଭିକ୍ଷାଂ ଦେହି ।" ସେ ସ୍ୱରରେ ଏମିତ ଏକ ଅଦ୍ଭୁତ ଆକର୍ଷଣ ଥିଲା ଯେ ବଳୀ ନିଜ ଆସନରୁ ଉଠି ଦ୍ୱାର ଆଡ଼କୁ ଦୌଡ଼ିଗଲେ । ସେଠାରେ ଆଜାନୁଲମ୍ବିତ ବାହୁ ଥିବା କ୍ଷୁଦ୍ର ଦେହୀ ତେଜସ୍ୱୀ ବାମନଙ୍କୁ ଦେଖି ତାଙ୍କ ମନ ଆନନ୍ଦରେ ପୂରିଗଲା । ସେ ପାଦ୍ୟ ଅର୍ଘ୍ୟ ଦେଇ ବାମନ ବ୍ରାହ୍ମଣଙ୍କୁ ସସମ୍ମାନେ ଯଜ୍ଞଶାଳାକୁ ନେଇ ଆସିଲେ । ଯଜ୍ଞଶାଳାରେ ବାମନଙ୍କୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ଓ ଆନନ୍ଦ ହୋଇଗଲେ । ତାଙ୍କ ସୁନ୍ଦର ରୂପ ସମସ୍ତଙ୍କୁ ଆକୃଷ୍ଟ କଲା । ବଳୀ ବାମନଙ୍କୁ ଉଚ୍ଚ ଆସନରେ ବସାଇ ସମ୍ମାନ ପ୍ରଦର୍ଶନ କଲେ ଏବଂ ବାମନ ବଳୀଙ୍କୁ ଆଶୀର୍ବାଦ ଦେଇ କହିଲେ—"ହେ ଦାନବୀର ବଳୀ ଏ ବିଶ୍ୱ ବକ୍ଷରେ ତୁମର ଯଶୋରାଜି ଅମ୍ଳାନ ରହୁ ।"

ତା'ପରେ ବଳୀ ବାମନଙ୍କୁ ତାଙ୍କର ପରିଚୟ ଓ ଆଗମନର କାରଣ ପଚାରିଲେ । ବାମନ କହିଲେ - "ମୁଁ ହେଉଛି ମୁନିପୁଙ୍ଗବ କଶ୍ୟପଙ୍କ ପୁତ୍ର । ମୋର ଆକୃତି ଅନୁସାରେ ମୋର ନାମ ମଧ୍ୟ ବାମନ । ସଂସାରରେ ମୁଁ ବିପ୍ରବାମନ ନାମରେ ପରିଚିତ । ହେ ରାଜା ! ମୁଁ ତୁମ ସହ ସାକ୍ଷାତ କରିବାକୁ ହିଁ ଆସିଛି । ତୁମେ ବଳରେ ତୁମ ପିତା ଓ ପିତାମହଙ୍କ ଠାରୁ ମଧ୍ୟ ବୀର । ହେଲେ ଦାତା ପଣରେ ପଛାନ୍ତର ନାହିଁ । ଆଜି ତ୍ରିଭୁବନ ମହାଦାନୀ ମହାବଳୀଙ୍କ ଯଶୋଗାନରେ ଶତମୁଖ । ମୋର ଆକୃତି କ୍ଷୁଦ୍ର ହେଲେ ମଧ୍ୟ ମାତା ସରସ୍ୱତୀଙ୍କ କୃପାରେ ବିଦ୍ୟାଧନରେ ଗୌରବାନ୍ୱିତ କିନ୍ତୁ ମହାଲକ୍ଷ୍ମୀ ମା'ଙ୍କ ଦୟା ଏ ପର୍ଯ୍ୟନ୍ତ ପାଇ ପାରି ନାହିଁ । ଧନହୀନ ମୁଁ । ମହାଦାନୀଙ୍କ ଠାରୁ କିଛି ଧନ ଦାନ ଗ୍ରହଣ କରିବା ପାଇଁ ଏଠାକୁ ଆସିଛି ! କ'ଣ ମୁଁ ଯାହା ମାଗିବି ତାହା ଆପଣ ମୋତେ ଦେଇ ପାରିବେ ?

ବାମନ ଏ ଭଳି କଥା ଶୁଣି ବଳୀ ଅହଂକାରରେ ହସି ଉଠିଲେ । ସେ କହିଲେ— "ହେ ବ୍ରାହ୍ମଣ ! ଆପଣ ସବୁ ଶାସ୍ତ୍ରରେ ପାରଙ୍ଗମ, ଜ୍ଞାନୀ, ପଣ୍ଡିତ ହୋଇ ପାରନ୍ତି ! କିନ୍ତୁ ବାଳକ ଭଳି କ୍ଷୁଦ୍ର ଚେହେରା ପାଇଥିବାରୁ ବୁଦ୍ଧି ମଧ୍ୟ ଚପଳମତି ବାଳକ ଭଳି କୋମଳ ବୋଲି ମୁଁ ଭାବୁଛି । ମହାରାଜ ବଳୀର ମହାଦାନୀ ଶବ୍ଦର ଅର୍ଥ ଆପଣ ଜାଣି ନାହାନ୍ତି ବୋଧେ । ମୁଁ କାମନାର କଳ୍ପତରୁ ଭଳି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଏକମାତ୍ର ଦାତା ଶ୍ରେଷ୍ଠ । ଆଜି ପର୍ଯ୍ୟନ୍ତ ମହାଦାନୀ ବଳୀଠାରୁ ନିଜ ଇଚ୍ଛା ମୁତାବକ ଦାନ ଗ୍ରହଣ ନକରି କେହି କେବେ ଫେରି ଯାଇଥିବା ଆପଣ ଜାଣନ୍ତି କି ? କେହି କେବେ ବଳୀ ଦ୍ୱାରରୁ ଶୂନ୍ୟ ହସ୍ତରେ ଫେରି ଯାଇନି କି ଯିବନାହିଁ ମଧ୍ୟ । କୁହନ୍ତୁ ଆପଣ ମୋ ଠାରୁ କ'ଣ ଚାହାନ୍ତି ? ନିଃସଙ୍କୋଚରେ କୁହନ୍ତୁ ।

ବାମନ କହିଲେ—"ଆପଣଙ୍କ ବାକ୍ୟର ଦୃଢ଼ତା ଶୁଣି ମୁଁ ଆନନ୍ଦିତ ହେଲି । ମନେହୁଏ ମୁଁ ଯାହା ମାଗିବି ଆପଣ ନିଶ୍ଚୟ ମୋ ଅଭିଳାଷ ପୂରଣ କରିବେ ।"

ବଳୀ କହିଲେ—ନିଶ୍ଚୟ ନିଶ୍ଚୟ !!! ଥରେ ନୁହେଁ ତିନିଥର ନୁହେଁ ତିନିବାର ସତ୍ୟ କରି ମୁଁ କହୁଛି ଆପଣ ଯାହା ଇଚ୍ଛା କରିବେ ମୁଁ ଦାନ ଦେବାକୁ ପ୍ରସ୍ତୁତ । କ'ଣ ଚାହାନ୍ତି ଆପଣ ? କୌଣସି ରାଜ୍ୟର ରାଜପଦ ? ଏହି ମୋର ରାଜ ସିଂହାସନ ? ଧନ, ଧାନ୍ୟ, ଗୋପଲକ୍ଷ୍ମୀ, ଅତୁଳ ସମ୍ପଦ, ପୃଥିବୀର ଯେ କୌଣସି ଦୁର୍ଲ୍ଭ ରତ୍ନକୁ ମଧ୍ୟ ମୁଁ ସୁଲଭ କରି ଦାନ ଦେବି । କହନ୍ତୁ ।

ବାମନ ଅନ୍ତର୍ଦର୍ଶୀ କହିଲେ—"ନା, ରାଜା ରାଜ୍ୟ ବା ରାଜସିଂହାସନ, ଧନ, ସମ୍ପଦ ପ୍ରଭୃତି ମୋର କ'ଣ ହେବ ? ମୁଁ ଜଣେ କ୍ଷୁଦ୍ର ଆକାରର ବ୍ରାହ୍ମଣ । ଅତ ଧନ ମାଗି ଅନର୍ଥ ଲୋଭୀ ହେବା ମୋର ଅଭିପ୍ରାୟ ନୁହେଁ । କିଛି ଭୂମି ଦାନ ନେବା ପାଇଁ ମୋର ଇଚ୍ଛା ।

ବଳୀ ଆଗ୍ରହ ସହକାରେ କହିଲେ—"ନିଅନ୍ତୁ ବ୍ରାହ୍ମଣ ଯେତେ ଇଚ୍ଛା ସେତେ ପରିମାଣର ଭୂମି ମାଗି ନିଅନ୍ତୁ ମୁଁ ଖୁସି ହେବି ।"

ବାମନ କହିଲେ—"ତେବେ ମୋ ପାଦରେ ମାପି ମାପି ମୁଁ ତିନିପାଦ ଭୂମି ମାତ୍ର ଗ୍ରହଣ କରିବି ।"

ବଳୀ ରାଜା ପୁଣିଥରେ ହସିଉଠି କହିଲେ—"ମାତ୍ର ତିନି ପାଦ ଭୂମି ? ତାହା ପୁଣି ଆପଣଙ୍କ ପାଦର ମାପ ଅନୁସାରେ ? ମତେ ପରିହାସ କରୁନାହାନ୍ତି ତ ବ୍ରାହ୍ମଣ ?"

ବାମନ କହିଲେ—"ମହାରାଜ ମହାଦାତା ବଳୀ କ'ଣ ପରିହାସର ପାତ୍ର ? ଏ ଜଗତରେ ବ୍ରାହ୍ମଣମାନେ ଲୋଭୀ ବୋଲି ଆଖ୍ୟା ପାଇଛନ୍ତି । ମାତ୍ର ଏହା ଠିକ୍ ନୁହେଁ । ବ୍ରାହ୍ମଣମାନେ ଲୋଭୀ ନୁହନ୍ତି ବୋଲି ପ୍ରମାଣ କରିବା ପାଇଁ ମୁଁ ଦାନଶ୍ରେଷ୍ଠ ବଳୀଙ୍କ ଆଗରେ ଉପସ୍ଥିତ ହୋଇ ମଧ୍ୟ ମାତ୍ର ତିନି ପାଦ ଭୂମି ମାଗୁଛି ।"

ବଳୀ ବାମନଙ୍କୁ ଉପହାସ କଲାଭଳି କହିଲେ—"ଦେଖୁଛି ଦେଖିବାକୁ ଆପଣ ଯେଭଳି ବିଚିତ୍ର ଆପଣଙ୍କ ପ୍ରାର୍ଥନା ମଧ୍ୟ ସେହିଭଳି ବିଚିତ୍ର । ଦେହଟି ଛୋଟ ବୋଲି ଆପଣ ମନଟିକୁ ମଧ୍ୟ ଏଭଳି ଛୋଟ କରି ଦେଉଛନ୍ତି କାହିଁକି ? ଦାତାଙ୍କର ଆଗରେ ଠିଆ ହୋଇ ଊଣ ପ୍ରାର୍ଥନା କରୁଛନ୍ତି କାହିଁକି ? ଆପଣଙ୍କ ପାଦର ଆକାର ଏତେ ଛୋଟ ଯେ ଆଖିକୁ ଭଲ ଭାବେ ଦେଖାଯାଉନାହିଁ ଅଥଚ ସେହି ପାଦ ମାପରେ ମାତ୍ର ତିନି ପାଦ ଭୂମି ଦାନ ନେଇ ଆପଣ କ'ଣ କରିବେ ? ଦତ୍ତିମାନ ମଧ୍ୟ ସମସ୍ତ ଅଛୁ ବାମନ ଗୋସାଇଁ । ଜୀବନରେ ଥରେ ମାତ୍ର ସୁଯୋଗ ଆସେ ଆଉ ସେହି ସୁଯୋଗର ସଦ୍‌ବ୍ୟବହାର କରିବାଟା ହେଉଛି ଯଥାର୍ଥ ପୌରୁଷ । ଆପଣ ବଳୀର ଦ୍ୱାରରେ ଉପସ୍ଥିତ ଅଛନ୍ତି ସୁଯୋଗକୁ ହାତଛଡ଼ା କରନ୍ତୁ ନାହିଁ । ସ୍ୱଚ୍ଛନ୍ଦ ମାଗିନିଅନ୍ତୁ ।"

ବାମନ କହିଲେ—"ଆପଣ ବ୍ରାହ୍ମଣ ଶବ୍ଦର ଅର୍ଥ ଜାଣିନାହାନ୍ତି କି ? ତ୍ୟାଗ ବିନା ଭୋଗ କରିବା ବ୍ରାହ୍ମଣର ନୀତି ନୁହେଁ । ତିନି ପାଦ ଭୂମି ଛଡ଼ା ମୁଁ ଅନ୍ୟ କିଛି ବି ଚାହେଁ ନା ।

ବଳୀ ଉତ୍ତର ଦେଲେ । "କହିଲେ—ବେଶ୍ ! ଅପେକ୍ଷା କରନ୍ତୁ । ମୁଁ ମୋର ପତ୍ନୀ ବିନ୍ଧ୍ୟାବଳୀଙ୍କ ସହ ଏଠାରେ ଉପସ୍ଥିତ ହୋଇ ଶଙ୍ଖରେ ଜଳନେଇ ଆପଣଙ୍କ ବାଂଛିତ ଭୂମିଦାନ ଦେବି ।"

ବଳୀ ଅନ୍ତଃପୁର ଆଡକୁ ଯିବାବେଳେ ଶୁକ୍ରାଚାର୍ଯ୍ୟ ତାଙ୍କୁ ଗୋପନରେ କହିଲେ— "ରାଜା ! ଏ ତୁମେ କ'ଣ କରିବାକୁ ଯାଉଛ ? ବାମନଙ୍କୁ ସାମାନ୍ୟ ବ୍ରାହ୍ମଣ ବୋଲି ଭାବନାହିଁ । ସେ ହେଉଛନ୍ତି ସାକ୍ଷାତ ବିଷ୍ଣୁ । ମାତ୍ର ତିନି ପାଦ ଭୂମି ମାଗି ସେ ତୁମର ସର୍ବସ୍ୱ ଲୁଟି ନେବାକୁ ଅବତାର ଗ୍ରହଣ କରିଛନ୍ତି । ତାଙ୍କୁ ଦାନ ଦିଅ ନାହିଁ ।"

କିନ୍ତୁ ମହାରାଜ ବଳୀ କହିଲେ—"ଗୁରୁଦେବ ! ମୁଁ ଦାନ ଦେବାପାଇଁ ଥରେ କଥା ଦେଇ ସାରିଛି ଯେତେବେଳେ ସେତେବେଳେ ଯାହା ହେଲେ ବି ତାହା ଅମାନ୍ୟ କରି-ପାରିବି ନାହିଁ । ତାଛଡ଼ା ସ୍ୱୟଂ ବିଷ୍ଣୁ ଯଦି ମୋଠାରୁ ଦାନ ନେବାକୁ ଆସିଛନ୍ତି ଏହାଠାରୁ ସୌଭାଗ୍ୟର କଥା ଆଉ କ'ଣ ଥାଇପାରେ ?"

ଶୁକ୍ର କହିଲେ—"କିନ୍ତୁ ସେ ସୌଭାଗ୍ୟ ତୁମ ପାଇଁ ଦୁର୍ଭାଗ୍ୟକୁ ହିଁ ନିମନ୍ତ୍ରଣ କରି ଆଣିବ ବତ୍ସ । ଦାନଦେଇ କେବଳ ତୁମର ନୁହେଁ, ସମସ୍ତ ରାକ୍ଷସ କୁଳର ବିନାଶ ହେବ । ଗୁରୁ ହିସାବରେ ତୁମର ଭଲ ପାଇଁ ମୁଁ ସତର୍କ କରାଇ ଦେଉଛି । ବାମନ ରୂପୀ ବିଷ୍ଣୁଙ୍କୁ ତୁମେ ଦାନ ନଦେଇ ଫେରାଇଦିଅ ।"

ବଳୀ କହିଲେ—"ନା, ଗୁରୁଦେବ ! ବଳୀ କାପୁରୁଷ କିମ୍ବା ଭୀରୁ ନୁହେଁ । ଜଣେ ଦାନବ ରାଜା ଧର୍ମ ଓ ନ୍ୟାୟରେ ରାଜ୍ୟଶାସନ କରୁଥିଲା । ମହାଦାନୀ ହିସାବରେ ବିଷ୍ଣୁଙ୍କୁ ସର୍ବସ୍ୱ ଦାନ ଦେଇ ବିନାଶ ହେଲା ବୋଲି ଯଶ ଚିରକାଳ ରହିବ । ଏ ବିଶ୍ୱକୁ ସଙ୍କଟରେ ସର୍ବସ୍ୱ ଦାନ କରିବା ଠାରୁ ପୁଣ୍ୟ ଆଉ କିଛିନାହିଁ । ପୁଣି ଭଗବାନ ବିଷ୍ଣୁ ଭିକ୍ଷୁକ ସାଜି ମୋଠାରୁ ଦାନ ଗ୍ରହଣ କରୁଛନ୍ତି ଯେତେବେଳେ ତାଙ୍କଠାରୁ ବଳି ସୁଯୋଗ୍ୟ ପାତ୍ରକୁ ଦାନ ନଦେଇ ଫେରାଇ ଦେଲେ ମୋର ସମସ୍ତ ପୁଣ୍ୟ ଧ୍ୱଂସ ହୋଇଯିବ । ମୁଁ ଆପଣଙ୍କ କଥା ରକ୍ଷା କରିପାରିବ ନାହିଁ ।"

ଶୁକ୍ର ବଳୀ ଉପରେ କ୍ଷୁବ୍ଧ ହେଲେ । ସେ କିନ୍ତୁ ଚାହୁଁ ନଥିଲେ ବଳୀ ବାମନଙ୍କୁ ଦାନ ଦିଅନ୍ତୁ ବୋଲି । ସେ ମନ୍ତ୍ରବଳରେ ସଙ୍ଗେ ସଙ୍ଗେ ଗୋଟାଏ ମାଛି ହୋଇଗଲେ ଏବଂ ବଳୀ ଦାନ ପାଇଁ ଆଣିଥିବା ଜଳପୂର୍ଣ୍ଣ ଶଙ୍ଖର ମୁହଁରେ ଥିବା ଛିଦ୍ରରେ ବସି ରାସ୍ତା ବନ୍ଦ କରିଦେଲେ ।

ମହାରାଜ ବଳୀ ରାଣୀ ବିନ୍ଧ୍ୟାବଳୀଙ୍କ ସହିତ ବାମନଙ୍କ ନିକଟରେ ଉପସ୍ଥିତ ହେଲେ । ବିନ୍ଧ୍ୟାବଳୀ ସୁନା କଳସୀରେ ପଇଡ଼ ପାଣି ଓ କ୍ଷୀର ଦ୍ୱାରା ବାମନଙ୍କ ପାଦ ଧୋଇଦେଲେ । ବିଧି ବିଧାନ ଅନୁସାରେ ପୂଜା ସକଳ କରାଗଲା । ରାଜା ବଳୀ କହିଲେ— "ହେ ଅତିଥି ବ୍ରାହ୍ମଣ ! ଆପଣ ନିଜ ଇଚ୍ଛାରେ ଏ ତ୍ରିଭୁବନ ମଧ୍ୟରୁ ତିନିପାଦ ଭୂମି ଗ୍ରହଣ

ତେଣୁ ମୁଁ ଶ୍ରଦ୍ଧାର ସହିତ ଦାନ ଦେଉଅଛି। ଏଥର ସେ ଶଙ୍ଖରୁ ଜଳ ଢ଼ାଳି ଦେଲେ। ମାତ୍ର ଶଙ୍ଖରୁ ଜଳ ଖସିଲା ନାହିଁ। ଶୁକ୍ର ତ ମାଛି ରୂପରେ ରାସ୍ତା ବନ୍ଦ କରି ବସିଛନ୍ତି ଜଳ ଆସିବ ବା କେମିତି ? ବାମନ ବିଷ୍ଣୁ ଶୁକ୍ରଙ୍କ ଚାଲ୍ ବୁଝିପାରିଲେ। ସେ ସଙ୍ଗେ ସଙ୍ଗେ ଗୋଟାଏ କୁଶ ଦ୍ୱାରା ଶଙ୍ଖର ରନ୍ଧ୍ରକୁ ସଫା କରିଦେଲେ। କୁଶ ବାଜି ଶୁକ୍ରାଚାର୍ଯ୍ୟଙ୍କ ଗୋଟାଏ ଚକ୍ଷୁ ଫୁଟିଗଲା। ରକ୍ତ ଧାରି ଧାରି ହୋଇ ବୋହି ଆସିଲା। ସେ ଚିତ୍କାର କରି ଶଙ୍ଖରୁ ମାଛି ଆକାରରେ ଖସି ପଡ଼ିଲେ ଏବଂ ନିଜ ରୂପ ଧରି ବିଷ୍ଣୁଙ୍କୁ ନିଜ ଦୋଷ ପାଇଁ କ୍ଷମା ପ୍ରାର୍ଥନା କଲେ। ବିଷ୍ଣୁଙ୍କ ଭର୍ତ୍ସନା ଭୟରେ ସେ ସେଠାରୁ ପଳାଇଗଲେ।

ରାଜା ବଳୀ ଶଙ୍ଖରୁ ଜଳ ଢ଼ାଳି ଭୂମି ଦାନ ଦେଲେ। ଏଥର ବାମନ ବିଷ୍ଣୁ ତ୍ରିବିକ୍ରମ ସାଜି ବିଶ୍ୱରୂପ ଧାରଣ କଲେ। ପ୍ରଥମ ପାଦର ଆକାର ଏତେ ବଢ଼ିଗଲା ଯେ ସମଗ୍ର ପୃଥିବୀ ତାହା ଦ୍ୱାରା ଆଚ୍ଛାଦିତ ହୋଇଗଲା। ଦ୍ୱିତୀୟ ପାଦକୁ ସେ ଆକାଶ ଆଡ଼େ ବଢ଼ାଇ ଦେଲେ। ସେ ବିଶାଳ ପାଦ ସମଗ୍ର ଆକାଶ ଓ ସ୍ୱର୍ଗକୁ ଆଚ୍ଛାଦିତ କରିଦେଲା। ବ୍ରହ୍ମା ଓ ଅନ୍ୟ ଦେବ ଦେବୀମାନେ ଭଗବାନ ବିଷ୍ଣୁଙ୍କ ଶ୍ରୀଚରଣ ପଞ୍ଚାମୃତ ଦ୍ୱାରା ଧୋଇ ପୂଜା ଆରାଧନା କଲେ। ସେହି ପଦୋଦକ ଆକାଶରେ ଆକାଶଗଙ୍ଗା ପବିତ୍ର ନଦୀ ରୂପେ ପ୍ରବାହିତ ହେଲା।

ଏଥର ବାମନ ପଚାରିଲେ ହେ ମହାଦାନୀ ବଳୀରାଜ ମୋର ମାତ୍ର ଦୁଇଟି ପାଦ ଦ୍ୱାରା ସ୍ୱର୍ଗ ଓ ମର୍ତ୍ତ୍ୟ ଆଚ୍ଛାଦିତ ହୋଇଗଲା ! ଏବେ କୁହ ମୁଁ ମୋର ତୃତୀୟ ପାଦଟି କେଉଁ ଭୂମି ଉପରେ ରଖିବି।''

ବଳୀ ଦେଖିଲେ ବାମନଙ୍କ ନାଭି ଦେଶରୁ ତୃତୀୟ ପାଦ ବାହାରି ଆସୁଛି। ବଳୀ ଆଣ୍ଠୁମାଡ଼ି ବସି ପଡ଼ିଲେ ଏବଂ କହିଲେ—ହେ ତ୍ରିବିକ୍ରମ ବିଷ୍ଣୁ ମୋର ଗର୍ବ ଖର୍ବ ହୋଇଛି ମାତ୍ର ଦୁଇଟି ପାଦରେ ମୁଁ ବିଜୟ କରିଥିବା ତ୍ରିଭୁବନରୁ ସ୍ୱର୍ଗ ମର୍ତ୍ତ୍ୟ ଦୁଇ ଭୁବନ ଆପଣ ଗ୍ରହଣ କରି ସାରିଛନ୍ତି। ଆପଣ ତୃତୀୟ ପାଦରେ ମୋର ପାତାଳ ଭୁବନ ପାଇଁ ମୋ ମସ୍ତକ ଉପରେ ପାଦ ରଖନ୍ତୁ।''

ବାମନ ନିଜର ତୃତୀୟ ପାଦଟି ବଳୀଙ୍କ ମସ୍ତକ ଉପରେ ସ୍ଥାପନ କଲେ। ସେ ପାଦ ଚାପରେ ବଳୀ କ୍ରମଶଃ ପାତାଳ ଆଡ଼କୁ ଚାପି ହୋଇଗଲେ। ଠିକ୍ ଏହି ସମୟରେ ପ୍ରହ୍ଲାଦ ଉପସ୍ଥିତ ହୋଇ ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ ତାଙ୍କ ନାତି ବଳୀଙ୍କ ଉପରେ କୃପା କରିବା ପାଇଁ ବିନ୍ଧ୍ୟାବଳୀ ମଧ୍ୟ ନିଜ ସ୍ୱାମୀଙ୍କ କୌଣସି ଅମଙ୍ଗଳ ନକରିବା ପାଇଁ ବାମନଙ୍କୁ ପ୍ରାର୍ଥନା କଲେ।

ବାମନ ଏଥର କହିଲେ– ଦାନ ଓ ଧର୍ମରେ ବଳୀଙ୍କ ଭଳି ଶ୍ରେଷ୍ଠ ଦାନୀ ଓ ଧାର୍ମିକ କେହି ନାହାନ୍ତି। ସେ ମୋର ପରମ ଭକ୍ତ। ତେଣୁ ତାଙ୍କର ଅମଙ୍ଗଳ ଆଦୌ ହେବ ନାହିଁ।'' ବଳୀଙ୍କୁ କହିଲେ— ଭକ୍ତ ଶ୍ରେଷ୍ଠ ବଳୀ ତୁମ ଦାନ ପର୍ଣ୍ଣଆରେ ମୁଁ ମୁଗ୍ଧ, ମୋ ଠାରୁ ତୁମେ ଗୋଟିଏ ବର ଗ୍ରହଣ କର।''

ବଳୀ କହିଲେ—"ଭଗବାନ ଆପଣଙ୍କୁ ମୁଁ ମୋର ସର୍ବସ୍ୱ ଦାନ କରି ଦେଇଛି । ମୁଁ କେବଳ ଆପଣଙ୍କର ଏବଂ ଆପଣ ଯେଉଁ ନିର୍ଦ୍ଦେଶ ଦେବେ ମୁଁ ପାଳନ କରିବି । ତେବେ ସବୁବେଳେ ମୁ ଆପଣଙ୍କ ଏହି ରୂପକୁ ଯେପରି ଦର୍ଶନ କରି ପାରୁଥିବି ମୋତେ ସେହି ବର ଦିଅନ୍ତୁ ।"

ଭଗବାନ ବାମନ କହିଲେ – " ବଳୀରାଜ ! ମୁଁ ତୁମକୁ ଆଜିଠାରୁ ପାତାଳର ଅଧିପତି ରୂପେ ଅଭିଷିକ୍ତ କରୁଛି । ତୁମେ ନିଜ ପରିବାର ଓ ପରିଜନ ସହ ପାତାଳରେ ହିଁ ରହିବ । ତୁମ ଇଚ୍ଛାମୁତାବକ ମୁଁ ଏହି ବାମନ ରୂପି ବିଷ୍ଣୁ ରୂପରେ ପାତାଳରେ ତୁମ ଦ୍ୱାରପାଳ ରୂପେ ଅବସ୍ଥାନ କରିବି ଏବଂ ତୁମକୁ ନିତ୍ୟ ଦର୍ଶନ ଦେଇ ଆପଦ ବିପଦରୁ ରକ୍ଷା କରୁଥିବି । ବର୍ଷରେ ଥରେ ମାତ୍ର ତୁମେ ଏ ପୃଥିବୀକୁ ବୁଲି ଆସି ଫେରିଯାଇ ପାରିବ । ସେହି ଶୁଭଦିନଟି ହେବ କାର୍ତ୍ତିକ କୃଷ୍ଣ ଅମାବାସ୍ୟା ।"

ତା' ପରେ ବଳୀ ପାତାଳ ପୁରରେ ଅଧିପତି ହୋଇ ରହିଲେ । ଭକ୍ତ ପ୍ରେମରେ ବାନ୍ଧି ହୋଇ ବାମନ ବିଷ୍ଣୁ ମଧ୍ୟ ବଳୀଙ୍କର ଦ୍ୱାରପାଳ ସାଜି ପାତାଳରେ ରହିଲେ । ବଳୀ ସବୁଦିନେ ବିଷ୍ଣୁଙ୍କ ପାଦ ପୂଜା କରିବାର ସୁଯୋଗ ପାଇଲେ । ପ୍ରତିବର୍ଷ କାର୍ତ୍ତିକ ଅମାବାସ୍ୟା ଦିନ ବଳୀ ମର୍ତ୍ତ୍ୟପୁରକୁ ବୁଲି ଆସନ୍ତି ଓ ବିଶ୍ୱର ମଙ୍ଗଳ ପାଇଁ ଅଦୃଶ୍ୟରେ କାର୍ଯ୍ୟ କରିଯାଆନ୍ତି । ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ବିଶ୍ୱବାସୀ ଦୀପାବଳୀ ଜଳାଇ ଓ ବାଣ ଫୁଟାଇ ତାଙ୍କୁ ସ୍ୱାଗତ କରନ୍ତି ବୋଲି କୁହାଯାଏ । ପୁଣି ତ୍ରିବିକ୍ରମ ବାମନଙ୍କ ଆକାଶରେ ପାଦ ପଡନ ଘଟଣାକୁ ସୂଚଣ କରିବା ନିମନ୍ତେ କାର୍ତ୍ତିକ ମାସ ସାରା ଆକାଶ ଦୀପ ଜଳା-ଯାଇଥାଏ ।

ଏହିପରି ଛଳନାରେ ବାମନ ଅବତାର ବିଷ୍ଣୁ ବଳୀଙ୍କ ଠାରୁ ସ୍ୱର୍ଗ ଓ ମର୍ତ୍ତ୍ୟ ଦାନ ମାଗି ନିଜ ଅଧୀନକୁ ନେଇ ଆସିଲେ । ସେ ସ୍ୱର୍ଗରେ ପୁଣି ଇନ୍ଦ୍ରଙ୍କୁ ସିଂହାସନରେ ବସାଇଲେ ଓ ଦେବରାଜ୍ୟ ପ୍ରତିଷ୍ଠା କଲେ । ମର୍ତ୍ତ୍ୟ ବିଶ୍ୱରେ କେବଳ ମାନବ ମାନଙ୍କ ରାଜ୍ୟ ପ୍ରତିଷ୍ଠା ହେଲା । କ୍ଷତ୍ରିୟ ରାଜାମାନେ ପୃଥିବୀରେ ଶାସନ ଚଳାଇବାକୁ ଲାଗିଲେ ।






ଏକାଙ୍ଗ ଚକ୍ରବର୍ତ୍ତୀ ବଳୀ ପାତାଳକୁ ଯିବାପରେ ପୃଥିବୀରେ ଥିବା କ୍ଷତ୍ରିୟ ରାଜାମାନେ ନିଜକୁ ନିଜେ ବଡ ମନେକଲେ । ଫଳରେ ସେମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖା ଦେଲା । ପରସ୍ପର ସହିତ ସେମାନେ ଯୁଦ୍ଧ କରିବାକୁ ଲାଗିଲେ । ରାଜ୍ୟମାନ ଖଣ୍ଡ ଖଣ୍ଡ ହେଲା ଏବଂ ବହୁ ନୂଆ ରାଜ୍ୟ ଗଢ଼ି ଉଠିଲା । ପ୍ରଜାମାନଙ୍କ ଉପରେ ବହୁତ ଅତ୍ୟାଚାର ହେଲା । ଜୋର ଯାର ମୁଲକ ତା'ର ନୀତିରେ ଦୁର୍ବଳ ମାନଙ୍କ ଉପରେ ସବଳ ମାନେ ଅତ୍ୟାଚାର ଚଳାଇଲେ । ସାଧୁ ସନ୍ଥ ମୁନି ଋଷି ମାନେ ମଧ୍ୟ ଅସାଧୁ ଓ ହିଂସ୍ର ରାଜାମାନଙ୍କ ହାତରୁ ରକ୍ଷା ପାଇଲେ ନାହିଁ । ଶେଷରେ ପୃଥିବୀରେ ପୁଣି ଶାନ୍ତି ସ୍ଥାପନ ପାଇଁ ଭଗବାନ ବିଷ୍ଣୁଙ୍କୁ ଅବତାର ଗ୍ରହଣ କରିବାକୁ ହେଲା । ଏହି ଷଷ୍ଠ ଅବତାରର ନାମ ହେଲା ପର୍ଶୁରାମ ଅବତାର । ଭଗବାନ ପର୍ଶୁରାମ ଅବତାର ଗ୍ରହଣ କରିବା ପୂର୍ବରୁ ଗୋଟାଏ ଅଲୌକିକ ଘଟଣା ଘଟିଥିଲା ତାହାହେଲା—

ଭଗବାନ ବିଷ୍ଣୁ ଏକଦା ଯୋଗନିଦ୍ରାରେ ମଗ୍ନ ଥିଲବେଳେ ତାଙ୍କ ଶ୍ରୀହସ୍ତରେ ଥିବା ଶଙ୍ଖ ଓ ଚକ୍ର ଦୁହିଁଙ୍କ ମଧ୍ୟରେ କଳହ ଲାଗିଗଲା । କଳହର ଏକମାତ୍ର କାରଣ ହେଲା

କିଏ ବଡ଼—ଶଙ୍ଖ ନା ଚକ୍ର ? ଉଭୟେଁ ନିଜ ନିଜର ବଡ଼ପଣ ନେଇ ଯୁକ୍ତିତର୍କ ଆରମ୍ଭ କରି-ଦେଲେ । ଚକ୍ର କହିଲେ—"ଜଗତରେ ଯେତେ ପ୍ରକାର ଅସ୍ତ୍ର ଶସ୍ତ୍ର ଅଛି ସେମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ । ସହସ୍ର ସୂର୍ଯ୍ୟ ଏକାଠି ହେଲେ ଯେଉଁ ତେଜ ଜାତ ହେବ ସେ ତେଜର ସମସ୍ତ ଶକ୍ତି ଦ୍ୱାରା ବିଶ୍ୱକର୍ମା ମୋତେ ତିଆରି କରିଛନ୍ତି । ମୋର ଶକ୍ତି ତୁଳନା କଳ୍ପହେବ ନାହିଁ । ମୋର ଗତି ମଧ୍ୟ ମନର ଗତି ଠାରୁ ଚଞ୍ଚଳ । ମୁଁ ଏତେ ଜୋରରେ ଘୂରିପାରେ ଯେ କ୍ଷଣକ ମଧ୍ୟରେ ଯେତେବଡ଼ ଶତ୍ରୁ ହେଲେ ମଧ୍ୟ ଖଣ୍ଡ ଖଣ୍ଡ କରି ପକାଏ । ଭଗବାନ ବିଷ୍ଣୁ ମୋତେ ଧାରଣ କରିଥିବାରୁ ତାଙ୍କର ଅନ୍ୟନାମ ଚକ୍ରଧାରୀ । ହାତରେ ଧରି ଥିବାରୁ ଚକ୍ରପାଣି । ମୁଁ ଭଗବାନଙ୍କ ମୁଖ୍ୟ ଆୟୁଧ ହୋଇଥିବାରୁ ସେ ଚକ୍ରାୟୁଧ ନାମରେ ନାମିତ । ତାଙ୍କୁ ଚକ୍ରୀ ବୋଲି ମଧ୍ୟ କୁହାଯାଏ । ତୁମେ ସାମାନ୍ୟ ଶଙ୍ଖ । କେବଳ ବାଜିବା ଛଡ଼ା ତୁମଦ୍ୱାରା କିଛି ହୁଏନା । ତୁମେ କ'ଣ ମୋ ସମକକ୍ଷ ହୋଇପାରିବ ?"

ପାଞ୍ଚଜନ୍ୟ ଶଙ୍ଖ ଏଥିରେ ରାଗିଯାଇ କହିଲେ—"ହେ ଚକ୍ର ! ତୁମର ଗର୍ବ ଯୋଗୁଁ ତୁମେ ପୃଥିବୀରେ ଜଣେ ଉଦ୍ଧତ ଓ ଗର୍ବୀ ରାଜା ହୋଇ ଜନ୍ମହୁଅ । ଗର୍ବଗଞ୍ଜନକାରୀ ସ୍ୱୟଂ ନାରାୟଣ ତୁମକୁ ଛେଦନ କରନ୍ତୁ ବୋଲି ମୁଁ ଅଭିଶାପ ଦେଉଛି ।" ସେମାନଙ୍କ ଯୁକ୍ତିତର୍କରେ ଭଗବାନଙ୍କ ନିଦ୍ରା ଭାଙ୍ଗିଗଲା । ସେ ଅଳ୍ପ ହସି କହିଲେ—"ସୁଦର୍ଶନ ମହାଚକ୍ର ! ତୁମକୁ ଶତ୍ରୁ ସଂହାର ପାଇଁ ଶକ୍ତିଶାଳୀ କରାଯାଇଛି ବୋଲି ତୁମେ ଏତେ ଗର୍ବ କରିବା ଅନୁଚିତ । ପାଞ୍ଚଜନ୍ୟ ଶଙ୍ଖ ମୋର ପ୍ରିୟବସ୍ତୁ ମାନଙ୍କ ମଧ୍ୟରୁ ଅନ୍ୟତମ । ସେ ପବିତ୍ର ଏବଂ ତାଙ୍କର ମଧୁର ଧ୍ୱନି ଭକ୍ତମାନଙ୍କ ମନରେ ଆଧ୍ୟାତ୍ମିକ ଭାବ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶତ୍ରୁମାନଙ୍କ ମଧ୍ୟରେ ଭୟସଞ୍ଚାର କରି ଦୁର୍ବଳ କରିଦିଆଏ । ପାଞ୍ଚଜନ୍ୟ ଶଙ୍ଖ ଶବ୍ଦରେ ଶତ୍ରୁ ଦୁର୍ବଳ ହେବାପରେ ତୁମେ ତାଙ୍କୁ ସଂହାର କରିବାରେ ସମର୍ଥ ହୁଅ । ସେ ତୁମର ପରିପୂରକ । ଗର୍ବର ପ୍ରତିଫଳ ସ୍ୱରୂପ ମହାଶଙ୍ଖ ପାଞ୍ଚଜନ୍ୟଙ୍କ ଅଭିଶାପ ତୁମକୁ ଭୋଗ କରିବାକୁ ହେବ । ତୁମେ ଯାଇ ରାଜା ସହସ୍ରାର୍ଜ୍ଜୁନ ବା କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ନାମରେ ପୃଥିବୀରେ ଜନ୍ମହୁଅ । କ୍ଷତ୍ରିୟ ରାଜାମାନେ ବର୍ତ୍ତମାନ ଅନ୍ୟାୟରେ ମାତିଛନ୍ତି । ସେମାନଙ୍କ ଭଳି ତୁମେ ଅନ୍ୟାୟର ଚରମସୀମାରେ ପହଞ୍ଚିବା ପରେ ମୁଁ ପରଶୁରାମ ଅବତାର ଧାରଣ କରି ପ୍ରଥମେ ତୁମକୁ ଓ ପରେ ଅନ୍ୟ ଅତ୍ୟାଚାରୀ ରାଜାମାନଙ୍କୁ ନିପାତ କରିବି । ଥରେ ନୁହେଁ ଦୁଇଥର ନୁହେଁ ଏକୋଇଶ ଥର ସମସ୍ତ ପୃଥିବୀକୁ ନିକ୍ଷତ୍ରିୟ କରି ପୃଥିବୀରେ ଶାନ୍ତି ସ୍ଥାପନ କରିବି ।"

ଚକ୍ର ଅଭିଶାପ ପାଇ ପୃଥିବୀର କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ରୂପେ ଜନ୍ମଗ୍ରହଣ କଲେ । ସେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଏକ ରୂପ ଶ୍ରୀ ଦତ୍ତ ବା ଦତ୍ତାତ୍ରେୟଙ୍କ ଭକ୍ତ ଥିଲେ ଏବଂ ତାଙ୍କ ଦୟାରୁ ଅଣିମା, ଲଘିମା ଆଦି ସିଦ୍ଧି ଲାଭ କରିଥିଲେ ଓ ଶକ୍ତିଶାଳୀ ଅସ୍ତ୍ର ଯୋଦ୍ଧା ଥିଲେ । ଇଚ୍ଛା ମାତ୍ରେ ତାଙ୍କର ସହସ୍ର ବାହୁ ହୋଇ ଯାଉଥିଲା । ଏବଂ ଏକ ସଙ୍ଗରେ ସହସ୍ର ପ୍ରକାର ଅସ୍ତ୍ର ଶସ୍ତ୍ର ଧରି ଯୁଦ୍ଧ କରୁଥିଲେ ।

ସେ ସମୟରେ ମୁନି ଋଷୀମାନଙ୍କ ମଧ୍ୟରେ ମହର୍ଷି ଯମଦଗ୍ନି ଥିଲେ ଅନ୍ୟତମ । ତାଙ୍କର ପତ୍ନୀଙ୍କର ନାମ ଥିଲା ରେଣୁକାଦେବୀ । ଯମଦଗ୍ନିଙ୍କ ପୂର୍ବରୁ ତିନିପୁଅ ଜନ୍ମହୋଇ ସାରିଥାନ୍ତି । ସେମାନେ ହେଲେ ହଳରାମ, ରଘୁରାମ ଓ ନୀଳରାମ । ଭଗବାନ ବିଷ୍ଣୁ ଯମଦଗ୍ନିଙ୍କ ଚତୁର୍ଥ ପୁତ୍ରରୂପେ ଜନ୍ମହେଲେ । ତାଙ୍କର ନାମ ଥିଲା ପ୍ରଥମେ ଭୃଗୁରାମ । ମାତ୍ର ବାଲ୍ୟକାଳରୁ ସେ ଗୋଟିଏ ପର୍ଶୁ ଧରି କାଠ କାଟିବା, ଗଛକାଟି ରାସ୍ତା ନିର୍ମାଣ କରିବା ଇତ୍ୟାଦି କାମ କରିବାରୁ କ୍ରମେ ତାଙ୍କୁ ପର୍ଶୁରାମ ବୋଲି ନାମିତ କରାଗଲା । ଅନ୍ୟ ଭାଇମାନଙ୍କ ଠାରୁ ପର୍ଶୁରାମ ଥିଲେ ବର୍ଣ୍ଣରେ ମେଘଭଳି କଳା; କିନ୍ତୁ ବ୍ରହ୍ମା ତେଜରେ ତାଙ୍କର ଶରୀର ଝଟକୁଥିଲା । ପର୍ଶୁରାମଙ୍କ ହାତ ଓ ପାଦରେ ଥିଲା ଜନ୍ମରୁ ଶଙ୍ଖ-ଚକ୍ର ଚିହ୍ନ । ସେ ନିଜ ପିତା ଯମଦଗ୍ନିଙ୍କୁ ଖୁବ୍ ଭକ୍ତି କରୁଥିଲେ ।

ପର୍ଶୁରାମ ଥିଲେ ପରମ ଶିବଭକ୍ତ । ସେ ଭଗବାନ ଶିବଙ୍କୁ ପୂଜାକରି ତପସ୍ୟା ବଳରେ ତାଙ୍କୁ ସନ୍ତୁଷ୍ଟ କରି ପାରିଥିଲେ । ଶିବଙ୍କ କୃପାବଳରେ ସେ ସକଳ ବିଦ୍ୟାରେ ପାରଙ୍ଗମ ଥିଲେ । ବହୁ ଅସ୍ତ୍ର ଶସ୍ତ୍ର ଲାଭ କରିଥିଲେ । ସେ ଜାତିରେ ଥିଲେ ନିଷ୍ଠାପର ବ୍ରାହ୍ମଣ; କିନ୍ତୁ କ୍ଷତ୍ରୀୟମାନଙ୍କ ଭଳି ଥିଲେ ଜଣେ ହୃଷ୍ଟପୁଷ୍ଟ ଯୋଦ୍ଧା ଓ ବୀର । ତାଙ୍କ ସମୟରେ ତାଙ୍କଭଳି ବୀର ଏ ପୃଥିବୀରେ କେହି ନଥିଲେ ।

ମହର୍ଷି ଯମଦଗ୍ନି ନିଜ ପତ୍ନୀ ଓ ଚାରିପୁତ୍ରଙ୍କୁ ନେଇ ନିଜ ଆଶ୍ରମରେ ସୁଖରେ ବାସ କରୁଥାନ୍ତି । କାମଧେନୁଙ୍କ ଅଂଶରେ ଜାତ ହୋମଧେନୁ ନନ୍ଦା ଆଶ୍ରମରେ ଯମଦଗ୍ନିଙ୍କ ସେବା ପାଇଁ ରହିଥାନ୍ତି । ନନ୍ଦାଙ୍କର ଅଦ୍ଭୁତ ଶକ୍ତି ଥିଲା । କେବଳ ଅମୃତ ଭଳି କ୍ଷୀର ଯେ ସେ ଦେଉଥିଲେ ତା'ନୁହେଁ ପ୍ରାର୍ଥନା କଲା ମାତ୍ରେ ଜଗତରେ ଦୁର୍ଲଭ ଖାଦ୍ୟ ସାମଗ୍ରୀ ତଥା ଅନ୍ୟାନ୍ୟ ଦ୍ରବ୍ୟ ତାଙ୍କ କୃପାରୁ ମିଳି ପାରୁଥିଲା । ଋଷି ଓ ଋଷିପୁତ୍ରମାନେ ଦେବୀ ନନ୍ଦାଙ୍କୁ ଆଦର ସହକାରେ ଲାଳନ ପାଳନ କରୁଥିଲେ ।

ଥରେ ଯମଦଗ୍ନି ଆଶ୍ରମରେ ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବା ପାଇଁ ପ୍ରାରମ୍ଭିକ ପ୍ରସ୍ତୁତିରେ ଲାଗିଥାନ୍ତି । ସକାଳୁ ଦେବୀ ରେଣୁକା ନଦୀରୁ ପବିତ୍ର ଜଳ ଆଣିବା ପାଇଁ ମାଠିଆ ନେଇ ଯାଇଥାନ୍ତି । ମାତ୍ର ନଦୀକୂଳରେ ପହଞ୍ଚି ସେ ଦେଖିଲେ ଯେ ଚିତ୍ରରଥ ନାମକ ଜଣେ ଗନ୍ଧର୍ବ ନିଜର ପତ୍ନୀ ଓ ଦାସ ଦାସୀ ମାନଙ୍କ ସହ ଆକାଶ ପଥରୁ ଓହ୍ଲାଇ ସେହି ନଦୀରେ ଜଳକ୍ରୀଡ଼ା ଆରମ୍ଭ କରିଦେଲେ । ସେମାନଙ୍କ ରଙ୍ଗ ବେରଙ୍ଗର ମୂଲ୍ୟବାନ ଲୁଗା-ପଟା ଅଳଙ୍କାର ପତ୍ର ଦେଖି ରେଣୁକାଙ୍କ ଆଖି ଝଲସି ଉଠିଲା । ଗନ୍ଧର୍ବ ପରିବାରର ହସ ଖୁସି ଓ ପାଣି ଭିତରେ ଖେଳ କୌତୁକ ଦୃଶ୍ୟରେ ରେଣୁକା ମୁଗ୍ଧ ହୋଇ ସେ ଆଡ଼କୁ ଚାହିଁ ରହିଲେ । ଆଶ୍ରମରେ ତାଙ୍କ ସ୍ୱାମୀ ଯେ ତାଙ୍କ ଫେରିବା ପଥକୁ ଚାହିଁ ବସିଛନ୍ତି ଏକଥା ପ୍ରାୟ ସେ ଭୁଲିଯାଇଥାନ୍ତି । ଏଣେ ଯମଦଗ୍ନିଙ୍କ ପ୍ରସ୍ତୁତ ଶେଷ ହୋଇଗଲା । ଜଳ ଆସିଲେ ତର୍ପଣ କରିବା କଥା ରେଣୁକାଙ୍କ ଆସିବାରେ ଯେତିକି ବିଳମ୍ବ ହେଉଥାଏ ମହର୍ଷି ଯମ-ଦଗ୍ନିଙ୍କ କ୍ରୋଧ ସେତିକି ବଢ଼ୁଥାଏ । ସେ ଏହାର କାରଣ ଜାଣିବା ପାଇଁ ସଙ୍ଗେ ସଙ୍ଗେ ଧ୍ୟାନରେ ବସିଗଲେ ଏବଂ ନିଜର ତପସ୍ୟା ଶକ୍ତି ବଳରେ ଘଟଣାଟା ଜାଣିଗଲେ ରେଣୁକା

ବୋଲି ସେ ଏତେ ଯୋରରେ ଚିତ୍କାର କଲେ ଯେ ନଦୀକୂଳରେ ମୂର୍ଚ୍ଛାହୋଇ ଠିଆ ହୋଇଥିବା ରେଣୁକାଙ୍କୁ ତାହା ଶୁଣାଗଲା ଓ ସେ ସ୍ତବ୍ଧ ହୋଇଗଲେ । ସଙ୍ଗେ ସଙ୍ଗେ ସେ ନିଜର କର୍ତ୍ତବ୍ୟ ସମ୍ପର୍କରେ ସଚେତନ ହୋଇଗଲେ ଏବଂ ଜଳପୂର୍ଣ୍ଣ ମାଠିଆ ଧରି ଅତି ବେଗରେ ଆସି ଆଶ୍ରମରେ ପହଞ୍ଚିଲେ । ତାଙ୍କୁ ଦେଖି ଯମଦଗ୍ନି ବହୁତ ଭର୍ତ୍ସନା କଲେ । ନିଜର ଭୁଲ୍ ପାଇଁ ରେଣୁକା ସ୍ୱାମୀଙ୍କ ପାଦତଳେ ପଡ଼ି ବାରମ୍ବାର କ୍ଷମା ପ୍ରାର୍ଥନା କଲେ ମାତ୍ର ଉଗ୍ରମୂର୍ତ୍ତି ଯମଦଗ୍ନିଙ୍କ କ୍ରୋଧ ଶାନ୍ତ ହେଲନାହିଁ । ସେ ରେଣୁକାଙ୍କ ଭୁଲ୍‌ର ଶାସ୍ତି ପାଇଁ ମୃତ୍ୟୁଦଣ୍ଡ ଦେବା ପାଇଁ ସିଦ୍ଧାନ୍ତ ନେଲେ । ନିଜର ବଡ଼ ପୁଅ ହଲରାମଙ୍କୁ ଡାକି ଆଦେଶ ଦେଲେ—"ହଲରାମ ! ତୁମେ ମୋର ଜ୍ୟେଷ୍ଠ ପୁତ୍ର । ନିଜ ମା'ଙ୍କର ମୁଣ୍ଡ କାଟି-ଦେଇ ପିତୃ ଆଦେଶ ପାଳନ କର ।

କିନ୍ତୁ ସ୍ନେହମୟୀ ଜନନୀଙ୍କର ମୁଣ୍ଡଟାକୁ ହାଣି ଦେବାପାଇଁ ହଲରାମଙ୍କର ହାତ ବା ଯିବ କିପରି ? ସେ ପିତାଙ୍କୁ ପ୍ରାର୍ଥନା କରି କହିଲେ—"ହେ ପିତା ! ଏଭଳି କଠୋର ଆଦେଶ ପ୍ରତ୍ୟାହାର କରନ୍ତୁ । ପୁଅ ହୋଇ ମା'ର ମସ୍ତକଟାକୁ ହାଣିବି କିପରି ? ବରଂ ତା ପୂର୍ବରୁ ଆପଣ ମୋତେ ହାଣି ଦିଅନ୍ତୁ । ପିତୃ ଆଜ୍ଞା ପାଳନ ପାଇଁ ଅସମର୍ଥ ପୁତ୍ରର ବଞ୍ଚିବାର ଅଧିକାର ନାହିଁ ।"

"ଧିକ୍, କାପୁରୁଷ ଅଯୋଗ୍ୟ" ଗର୍ଜି ଉଠିଲେ ଯମଦଗ୍ନି । "ତୁ ମୋର ଜ୍ୟେଷ୍ଠ ପୁତ୍ର ହେବା ଯୋଗ୍ୟତା ତୋଠି ନାହିଁ । ମୁଁ ତୋତେ ଅଭିଶାପ ଦେଉଛି, ତୁ ଏ ଆଶ୍ରମରେ ଜଡ଼ ହୋଇ ପଡ଼ି ରହ ।" କମଣ୍ଡଳୁରୁ ଜଳ ନେଇ ମନ୍ତ୍ର ପଢ଼ି ଯମଦଗ୍ନି ହଲରାମ ଉପରକୁ ପକାଇ ଦେଲେ । ହଲରାମ ସଙ୍ଗେ ସଙ୍ଗେ ପଥର ହୋଇ ପଡ଼ିରହିଲେ । ମାଆ ରେଣୁକା ବିକଳରେ ପୁଅ ପାଖକୁ ଦୌଡ଼ିଗଲେ ଓ ତା'ର ଅବସ୍ଥା ଦେଖି ମୁଣ୍ଡ କୋଡ଼ି ହୋଇ କାନ୍ଦିବାକୁ ଲାଗିଲେ ।

ଯମଦଗ୍ନି ଏଥର ଦ୍ୱିତୀୟ ପୁତ୍ର ରଘୁରାମ ଓ ତୃତୀୟ ପୁତ୍ର ନୀଳରାମଙ୍କୁ ଡାକି ନିଜର କଠୋର ଆଦେଶ ପାଳନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ମାତ୍ର ସେ ଦୁଇପୁଅ ମଧ୍ୟ ନିଜ ମାତାଙ୍କୁ ହତ୍ୟା କରିବା ପାଇଁ ରାଜି ହେଲେନାହିଁ । ଯମଦଗ୍ନିଙ୍କର କ୍ରୋଧ ଖୁବ୍ ବଢ଼ି-ଗଲା ଭର୍ତ୍ସନା କରି କହିଲେ—ରେ କୁଳାଙ୍ଗାର ପୁତ୍ରମାନେ । ତୁମ ଭଳି ଅବାଧ୍ୟ ପୁତ୍ରର ପିତା ହେବା ମୋର ପରମ ଦୁର୍ଭାଗ୍ୟ । ତୁମ ଭଳି ପୁତ୍ର ଥିଲେ ଯାହା ନଥିଲେ ତାହା । ତୁମେ ମଧ୍ୟ ତୁମ ବଡ଼ ଭାଇ ଭଳି ପଥର ହୋଇଯାଅ ।"

ମନ୍ତ୍ର ପାଣି ପ୍ରୟୋଗରେ ରଘୁରାମ ଓ ନୀଳରାମ ମଧ୍ୟ ପଥର ହୋଇ ନିଶ୍ଚଳ ହୋଇ-ଗଲେ । ରେଣୁକା ଏ ସବୁ ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲେ । ସ୍ୱାମୀଙ୍କ ପାଦ ଧରି ପୁତ୍ର-ମାନଙ୍କୁ କ୍ଷମା ଦେବାପାଇଁ ନେହୁରା ହେଲେ । ନିଜ ଚକ୍ଷୁର ଲୁହ ଝରାଇ ଯମଦଗ୍ନିଙ୍କ ପାଦ

ଓଡା ବନ୍ଧ ପଡ଼ାଇଲେ । ତାଙ୍କର ବଡଲ  କନ୍ଦନ  ଯମଦଗ୍ନିଙ୍କ ରାଗକୁ ଶତଗୁଣ ବଢ଼ାଇ ଦେଲା । ସେ ଓଠରେ ଓଠ ଚାପି ଥର ଥର ହେବାକୁ ଲାଗିଲେ । ତାଙ୍କର  ଚକ୍ଷୁ ଦୁଆଁ  ଲାଲ ରକ୍ତବର୍ଣ୍ଣ  ଧାରଣ କଲା ।

ଠିକ୍ ସେହି  ସମୟରେ  ହୋମ ପାଇଁ ଖଇର କାଠ ସଂଗ୍ରହ କରିବାକୁ  ଯାଇଥିବା କନିଷ୍ଠ ପୁତ୍ର ପର୍ଶୁରାମ ଆଶ୍ରମରେ  ପହଞ୍ଚିଲେ । ତାଙ୍କୁ  ଦେଖୁ ଦେଖୁ ଯମଦଗ୍ନି ଚିତ୍କାର  କରି "ଉଠିଲେ—ପର୍ଶୁରାମ, ତୁମେ  ଯଦି  ବାସ୍ତବରେ  ମୋର ସନ୍ତାନ  ହୋଇଥିବ  ତେବେ କୌଣସି  କାରଣ ନ ପଚାରି  ପ୍ରଥମେ  ତୁମର  ଏହି  କଳଙ୍କିନୀ  ମାତାର  ଶିର ଛେଦନ କର ।"

ପିତୃଭକ୍ତ ପର୍ଶୁରାମ ପିତାଙ୍କ ଆଦେଶ ପାଇବା ସଙ୍ଗେ ସଙ୍ଗେ କାଠ ବୋଝକୁ ତଳେ ପକାଇ ଦେଲେ । ନିଜ କାନ୍ଧରେ ଶୋଭା ପାଉଥିବା ପର୍ଶୁ ଦ୍ୱାରା ମା'  ରେଣୁକାଙ୍କ ମୁଣ୍ଡଟା ହାଣି ଉଡ଼ାଇ ଦେଲେ । ଚିତ୍କାର କରି ରେଣୁକା ତଳେ ପଡ଼ିଲେ । ଚାରିଆଡ଼େ ରକ୍ତର ବନ୍ୟା ରକ୍ତରଂଜିତ  ପର୍ଶୁକୁ  କାନ୍ଧରେ  ପକାଇ  ପର୍ଶୁରାମ  ପିତାଙ୍କ  ପାଦତଳେ  ପ୍ରଣାମ ଜଣାଇଲେ ।

ପର୍ଶୁରାମଙ୍କ ଅପୂର୍ବ ପିତୃଭକ୍ତି ଦେଖି ଯମଦଗ୍ନିଙ୍କ ସମସ୍ତ କ୍ରୋଧ  କ୍ଷଣକରେ ଶାନ୍ତ ହୋଇଗଲା । ସେ ପର୍ଶୁରାମଙ୍କୁ କୋଳରେ ଟାଣି ଧରି କହିଲେ—'ପ୍ରିୟ  ପୁତ୍ର ପର୍ଶୁରାମ, ତୁମେ ହିଁ  ମୋର  ଏକମାତ୍ର  ସୁଯୋଗ୍ୟ  ପୁତ୍ର ।  ତୁମର  ଅଲୌକିକ  ପିତୃଭକ୍ତିରେ ମୁଁ  ପରମ ସନ୍ତୋଷ  ଲାଭ  କରିଅଛି । ତୁମେ କ'ଣ  ବର ମାଗୁଛ  ମାଗ ମୁଁ  ତୁମକୁ ତାହା  ପିତୃଭକ୍ତିର ପୁରସ୍କାର ସ୍ୱରୂପ ପ୍ରଦାନ କରିବି ।"

ପର୍ଶୁରାମ ପିତାଙ୍କ  ପାଦତଳେ ପଡ଼ି  କହିଲେ—"ହେ ପିତା ! ଆପଣ  ଯଦି  ଏ ଅଧମ ସନ୍ତାନ ଉପରେ ସନ୍ତୁଷ୍ଟ ହୋଇ ବର ଦେବାକୁ ଚାହୁଁଛନ୍ତି  ତେବେ ମୁଁ ବର ପ୍ରାର୍ଥନା କରୁଛି ମୋର ସ୍ନେହମୟୀ ଜନନୀ ନିଜର  ଜୀବନ ଫେରି ପାଆନ୍ତୁ  ଏବଂ  ଜଡ଼ପାଲଟି ପଡ଼ି ରହିଥିବା ମୋ ଭାଇମାନେ ନିଜ ଦେହ ଫେରି ପାଆନ୍ତୁ । ପୂର୍ବଭଳି  ଜନନୀ  ମୋତେ ସ୍ନେହ କରନ୍ତୁ ।"

ଯମଦଗ୍ନି  ପୁତ୍ରର  ଏହିଭଳି  ବର ପ୍ରାର୍ଥନାରେ  ପରମ  ସନ୍ତୋଷ  ଲାଭକଲେ ଏବଂ ନିଜର  ମନ୍ତ୍ରପୂତ କମଣ୍ଡଳୁ ଜଳ ଛିଞ୍ଚି ପତ୍ନୀ ଓ ପୁତ୍ର ମାନଙ୍କୁ ବଞ୍ଚାଇ ଦେଲେ  ପର୍ଶୁରାମ ମାଆଙ୍କ ପାଦତଳେ ପଡ଼ି ବାରମ୍ବାର କ୍ଷମା ଭିକ୍ଷା କଲେ । ସେ କହିଲେ—"ହେ ମା'  ତୁମ ଗର୍ଭରୁ ଜନ୍ମ ହୋଇ ମୁଁ ତୁମକୁ ହତ୍ୟା କରିଥିଲି କେବଳ  ପିତାଙ୍କ ଆଦେଶ  ପାଳନ ପାଇଁ । ଏ  ଅଯୋଗ୍ୟ  ସନ୍ତାନକୁ  ତୁମେ  କ୍ଷମା  ଦିଅ । ମାତୃସ୍ନେହରୁ  ଏ ମାତୃଦ୍ରୋହୀକୁ  ବଂଚିତ କରନା ।"

ରେଣୁକା ପର୍ଶୁରାମଙ୍କୁ କୁଣ୍ଢାଇ ପକାଇ କହିଲେ "ପୁତ୍ର ! ତୁମର କର୍ତ୍ତବ୍ୟ ନିଷ୍ଠାର ତୁଳନା ନାହିଁ । ପିତା ସ୍ୱର୍ଗଠାରୁ ବଳି ବଡ଼ । ସେ ଆମ ସମସ୍ତଙ୍କର ଆଶ୍ରୟ । ତାଙ୍କର ଆଦେଶ ପାଳନ କରିବା ଠାରୁ ବଳି ମହତକାର୍ଯ୍ୟ ଆଉ ନାହିଁ । ତୁମେ ସାହସର ସହିତ ପିତାଙ୍କ ଆଦେଶ ପାଳନ ଯେ କରିଛ ତା ନୁହେଁ ତା ସଙ୍ଗେ ସଙ୍ଗେ ମୋତେ ଓ ତୁମର ଭାଇମାନଙ୍କୁ ପୁନର୍ଜୀବନ ଦାନ କରାଇ ଅପୂର୍ବ ପିତୃଭକ୍ତି ସାଙ୍ଗକୁ ଅତୁଳନୀୟ ମାତୃଭକ୍ତି ଓ ଭ୍ରାତୃଭକ୍ତିର ପ୍ରମାଣ ମଧ୍ୟ ଦେଇଛ । ଏଥିରେ ତୁମର କିଛି ଦୋଷ ନାହିଁ କେଣୁ ମୁଁ କି କ୍ଷମା ବା ତୁମକୁ ଦେବି ? ତୁମର ଏ ପିତୃ, ମାତୃ ଓ ଭ୍ରାତୃ ଭକ୍ତି ଯୁଗ ଯୁଗ ପର୍ଯ୍ୟନ୍ତ ଏ ଧରାପୃଷ୍ଠରେ ଆଦର୍ଶ ହୋଇ ରହିବ ।

ଭାଇମାନେ ମଧ୍ୟ ପର୍ଶୁରାମଙ୍କୁ କୁଣ୍ଢାଇ ପକାଇଲେ । ଯମଦଗ୍ନିଙ୍କ ପ୍ରଶାନ୍ତ ମୂର୍ତ୍ତିରେ ଏ ଦୃଶ୍ୟ ହସ ଫୁଟାଇ ପାରିଲା । ଆଶ୍ରମରେ ପୁଣିଥରେ ଶାନ୍ତ ସୁନ୍ଦର ବାତାବରଣ ଖେଳିଗଲା । ମାତ୍ର ଏ ସବୁ ଆନନ୍ଦମୟ ପରିବେଶରେ ହଠାତ୍ ପର୍ଶୁରାମଙ୍କ ମନରେ ଘୋର ଦୁଃଖ ଜାତ ହେଲା । ସେ ଅନୁଭବ କଲେ ତାଙ୍କ ହାତରେ ଲାଗିଥିବା ପର୍ଶୁଟି ଆଉ ଉଠୁନାହିଁ । ବହୁ ଚେଷ୍ଟା କଲେ ମଧ୍ୟ ତାହା ହାତରେ ଲାଗିରହିଛି । ସମସ୍ତେ ଏଥିରେ ଆଶ୍ଚର୍ଯ୍ୟ ହେଲେ । ଯମଦଗ୍ନି କହିଲେ—"ବତ୍ସ ପର୍ଶୁରାମ ! ତୁମେ ପିତୃ ଆଜ୍ଞା ପାଳନ କରିଛ ସତ ମାତ୍ର ମାତୃହତ୍ୟାଠାରୁ ବଳି ପାପ ଏ ସଂସାରରେ ଆଉ କିଛି ନାହିଁ । ସେ ପାପ ତୁମକୁ ସ୍ପର୍ଶ କରିବାରୁ ମନ୍ତ୍ରପୂତ ଏହି ପର୍ଶୁ ତୁମ ଦେହ ତ୍ୟାଗ କରୁନାହିଁ ।"

ପର୍ଶୁରାମ କହିଲେ—"ଯଥାର୍ଥ କହିଛ ପିତା ମୁଁ ମାତୃହନ୍ତା । ମହାପାପୀ ଏ ପାପ ପାଇଁ ମୋତେ କଠୋର ଶାସ୍ତି ମିଳିବା ଦରକାର । ଧର୍ମ ମୋ ପ୍ରତି ଉଚିତ ଦଣ୍ଡ ବିଧାନ କରନ୍ତୁ । ଏ ପାପ ଖଣ୍ଡନ ପାଇଁ ଯାହା କିଛି ପ୍ରାୟଶ୍ଚିତ୍ତ କରିବା ଦରକାର ମୁଁ ତାହା କରିବା ନିମନ୍ତେ ପ୍ରସ୍ତୁତ । ଉପାୟ ବତାଇ ଦେଇ କୃତାର୍ଥ କରନ୍ତୁ ।"

ଯମଦଗ୍ନି କହିଲେ—"ପୁତ୍ର ! ତୁମେ ବର୍ତ୍ତମାନ ଠାରୁ ତୀର୍ଥାଟନରେ ବାହାରି ଯାଅ । ଆକୁମାରୀ ହିମାଚଳ ପବିତ୍ର ଜମ୍ବୁଦ୍ୱୀପ ଭାରତବର୍ଷର ସମସ୍ତ ତୀର୍ଥସ୍ଥାନ ଭ୍ରମଣ କରି ଦେବ ଦେବୀଙ୍କ ଦର୍ଶନ କରି ଏବଂ ପବିତ୍ର ନଦ, ନଦୀରେ ବୁଡ଼ ପକାଇ, ସ୍ନାନ, ଦାନ, ଧ୍ୟାନ, ଜପ ତପ ଅନଶନ ଦ୍ୱାରା ଶରୀରକୁ ପବିତ୍ର କରିବାକୁ ହେବ । ତା ହେଲେ ତୁମେ ମାତୃହତ୍ୟା ପାପରୁ ଅତିଶୀଘ୍ର ମୁକ୍ତ ହୋଇପାରିବ ।"

ପର୍ଶୁରାମ ପିତାମାତା ଓ ଭାଇ ମାନଙ୍କ ଠାରୁ ବିଦାୟ ନେଇ ସେହି ମୁହୂର୍ତ୍ତରୁ ତୀର୍ଥାଟନରେ ବାହାରି ପଡ଼ିଲେ । ପାଦରେ ଚାଲି ଚାଲି ଦିନ ନାହିଁ ରାତି ନାହିଁ, ଖରା ନାହିଁ, ବର୍ଷା ନାହିଁ, ଶୀତ ନାହିଁ, ଝଡ଼ ବତାସ ନାହିଁ କେଉଁଥିକୁ ଖାତିର ନକରି ବୀର ପର୍ଶୁରାମ ସାରା ଜମ୍ବୁଦ୍ୱୀପ ପରିକ୍ରମା କଲେ । ଦେବ ଦେବୀ ଦର୍ଶନ ସାଙ୍ଗକୁ ପବିତ୍ର ନଦୀ, ପୁଷ୍କରିଣୀ, ହ୍ରଦ, ଝରଣାରେ ସ୍ନାନ କରିବା, ଅନଶନ କରିବା ଧ୍ୟାନ କରିବା ଇତ୍ୟାଦି କଷ୍ଟର ସହ ସେ କରିଚାଲିଥାନ୍ତି ।

ବର୍ଷ ପରେ ବର୍ଷ ଅତୀତ ହେଉଥାଏ କିନ୍ତୁ ତାଙ୍କ କାନ୍ଧରୁ ପର୍ଶୁ ଖସୁନଥାଏ । ଦୁଃଖରେ ତାଙ୍କର ମନ ଭାଙ୍ଗି ପଡୁଥାଏ । ଶେଷରେ ପର୍ଶୁରାମ ହିମାଳୟରେ ପହଞ୍ଚିଲେ । ତୀର୍ଥାଟନର ଶେଷ ପର୍ଯ୍ୟାୟ । ଆଉ ତୀର୍ଥସ୍ଥାନ ନାହିଁ । ଏଠାରେ ଯଦି ସେ ମାତୃହତ୍ୟା ପାପରୁ ମୁକ୍ତ ନହୁଅନ୍ତି କି ଉପାୟ ବା କରିବେ ? ମନେ ମନେ ସେ ଶିବ ନାରାୟଣ ଆଉ ଦୁର୍ଗାଙ୍କୁ ଏ ସଙ୍କଟରୁ ଉଦ୍ଧାର ପାଇଁ ସ୍ମରଣ କରୁଥାନ୍ତି । ଚିନ୍ତିତ ମନରେ ଠିଆ ହୋଇଥିବା ସମୟରେ ହଠାତ୍ ତାଙ୍କର ଦେଖାହେଲା ଜଣେ ବ୍ରାହ୍ମଣଙ୍କ ସହିତ । ପର୍ଶୁରାମ ବ୍ରାହ୍ମଣଙ୍କୁ ଭକ୍ତିପୂର୍ଣ୍ଣ ନମସ୍କାର ଜଣାଇଲେ । ବ୍ରାହ୍ମଣ ମହାଶୟ ପର୍ଶୁରାମଙ୍କୁ ଆଶୀର୍ବାଦ ଜଣାଇଲେ ମାତ୍ର ଚିହ୍ନି ନପାରି ପଚାରିଲେ—"ତୁମେ କିଏ ବତ୍ସ ? ଦେଖିବାକୁ ଋଷିପୁତ୍ର ଭଳି ଦେଖାଯାଉଛ ମାତ୍ର କାନ୍ଧରେ ପର୍ଶୁରାମ ଭଳି ପର୍ଶୁ କୁଠାର ଧାରଣ କରିଛ । ମୁହଁଟା ତୁମର ଚିନ୍ତାରେ ବୁଡ଼ିଥିବା ଭଳି ମନେ ହେଉଛି କଥା କ'ଣ ?"

ପର୍ଶୁରାମ କହିଲେ—"ହେ ବ୍ରାହ୍ମଣ ମହାଶୟ ! ଆପଣ କ'ଣ ପର୍ଶୁରାମଙ୍କୁ ଚିହ୍ନନ୍ତି ?"

ବ୍ରାହ୍ମଣ କହିଲେ—"ତୁମେ ସେହି ମହାପାପୀ ମାତୃହନ୍ତା ପର୍ଶୁରାମ କଥା ପଚାରୁଛ ? ତାଙ୍କୁ କିଏ ନ ଚିହ୍ନନ୍ତି କହିଲ ? ପିତୃଭକ୍ତ ସାଜି ମାତୃହତ୍ୟା କରିଦେଇ ସେ ଜଘନ୍ୟ ପାପ କରିଛନ୍ତି । ପାପ ମୋଚନ ପାଇଁ ସେ କୁଆଡ଼େ ଏବେ ତୀର୍ଥାଟନ କରୁଛନ୍ତି । ମାତ୍ର ଆମର ଏ ସାମ୍ରାଜ୍ୟକୁ ନ ଆସିଲା ପର୍ଯ୍ୟନ୍ତ ତାଙ୍କର ପାପ ମୋଚନ ହୋଇ ପାରିବ ନାହିଁ ।"

ପର୍ଶୁରାମ ଆନନ୍ଦିତ ହେଲେ । ସେ ଉଦ୍‌ବେଗରେ ପଚାରିଲେ—"ହେ ଗୋସାଇଁ ! ଆପଣ କିଏ ? ଆପଣଙ୍କର ପରିଚୟ କ'ଣ ? ଆପଣ ମୋତେ ଅନ୍ଧକାରରେ ଆଲୋକର ସଙ୍କେତ ଦେଇଛନ୍ତି । ମୁଁ ମୁଁ...ସେହି ମାତୃହନ୍ତା ପର୍ଶୁରାମ । ମହାପାପ ଅର୍ଜନ କରିଥିବାରୁ ଏହି ପର୍ଶୁ କୁଠାର ମୋ କାନ୍ଧରୁ ନ ଉଠି ଲାଗି ରହିଛି । ସମଗ୍ର ଜମ୍ବୁଦ୍ୱୀପ ତୀର୍ଥାଟନ କରିସାରିବା ପରେ ଶେଷରେ ଏ କୋଶଳ ସାମ୍ରାଜ୍ୟରେ ପ୍ରବେଶ କରିଛି । କୁହନ୍ତୁ ବିପ୍ରଶ୍ରେଷ୍ଠ ! ଏଠାରେ ଏପରି କୌଣସି ଶ୍ରେଷ୍ଠ ତୀର୍ଥ ଅଛି ଯାହା ମୋର ପାପ ଦୂର କରି ପାରିବ ?"

ପର୍ଶୁରାମଙ୍କ ପରିଚୟ ପାଇ ବ୍ରାହ୍ମଣ ମହାଶୟ ଭୟରେ ଥରିବାକୁ ଲାଗିଲେ । ସେ ଡ଼ରି ଡ଼ରି କହିଲେ—"ଆପଣ ସ୍ୱୟଂ ପର୍ଶୁରାମ । ପିତୃ ସତ୍ୟ ସନ୍ଧ ପର୍ଶୁରାମ । ମହାବୀର ଶିବଭକ୍ତ ପର୍ଶୁରାମ ; ମୋତେ କ୍ଷମାକର ପର୍ଶୁରାମ ମୁଁ ଜଣେ ଗରିବ ବ୍ରାହ୍ମଣ । ଏ କୋଶଳ ମୂଲକରେ ମୋର ଘର, ମୋ ନାମହେଲା ବିଷ୍ଣୁ ସଖା । ମୁଁ ଆପଣଙ୍କୁ ଚିହ୍ନି ନପାରି ଯେଉଁ କଟୂମନ୍ତବ୍ୟ ଦେଇଛି ମୋତେ କ୍ଷମା କରନ୍ତୁ ।"

ମାତ୍ର ପର୍ଶୁରାମ କୋମଳ କଣ୍ଠରେ କହିଲେ—"ନା ନା...ଆପଣ ମୋଠାରୁ ବୟସରେ ଖୁବ୍ ବଡ଼ । ବଡ଼ମାନେ ଛୋଟମାନଙ୍କୁ ଶାସନ କରିବା ଉଚିତ । ଆପଣ

ଅଯଥା ମୋତେ କ୍ଷମା ମାଗି ଲଜ୍ଜିତ କରାଉଛନ୍ତି କାହିଁକି ? ବରଂ ମୋତେ ମୋର ପାପ ମୋଚନ ଉପାୟ ବତାଇ ଦେଇ କୃତାର୍ଥ କରନ୍ତୁ ।"

ବ୍ରାହ୍ମଣ ବିଷ୍ଣୁସଖା ପରଶୁରାମଙ୍କ କୋମଳ କଥାରେ ସନ୍ତୁଷ୍ଟ ହୋଇ କହିଲେ— "ବୀରଶ୍ରେଷ୍ଠ ପରଶୁରାମ ବର୍ତ୍ତମାନ ମନରୁ ସବୁ ଚିନ୍ତା ତ୍ୟାଗ କରନ୍ତୁ । ଦୂରରେ ଦେଖା ଯାଉଥିବା ସେହି ପର୍ବତକୁ ଦେଖନ୍ତୁ । ସୃଷ୍ଟି ଆରମ୍ଭରୁ ଗୁପ୍ତ ଭାବେ ମହାତୀର୍ଥ ବ୍ରହ୍ମକୁଣ୍ଡ ସେହି ପର୍ବତ ଗହ୍ୱରରେ ଅଛି । ସେଠାକୁ ଯିବାପାଇଁ ଆଜି ପର୍ଯ୍ୟନ୍ତ କେହି ସକ୍ଷମ ହୋଇ ନାହାନ୍ତି । ବଡ଼ ଦୁର୍ଗମ ଅଞ୍ଚଳ, ବିଷାକ୍ତସର୍ପ, କଣ୍ଟା, ଲତା, ଓ ହିଂସ୍ର ଜନ୍ତୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବ୍ରହ୍ମକୁଣ୍ଡ ଏକ ପ୍ରକାର ଲୁଚି ରହିଛି । ସେଥିପାଇଁ ଦେବତା, ଋଷିସ, ମଣିଷ, ଗନ୍ଧର୍ବ କେହିହେଲେ ସେ ତୀର୍ଥର ସନ୍ଧାନ ପାଇନାହାନ୍ତି । ଅତୀତରେ ଯେଉଁ କେତେଜଣ ଏହାକୁ ଖୋଜିବା ପାଇଁ ଉଦ୍ୟମ କରିଛନ୍ତି ସମସ୍ତେ ମୃତ୍ୟୁ ମୁଖରେ ପଡ଼ିଛନ୍ତି ବୋଲି ଶୁଣାଯାଏ । କିନ୍ତୁ ଆପଣ ଭୃଗୁ ବଂଶର କୁଳ ପ୍ରଦୀପ । ମହାବୀର ଅଟନ୍ତି । ଆପଣ ସେହି କୁଣ୍ଡକୁ ନିଶ୍ଚୟ ଯାଇ ପାରିବେ ବୋଲି ମୋର ଦୃଢ଼ ବିଶ୍ୱାସ । ଥରେ ମାତ୍ର ସେହି ବ୍ରହ୍ମକୁଣ୍ଡରେ ବୁଡ଼ ପକାଇ ଦେଖିବେ ଆପଣଙ୍କ ଶରୀର ପବିତ୍ର ହୋଇଯିବ । ପରଶୁ ଆପେ ଆପେ ହାତରୁ ଖସି ପଡ଼ି ପୂର୍ବଭଳି ପବିତ୍ର ହୋଇଯିବ ।"

ପରଶୁରାମ ବ୍ରାହ୍ମଣଙ୍କୁ ଧନ୍ୟବାଦ ଜଣାଇ କହିଲେ—"ଆପଣ ମୋତେ ଆଶୀର୍ବାଦ କରନ୍ତୁ । ପିତାଙ୍କ ପ୍ରସାଦ ଓ ଶିବଙ୍କ କୃପା ଲାଭ କରି ମୁଁ ଅସାଧ୍ୟ ସାଧନ କରିବାରେ ସମର୍ଥ । ବିପଦ ସଙ୍କୁଳ ବ୍ରହ୍ମକୁଣ୍ଡକୁ ମୁଁ ଆବିଷ୍କାର କରି ସେଥିରେ ପବିତ୍ର ସ୍ନାନ କରି ଖୁବ୍ କମ୍ ସମୟ ଭିତରେ ଫେରି ଆସିବି ।"

ବିଷ୍ଣୁସଖା ପରଶୁରାମଙ୍କୁ ଆଶୀର୍ବାଦ ଦେଇ କହିଲେ—"ବିଜୟୀ ହୁଅ ! ବୀର ଶ୍ରେଷ୍ଠ । ପାପ ମୁକ୍ତହୁଅ । ମାତ୍ର ମୋର ଗୋଟାଏ ଅନୁରୋଧ ରଖିବ ପରଶୁରାମ ?"

ପରଶୁରାମ କହିଲେ—"ଅନୁରୋଧ କୁହନ୍ତୁ ନା । ଆଦେଶ ଦିଅନ୍ତୁ । ଆପଣ ମୋର ଯେଉଁ ମହାନ୍ ଉପକାର କରିଛନ୍ତି ସେ ଋଣ ସୁଝିବା ପାଇଁ ମୋତେ ସୁଯୋଗ ଦିଅନ୍ତୁ ।"

ବିଷ୍ଣୁସଖା କହିଲେ—"ବେଦାନ୍ତରେ ଉକ୍ତ ଅଛି "ଜନସେବା ସମାହୃତେ ପୁନର୍ଜନ୍ମ ନ ବିଦ୍ୟତେ ।" ଆପଣ ବ୍ରହ୍ମକୁଣ୍ଡରେ ସ୍ନାନ କଲମାତ୍ରେ ପାପମୁକ୍ତ ହୋଇଯିବେ ନିଶ୍ଚୟ । ତେବେ ଜନମାନଙ୍କର ଉପକାର ପାଇଁ ଆପଣ ପାପମୁକ୍ତ ହେବା ପରେ ପରେ ପରଶୁ ଆଘାତରେ ପର୍ବତ ଫଟାଇ ବ୍ରହ୍ମକୁଣ୍ଡର ପବିତ୍ର ଜଳକୁ ଝରାଇ ଦେବେ । ସେହି ପବିତ୍ର ଜଳଧାରା ବ୍ରହ୍ମପୁତ୍ର ନଦୀରୂପେ ପ୍ରବାହିତ ହୋଇ ଏ ଦେଶବାସୀଙ୍କ ପାପଧ୍ୱଂସ କରି ଅଶେଷ ଉପକାର କରିବ ।"

ପରଶୁରାମ ଏଥିରେ ରାଜି ହୋଇ କହିଲେ—"ମହାଶୟ ! ଆପଣ ଏହିଠାରେ ହିଁ ଅପେକ୍ଷା କରିଥାନ୍ତୁ । ବ୍ରହ୍ମପୁତ୍ର ନଦୀର ପ୍ରଥମ ଜଳଧାରରେ ପ୍ରଥମେ ଆପଣ ସ୍ନାନ କରି ସ୍ୱଦେହରେ ବୈକୁଣ୍ଠ ପ୍ରାପ୍ତି ହେବା ସୌଭାଗ୍ୟ ଲାଭ କରିପାରିବେ ।"

ବନ୍ଧୁ ସଖା ସେଠାରେ ଅପେକ୍ଷା କଲେ ଏବଂ ପର୍ଶୁରାମ ବହୁ କଷ୍ଟ ସ୍ୱୀକାର କରି ବ୍ରହ୍ମକୁଣ୍ଡର ସନ୍ଧାନ ପାଇଲେ । ସେ କୁଣ୍ଡରେ ସେ ସ୍ନାନ କରିବା ମାତ୍ରେ ପାପମୁକ୍ତ ହେଲେ ଏବଂ ବର୍ଷ ବର୍ଷ ଧରି କାନ୍ଧରେ ଲାଗି ରହିଥିବା ପର୍ଶୁକୁଠାର ତାଙ୍କଠାରୁ ଆପେ ଆପେ ଖସି ବ୍ରହ୍ମକୁଣ୍ଡ ସ୍ପର୍ଶରେ ଅତି ପବିତ୍ର ଓ ଶକ୍ତିମାନ ହୋଇଗଲା । ପର୍ଶୁରାମ ପର୍ଶୁ ଆଘାତରେ ପର୍ବତ ଫଟାଇ ବ୍ରହ୍ମକୁଣ୍ଡର ପବିତ୍ର ଜଳଧାରାର ଝରଣା ସୃଷ୍ଟି କଲେ । ସେ ଝରଣା ବ୍ରହ୍ମପୁତ୍ର ନଦୀ ନାମରେ ପ୍ରବାହିତ ହେଲା । ନଦୀର ପ୍ରଥମ ଧାରରେ ସ୍ନାନ କରି ବ୍ରାହ୍ମଣ ବନ୍ଧୁ ସଖା ସ୍ୱଦେହରେ ବୈକୁଣ୍ଠପ୍ରାପ୍ତ ହେଲେ । ଭଗବାନ ପର୍ଶୁରାମ ଆନନ୍ଦ ମନରେ ଆଶ୍ରମକୁ ଫେରିଲେ । ଦୀର୍ଘ ଦିନ ପରେ ପିତା ମାତା ଓ ଭାଇଙ୍କ ସହ ତାଙ୍କର ମିଳନ ହେଲା ।

ସେ ସମୟରୁ କ୍ଷତ୍ରିୟ ରାଜା କ୍ରମଶଃ ଅତ୍ୟାଚାରୀ ହୋଇ ଉଠିଥାନ୍ତି । ଅନ୍ୟାୟ ଓ ଅନାଚାରର ମାତ୍ରା ବଢ଼ି ଚାଲିଥାଏ । ସେମାନଙ୍କ ଭିତରେ ଅଗ୍ରଗଣ୍ୟ ଥାନ୍ତି କାର୍ତ୍ତବୀର୍ଯ୍ୟାର୍ଜୁନ । ସେ ନିଜର ବାହୁ ବଳରେ ଧରାକୁ ସରା ଭଳି ମନେକରୁଥାନ୍ତି । ଦିଗ୍‌ବିଜୟ କରି ସେ ନିଜକୁ ଏକଛତ୍ର ସମ୍ରାଟ ରୂପେ ଘୋଷଣା କରିଥାନ୍ତି । ତାଙ୍କର ଥାନ୍ତି ଏକ ସହସ୍ର ପୁତ୍ର । ତେଣୁ ସମସ୍ତେ ତାଙ୍କୁ ଭୟ କରୁଥାନ୍ତି । ଏକଦା ଦିଗ୍‌ବିଜୟରୁ ନିଜ ରାଜଧାନୀ ମାହିଷ୍ମତୀ ନଗରୀକୁ ଫେରିବା ସମୟରେ ବଣ ଭିତରେ ସନ୍ଧ୍ୟା ହେବାରୁ ରାଜା ନିଜ ଦଳ ବଳ ସହ ଆଶ୍ରୟ ଖୋଜିଲେ । ସେହି ବନ ଭୂମିରେ ଥିଲା ମହର୍ଷି ଯମଦଗ୍ନିଙ୍କ ଆଶ୍ରମ । ସମସ୍ତେ ସେଠାରେ ଉପସ୍ଥିତ ହେଲେ । ସନ୍ଧ୍ୟା ସମୟ । ମହର୍ଷି ଯମଦଗ୍ନି ଓ ତାଙ୍କର ଋଷିପୁତ୍ର ସନ୍ଧ୍ୟା ତର୍ପଣ ପାଇଁ ନଦୀ କୂଳରେ ଥିଲେ । ମହର୍ଷି ଯମଦଗ୍ନି ଯୋଗଧ୍ୟାନରେ ବସିଥିଲେ । ଆଶ୍ରମରେ ଏକା ଥାନ୍ତି ରେଣୁକା ।

ରାଜା ଓ ତାଙ୍କର ଦଳବଳ ଆଶ୍ରମରେ ଅତିଥି ରୂପେ ପହଞ୍ଚିବାରୁ ରେଣୁକା ସେମାନଙ୍କୁ ସ୍ୱାଗତ ଜଣାଇଲେ । ଆଶ୍ରମରେ ଥିବା କାମଧେନୁ ନନ୍ଦାକୁ ଅତିଥି ମାନଙ୍କ ତୃପ୍ତି ପାଇଁ ରେଣୁକା ପ୍ରାର୍ଥନା କଲେ । ନନ୍ଦାଙ୍କ ଅଦ୍ଭୁତ କ୍ଷମତା ଥିଲା । ସେ ନିଜ ଶରୀର ଦ୍ୱାରା ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଚାରି ପ୍ରକାର ଭେଦରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ସୃଷ୍ଟି କଲେ । ରେଣୁକା ସେ ସବୁ ଖାଦ୍ୟ ଦ୍ରବ୍ୟଦ୍ୱାରା ରାଜାଙ୍କ ବିରାଟ ସୈନ୍ୟ ବାହିନୀକୁ ଅତଣ୍ଟ ଭୋଜନରେ ଆପ୍ୟାୟିତ କଲେ । ପରେ ଋଷି ଓ ଋଷି ପୁତ୍ରମାନେ ଫେରି ରାଜା ଓ ତାଙ୍କ ଲୋକମାନଙ୍କ ବିଶ୍ରାମ ବ୍ୟବସ୍ଥା କଲେ । ରାଜା କାର୍ତ୍ତବୀର୍ଯ୍ୟାର୍ଜୁନ ଆଶ୍ରମର ଏହି ପ୍ରକାର ବ୍ୟବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଅସମ୍ଭବ କିପରି ଘଟିଲା ଭାବି ଭାବି ତାଙ୍କୁ ରାତି ନିଦ ମଧ୍ୟ ହେଲା ନାହିଁ ।

ପରଦିନ ସକାଳେ ରାଜା ବିଦାୟ ନେବାକୁ ଆସିଲେ । ମାତ୍ର ଯମଦଗ୍ନି ନିତ୍ୟ କର୍ମ ପାଇଁ ଆଶ୍ରମ ବାହାରେ ନଦୀକୂଳରେ ତପସ୍ୟା କରୁଥିଲେ । ଋଷିପୁତ୍ର ଋଷି ବନକୁ ହୋମ ଓ ପୂଜା ଉପକରଣ ଆଣିବା ପାଇଁ ଯାଇଥିଲେ । ରାଜା ଯାଉ ଯାଉ ରେଣୁକାଙ୍କ ନିକଟରୁ ବିଦାୟ ମାଗିବା ବେଳେ ଗତ ରାତିର ଅତିଥି ସତ୍କାରର ରହସ୍ୟ ପଚାରିଲେ । ରେଣୁକା

ନିଜ କାମଧେନୁ ନନ୍ଦାଙ୍କ ଶକ୍ତି ବଳପ୍ରରେ ରାଜାଙ୍କୁ କହିଦେଲେ । ଏଭଳି ଅଦ୍ଭୁତ ଶକ୍ତି ଥିବା ଗାଈଟିକୁ ନେବାପାଇଁ ରାଜାଙ୍କର ମନ ହେଲା । ସେ ରେଣୁକାଙ୍କୁ ଲୋଭରେ ପଡ଼ି ଗାଈଟିକୁ ଦେଇଦେବା ପାଇଁ ଅନୁରୋଧ କଲେ । ମାତ୍ର ରେଣୁକା ଆଶ୍ରମରେ ତାଙ୍କ ସ୍ୱାମୀ ନଥିବାରୁ ତାଙ୍କ ବିନା ଅନୁମତିରେ ନନ୍ଦାଙ୍କୁ ଦେଇପାରିବେ ନାହିଁ ବୋଲି ସ୍ପଷ୍ଟଭାବେ ରାଜାଙ୍କୁ ଜଣାଇଦେଲେ । କିନ୍ତୁ ଗର୍ବୀ ଓ ଉଦ୍ଧତ ରାଜା ରେଣୁକାଙ୍କ ବାରଣ ସତ୍ତ୍ୱେ, କାକୁତି ମିନତି ସତ୍ତ୍ୱେ ବଳତ୍କାରରେ କାମଧେନୁ ନନ୍ଦାଙ୍କୁ ନେଇଗଲେ । ଯିବାବେଳେ ନଦୀକୂଳରେ ଧ୍ୟାନରତ ଯମଦଗ୍ନିଙ୍କୁ ଦେଖି କାର୍ତ୍ତବୀର୍ଯ୍ୟ ଭାବିଲେ ଋଷି ଯଦି ବଳତ୍କାରରେ ଆଶ୍ରମର ଗାଈ ନେବା କଥା ଜାଣନ୍ତି କ୍ରୋଧରେ ଅଭିଶାପ ଦେଇପାରନ୍ତି । ତେଣୁ ସେ ନିଜ ଖଣ୍ଡାରେ ଋଷିଙ୍କ ମୁଣ୍ଡଟାକୁ ହାଣିଦେଇ ପଳାଇଗଲେ । ରେଣୁକା ସ୍ୱାମୀଙ୍କୁ ଘଟଣା ଜଣାଇବା ପାଇଁ ନଦୀକୂଳରେ ପହଞ୍ଚି ତାଙ୍କର ମୃତଦେହ ଦେଖି ଆକୁଳରେ କ୍ରନ୍ଦନ କରିବାକୁ ଲାଗିଲେ ।

ଠିକ୍ ସେତିକିବେଳେ ପର୍ଶୁରାମ ସେଠାରେ ପହଞ୍ଚିଗଲେ । ପିତାଙ୍କ କଟାମୁଣ୍ଡ ଓ ମାତାଙ୍କ ଆକୁଳକ୍ରନ୍ଦନ ସାଙ୍ଗକୁ କାମଧେନୁ ନନ୍ଦାର ଅପହରଣ ଘଟଣାରେ କ୍ରୋଧରେ କମ୍ପି ଉଠିଲେ । ଖିପ୍ରଣ ଟଙ୍କାର କରି ନିଜର ପ୍ରିୟ ଅସ୍ତ୍ରପର୍ଶୁ ନେଇ କାର୍ତ୍ତବୀର୍ଯ୍ୟଙ୍କୁ ବଧ କରିବାପାଇଁ ପ୍ରତିଜ୍ଞା କରି ଦୌଡ଼ିଲେ ।

ଏଣେ ରେଣୁକାଙ୍କ କ୍ରନ୍ଦନ ଶୁଣି ନିକଟେ ଭାର୍ଗବ ଋଷି ଘଟଣା ସ୍ଥଳରେ ପହଞ୍ଚିଲେ । ନିଜର ତପଃ ଶକ୍ତି ବଳରେ ସେ ଯମଦଗ୍ନିଙ୍କ କଟାମୁଣ୍ଡ ଯୋଡ଼ି ପୁନର୍ଜୀବନ ଦେଲେ । ରେଣୁକା ପତିଙ୍କୁ ଫେରିପାଇ ସବୁଘଟଣା ବର୍ଣ୍ଣନା କଲେ ଏବଂ ପର୍ଶୁରାମଙ୍କୁ ଫେରାଇ ଆଣିବା ପାଇଁ ଅନୁରୋଧ କଲେ । ମାତ୍ର ଭାର୍ଗବ କହିଲେ—"ପର୍ଶୁରାମ ବିଷ୍ଣୁଙ୍କ କଳା ନେଇ ଅବତାର ପୁରୁଷ ରୂପେ ଜନ୍ମ ହୋଇଛନ୍ତି । ଉଦ୍ଧତ କ୍ଷତ୍ରିୟ ରାଜାମାନଙ୍କୁ ନିଧନ କରିବା ପାଇଁ ଓ ଜଗତରୁ ପାପଧ୍ୱଂସ କରିବା ପାଇଁ ସେ ଭବିଷ୍ୟତରେ ସଂହାର ଲୀଳା ଚଳାଇବେ । ଅବତାରୀ ବିଷ୍ଣୁଙ୍କ ଇଚ୍ଛାକୁ କେହି ଦମନ କରିପାରିବେ ନାହିଁ ।" ଯମଦଗ୍ନିଙ୍କ ଅନ୍ୟ ପୁତ୍ରମାନେ କ୍ରମଶଃ ସେଠାରେ ପହଞ୍ଚିଲେ । ସମସ୍ତେ ଆଶ୍ରମକୁ ଆସିଲେ ସତ ମାତ୍ର ଉଗ୍ରରୂପୀ ପର୍ଶୁରାମଙ୍କ ଫେରିବା ପଥକୁ ସମସ୍ତେ ଉଦ୍‌ବେଗର ସହିତ ପ୍ରତୀକ୍ଷା କଲେ ।

ଏଣେ ମାହେଷ୍ମତୀ ନଗରରେ ସୈନ୍ୟମାନେ ରାଜାଙ୍କ ଆଦେଶରେ କାମଧେନୁ ନନ୍ଦା ଉପରେ ନାନା ଅତ୍ୟାଚାର ଚଳାଉଥାନ୍ତି । କାରଣ ନନ୍ଦା ସେମାନଙ୍କ ପ୍ରାର୍ଥନା ଅନୁସାରେ ସେମାନଙ୍କ କୌଣସି ହେଲେ ଇଚ୍ଛା ପୂରଣ କରୁନଥାନ୍ତି । ନନ୍ଦାଙ୍କ ବିକଳ ହମ୍ବାରଡ଼ି ପର୍ଶୁରାମଙ୍କ କାନରେ ବାଜିଗଲା । ସେ କ୍ରୋଧରେ ପାଗଳ ଭଳି ହୋଇ ଯାଇଥାନ୍ତି । ତାଙ୍କର ଉଗ୍ରମୂର୍ତ୍ତି ଦେଖି ସୈନ୍ୟମାନେ ଶଙ୍କିଗଲେ । ପର୍ଶୁରାମ ଏକାକୀ ସୈନ୍ୟଦଳ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ମହାବୀର ପର୍ଶୁରାମଙ୍କ ଅଦ୍ଭୁତ ଶକ୍ତି ଯୋଗୁଁ ନିମିଷକ ମଧ୍ୟରେ କାର୍ତ୍ତବୀର୍ଯ୍ୟଙ୍କ ବିରାଟ ସେନାବାହିନୀ ଛତ୍ରଭଙ୍ଗ ହେଲ

ପଳାଇଲେ । ପରଶୁରାମ ନନ୍ଦାଙ୍କୁ ଆଦରରେ ଆଉଁସି ପକାଇଲେ ଏବଂ ବନ୍ଧନ ଫିଟାଇ ଦେଲେ । ନମ୍ରସ୍ୱରେ ଆଶ୍ରମକୁ ଫେରିଯିବା ପାଇଁ ପରଶୁରାମ କହିବାରୁ ନନ୍ଦା ଆଶ୍ରମକୁ ଫେରିଗଲେ ।

ଏଥର ପରଶୁରାମ ନିଜର ପରଶୁକୁଠାର ଉଠାଇ କାର୍ତ୍ତବୀର୍ଯ୍ୟଙ୍କ ରାଜପ୍ରାସାଦ ଆଡ଼କୁ ଧାଇଁଲେ । ଜଟା ବସ୍ତ୍ର ପିନ୍ଧିଥିବା ରକ୍ତ ଜର୍ଜରିତ ପରଶୁରାମ କାଳାନଳ ଭଳି ଦେଖା ଯାଉଥାନ୍ତି । ତାଙ୍କର ଭୟଙ୍କର ମୂର୍ତ୍ତିଦେଖି ରାଜପ୍ରାସାଦ ରକ୍ଷକମାନେ କଏ କୁଆଡ଼େ ଲୁଚିଗଲେ । ପରଶୁରାମ ରାଜପ୍ରାସାଦ ଭିତରେ ପଶି ଆହ୍ୱାନ ଦେଲେ—" ରେ ପ୍ରଜା ପୀଡ଼କ ପାପୀରାଜା କାର୍ତ୍ତବୀର୍ଯ୍ୟ ଅନ୍ତଃପୁରରେ ଲୁଚି ରହିଛୁ କାହିଁକି ? ଯେଉଁରାଜାର ରାଜ୍ୟରେ ମୁନି, ଋଷି, ଗୋ, ବ୍ରାହ୍ମଣ, ନାରୀମାନଙ୍କ ଉପରେ ଅତ୍ୟାଚାର କରାଯାଏ ସେ ରାଜାର ମୃତ୍ୟୁ ହିଁ ଏକମାତ୍ର କାମ୍ୟ । ମୋ ପର୍ଶୁ ତୋ ରକ୍ତ ପିଇବା ପାଇଁ ଅପେକ୍ଷମାଣ । ଯଦି ତୁ ନିଜକୁ କ୍ଷତ୍ରିୟ ଅହଙ୍କାର ବୋଲି କହି ଗର୍ବ କରୁ ତେବେ ବ୍ରାହ୍ମଣ ପରଶୁରାମ ସହିତ ଯୁଦ୍ଧ କରିବୁ ଆ ।"

ପରଶୁରାମଙ୍କ ଏଭଳି ଯୁଦ୍ଧ ଡାକରାରେ କାର୍ତ୍ତବୀର୍ଯ୍ୟ ମଧ୍ୟ କ୍ରୋଧରେ ଅସ୍ତ୍ରଧରି ବାହାରି ଆସିଲେ । ଦୁହିଁଙ୍କ ଭିତରେ ଆରମ୍ଭ ହୋଇଗଲା ତୁମୁଳଯୁଦ୍ଧ । ଦୁଇ ମହାଯୋଦ୍ଧାଙ୍କ ଯୁଦ୍ଧ କ୍ରମେ ଭୟଙ୍କର ଆକାର ଧାରଣ କଲା । ଏ ଯୁଦ୍ଧ ଦେଖିବା ପାଇଁ ଆକାଶରେ ଦେବତାମାନେ ମଧ୍ୟ ଏକାଠି ହୋଇ ଚାହିଁ ରହିଲେ । ଅଭିଶପ୍ତ ଦତ୍ତଙ୍କ ଅଭିଶାପ ଅନୁସାରେ ବିଷ୍ଣୁଙ୍କ କଳା ନେଇ ଅବତାର ଗ୍ରହଣ କରିଥିବା ପରଶୁରାମଙ୍କ ଦ୍ୱାରା କାର୍ତ୍ତବୀର୍ଯ୍ୟ ନିହତ ହେଲେ । ତାଙ୍କ ଦେହରୁ ଏକ ଜ୍ୟୋତି ବାହାରି ପରଶୁରାମଙ୍କୁ ପରିକ୍ରମା କଲା ଏବଂ ବୈକୁଣ୍ଠକୁ ଯାଇ ବିଷ୍ଣୁଙ୍କ ସୁଦର୍ଶନ ମହାଚକ୍ରରେ ଲୀନ ହୋଇଗଲା ପରଶୁରାମଙ୍କ କ୍ରୋଧ ଶାନ୍ତ ହେଲା ଓ ସେ ଆନନ୍ଦରେ ଆଶ୍ରମକୁ ଫେରିଲେ । ସେଠାରେ ଜୀବିତ ଯମଦଗ୍ନିଙ୍କୁ ଦେଖି ଖୁବ୍ ଆନନ୍ଦିତ ହେଲେ ଓ ନିଜର ଯୁଦ୍ଧ ଏବଂ ଶତ୍ରୁସଂହାର କଥା ବର୍ଣ୍ଣନା କରିଗଲେ ।

ସବୁ ଶୁଣିସାରିବା ପରେ ଯମଦଗ୍ନି କହିଲେ—"ପୁତ୍ର ! ତୁମେ ଯାହା କରିଛ କିଛି ଅନ୍ୟାୟ କରିନାହିଁ । ତେବେ ଆମେ ହେଲେ ବ୍ରାହ୍ମଣ ! କୌଣସି କ୍ଷେତ୍ରରେ ହତ୍ୟାକାଣ୍ଡ କରି ବସିବା ବ୍ରାହ୍ମଣମାନଙ୍କ ଅଧର୍ମ ଅଟେ । ସୁତରାଂ ତୁମେ ପାପ ମୁକ୍ତ ହେବା ପାଇଁ ପୁଣି ଥରେ ତପସ୍ୟା କର ।"

ପିତୃଭକ୍ତ ପରଶୁରାମ ପିତାଙ୍କ ଉପଦେଶ ଅନୁସାରେ ତପସ୍ୟା କରିବା ପାଇଁ ବଣକୁ ଚାଲିଗଲେ । ମାତ୍ର ପରଶୁରାମ ତପସ୍ୟା ପାଇଁ ଆଶ୍ରମ ଛାଡ଼ି ଚାଲିଯାଇଥିବା ଖବର ପାଇବା ମାତ୍ରେ କାର୍ତ୍ତବୀର୍ଯ୍ୟଙ୍କ ଏକହଜାର ପୁତ୍ର ଯମଦଗ୍ନିଙ୍କ ଆଶ୍ରମ ଆକ୍ରମଣ କଲେ । ସେତେବେଳକୁ ଯମଦଗ୍ନି ନିଜର ଅନ୍ୟ ପୁତ୍ରମାନଙ୍କୁ ପୂଜା ଓ ହୋମ ଉପକରଣ ସଂଗ୍ରହ

ପାଇଁ ପଠାଇ ଦେଇଥିଲେ । ନିଜେ କଠୋର ତପସ୍ୟାରେ ଧ୍ୟାନମଗ୍ନ ଥିଲେ ଏବଂ ତାଙ୍କ ନିର୍ଦ୍ଦେଶରେ ରେଣୁକା ଆଶ୍ରମ ରକ୍ଷା ଦାୟିତ୍ୱରେ ଥିଲେ । କାର୍ତ୍ତବୀର୍ଯ୍ୟଙ୍କ ପୁତ୍ରମାନେ ଆଶ୍ରମ ଘରଗୁଡ଼ିକରେ ନିଆଁ ଲଗାଇଦେଲେ । ତପୋବନକୁ ଭାଙ୍ଗି ଅସ୍ତବ୍ୟସ୍ତ କରି ପକାଇଲେ । କାର୍ତ୍ତବୀର୍ଯ୍ୟଙ୍କ ବଡ଼ ପୁଅ ଯମଦଗ୍ନିଙ୍କ ଧ୍ୟାନମଗ୍ନ ଦେଖି ଖଣ୍ଡା ବାହାର କରି ତାଙ୍କୁ ହାଣିବା ପାଇଁ ଧାଇଁଗଲେ ! ମାତ୍ର ରେଣୁକା ଅତ୍ୟାଚାରୀର ପଥ ଓଗାଳି ଠିଆ ହେଲେ । ମାତ୍ର କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର ରେଣୁକାଙ୍କୁ ନିଜ ପାଦରେ ଆଘାତ କରିବାକୁ ଲାଗିଲା । ଏକୋଇଶ ଥର ପଦାଘାତ ଖାଇବା ପରେ କୋମଳାଙ୍ଗୀ ରେଣୁକାଙ୍କ ମୂର୍ଚ୍ଛା ହେଲା । ରେଣୁକାଙ୍କ ଆର୍ତ୍ତଚିତ୍କାର ପର୍ଶୁରାମ ଜଙ୍ଗଲ ଭିତରେ ଥାଇ ଏକୋଇଶଥର ପର୍ଯ୍ୟନ୍ତ ଶୁଣି ପାରିଲେ ସେ ବିପଦ ଆଶଙ୍କା କରି ଆଶ୍ରମକୁ ଧାଇଁ ଆସିଲେ । ମାତ୍ର ସେ ପହଞ୍ଚିବା ପୂର୍ବରୁ କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର ଧ୍ୟାନମଗ୍ନ ଯମଦଗ୍ନିଙ୍କ ମୁଣ୍ଡହାଣିଦେଇ ପଳାଇଗଲେ । ଋଷିଙ୍କ ମୁଣ୍ଡଟି ଛିଣ୍ଡି ଯିବା ପରେ ଗଡ଼ି ଗଡ଼ି ଯାଇ ଦୂର ପଥର ସନ୍ଧିରେ ଅଟକିଗଲା । ଅତ୍ୟାଚାରୀ ମାନେ ପଳାଇ ଗଲେ ।

ପର୍ଶୁରାମ ଆଶ୍ରମରେ ପହଞ୍ଚି ସେହି ଲୋମହର୍ଷଣକାରୀ ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲେ । ପିତା ଓ ମାତାଙ୍କ ଦେହ ଅର୍ଦ୍ଧଦଗ୍ଧ ଅବସ୍ଥାରେ ସେଠି ପଡ଼ି ରହିଥିଲା । ସେ ଖୁବ୍ ଦୁଃଖିତ ହେଲେ । ହଠାତ୍ ପିତା ଯମଦଗ୍ନିଙ୍କ କଟା ମୁଣ୍ଡଟା ସେ ଦେଖି ପାରିଲେ । ତାଙ୍କର ଦୁଃଖଟା ସଙ୍ଗେ ସଙ୍ଗେ ପ୍ରଚଣ୍ଡ କ୍ରୋଧରେ ପରିଣତ ହେଲା । ସେ ପିତାଙ୍କ କଟାମୁଣ୍ଡ ଧରି ପ୍ରତିଜ୍ଞା କଲେ ଯେ ଥରେ ନୁହେଁ ଦୁଇଥର ନୁହେଁ ଥର ଥର କରି ଏକୋଇଶ ଥର ପର୍ଯ୍ୟନ୍ତ ପୃଥିବୀକୁ କ୍ଷତ୍ରିୟ ଶୂନ୍ୟ କରିଦେବେ ।

ଉଗ୍ରରୂପ ଧରି ପର୍ଶୁରାମ କ୍ଷିପ୍ର ଗତିରେ ମାହେଷ୍ମତୀ ପୁର ଆଡ଼କୁ ଚାଲିଲେ । ରାସ୍ତାରେ ବିଶ୍ରାମ ନେଉଥିବା କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର ମାନଙ୍କ ସହ ତାଙ୍କର ଭେଟ ହେଲା । ସେ ନିମିଷକ ମଧ୍ୟରେ ପର୍ଶୁ ଆଘାତରେ ସମସ୍ତଙ୍କୁ ହତ୍ୟା କଲେ । ସେମାନଙ୍କ ରକ୍ତରେ ତର୍ପଣ କରି ପିତୃ ଓ ମାତୃ ହତ୍ୟାର ପ୍ରତିଶୋଧ ନେଲେ । ପିତାମାତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାପରେ ପର୍ଶୁରାମ ନିଜର ପ୍ରତିଜ୍ଞା ପାଳନ ପାଇଁ ଅଭିଯାନ ଆରମ୍ଭ କଲେ ।

ପ୍ରଥମେ ସେ ନିଜକୁ ବିପୁଳ ଶକ୍ତିମାନ କରିବା ନିମନ୍ତେ ହିମାଳୟ ଯାତ୍ରା କଲେ । ସେଠାରେ ଘୋର ତପସ୍ୟା କରି ମହାଦେବଙ୍କୁ ସନ୍ତୁଷ୍ଟ କଲେ । ଶିବ ପ୍ରକଟ ହୋଇ ପର୍ଶୁରାମଙ୍କୁ ବର ମାଗିବା ପାଇଁ କହିଲେ । ପର୍ଶୁରାମ କହିଲେ—"ପ୍ରଭୁ ! ଜଗତରେ ଅତ୍ୟାଚାରୀ କ୍ଷତ୍ରିୟ ସଂହାର ପାଇଁ ମୁଁ ଯେଉଁ ଶପଥ କରିଛି ତାହା ଯେପରି ରକ୍ଷା କରି ପାରିବି, ମୋତେ ବର ପ୍ରଦାନ କରନ୍ତୁ" ଶିବ କହିଲେ 'ତଥାସ୍ତୁ' । ତା ପରେ ସେ ପର୍ଶୁରାମଙ୍କୁ ଅନେକ ଦିବ୍ୟାସ୍ତ୍ର ପ୍ରଦାନ କଲେ । ଭାର୍ଗବାସ୍ତ୍ର ନାମକ ଏକ ଶକ୍ତିଶାଳୀ ଶର ଦେଇ ଶିବ କହିଲେ—"ପର୍ଶୁରାମ ! ଏହି ଅସ୍ତ୍ର ତୁମ ବଂଶର ନାମ ଅନୁସାରେ ନାମିତ । ଏହି ଅପାଲଟ ଶର ସାହାଯ୍ୟରେ ତୁମେ ଅଜେୟ ହୋଇପାରିବ । କିନ୍ତୁ ସାବଧାନ ବିଶେଷ ସଙ୍କଟ କାଳରେ ହିଁ ତୁମେ ଏହାକୁ ପ୍ରୟୋଗ କରିବ ।" ଶିବ ଅନ୍ତର୍ଦ୍ଧାନ ହେଲେ ।

ତା ପରେ ପର୍ଶୁରାମ ଭଗବାନ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ କଠୋର ତପସ୍ୟା କଲେ । ସ୍ୱୟଂ ନାରାୟଣ ତାଙ୍କ ତପସ୍ୟାରେ ପ୍ରକଟ ହୋଇ ତାଙ୍କୁ ନାରାୟଣି ଶକ୍ତି ସହ ଏକ କବଚ ପ୍ରଦାନ କଲେ । ବୈଷ୍ଣବ ଧନୁ ନାମକ ଏକ ଶକ୍ତିଶାଳୀ ଧନୁ ପର୍ଶୁରାମଙ୍କୁ ଦେଇ ବିଷ୍ଣୁ କହିଲେ— "ହେ ଅଂଶାବତାର ପର୍ଶୁରାମ । ଏହି ବୈଷ୍ଣବ ଧନୁ ସାହାଯ୍ୟରେ ତୁମେ ଅତ୍ୟାଚାରୀମାନଙ୍କୁ ଶାସ୍ତି ଦେଇପାରିବ । ଶ୍ରୀରାମ ଅବତାର ବେଳେ ମୁଁ ତୁମଠାରୁ ଏହି ଶକ୍ତିଶାଳୀ ଧନୁଟି ଫେରାଇ ନେବି । ମୁଁ ଆଶୀର୍ବାଦ କରୁଛି ତୁମେ ଜଗତର କଲ୍ୟାଣ ନିମନ୍ତେ ପାପୀ ଓ ଅତ୍ୟାଚାରୀ ମାନଙ୍କୁ ଅନାୟସରେ ବିନାଶ କର ।" ବିଷ୍ଣୁ ଅନ୍ତର୍ଦ୍ଧାନ ହେଲେ । ଜଗତର ସଂହାରକର୍ତ୍ତା ଓ ପାଳନକର୍ତ୍ତାଙ୍କ ଠାରୁ ଆଶିଷ ଓ ଦିବ୍ୟ ଅସ୍ତ୍ରମାନ ପାଇ ପର୍ଶୁରାମଙ୍କ ଶକ୍ତି ଖୁବ୍ ବୃଦ୍ଧି ହୋଇଗଲା । ସେ କ୍ଷତ୍ରିୟ ସଂହାର ଲୀଳା ଆରମ୍ଭ କଲେ ।

ସେତେବେଳକୁ କ୍ଷତ୍ରିୟ ରାଜାମାନଙ୍କ ଅନାଚାର ଚରମ ସୀମାରେ ପହଞ୍ଚିଥିଲା । ରାଜାମାନଙ୍କ ଉତ୍ପୀଡ଼ନରେ ପ୍ରଜାମାନେ ମଧ୍ୟ ସେମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଆରମ୍ଭ କଲେ । ପର୍ଶୁରାମଙ୍କୁ ସେମାନେ ଅକୁଣ୍ଠ ସମର୍ଥନ ଜ୍ଞାପନ କଲେ । ପର୍ଶୁରାମ ରାଜ୍ୟ ରାଜ୍ୟ ବୁଲି କ୍ଷତ୍ରିୟ ରାଜାମାନଙ୍କୁ ନିପାତ କଲେ । କ୍ଷତ୍ରିୟମାନେ ପର୍ଶୁରାମଙ୍କ ଭୟରେ ଆତ୍ମଗୋପନ କଲେ ମଧ୍ୟ ରକ୍ଷା ପାଇପାରିଲେ ନାହିଁ । ପର୍ଶୁରାମ ଖୋଜି ଖୋଜି ସେମାନଙ୍କୁ ବଧ କଲେ । ପ୍ରଜାମାନଙ୍କ ଧନରେ ତିଆରି ରାଜାମାନଙ୍କ ବିଳାସପୂର୍ଣ୍ଣ ପ୍ରାସାଦ ସବୁ ଅଗ୍ନି ଅସ୍ତ୍ର ପ୍ରୟୋଗରେ ପୋଡ଼ି ଭସ୍ମ କରିଦେଲେ । ଥର ଥର କରି ଏକୋଇଶ ଥର ପର୍ଯ୍ୟନ୍ତ ସମଗ୍ର ଜମ୍ବୁଦ୍ୱୀପ ପରିକ୍ରମା କରି ସେ କ୍ଷତ୍ରିୟ ସଂହାର ଚଳାଇଲେ । କ୍ଷତ୍ରିୟ ରାଣୀ ମାନେ ଗୋଟି ଗୋଟି ଶିଶୁମାନଙ୍କୁ ନେଇ ବ୍ରାହ୍ମଣ ଘର ମଧ୍ୟରେ ଆଶ୍ରୟ ନେଲେ ।

ପର୍ଶୁରାମଙ୍କ ପ୍ରତିଜ୍ଞା ପୂର୍ଣ୍ଣ ହେଲା । ପୃଥିବୀରୁ ଅନାଚାର ଲୋପପାଇଲା । ସମସ୍ତେ ନ୍ୟାୟ ମାର୍ଗରେ ଚାଲିବାକୁ ଲାଗିଲେ । ମୁନୀଋଷି ବ୍ରାହ୍ମଣମାନେ ସ୍ୱଚ୍ଛନ୍ଦରେ ଦେବ ଆରାଧନା, ଯାଗ ଯଜ୍ଞ ଇତ୍ୟାଦି କରି ପାରିଲେ । ପର୍ଶୁରାମ ସମଗ୍ର ଭାରତର ଏକାଙ୍କ ଚକ୍ରବର୍ତ୍ତୀ ହୋଇ ପାରିଥାନ୍ତେ କାରଣ ସବୁ ରାଜ୍ୟ ସେ ଜୟ କରିଥିଲେ । ମାତ୍ର ତାଙ୍କର ଉପାଦାନ ଥିଲା ଭିନ୍ନ । ସେ ଅସଂଖ୍ୟ ନରହତ୍ୟା କରି ଯେଉଁ ମହାପାପ ଅର୍ଜନ କରିଥିଲେ ସେଥିରୁ ମୁକ୍ତ ହେବା ପାଇଁ ତପସ୍ୟା କରିବାକୁ ଇଚ୍ଛା କଲେ ।

ସେ ସମୟର ଖ୍ୟାତନାମା ମହର୍ଷି ଥିଲେ କଶ୍ୟପ । ପର୍ଶୁରାମ ମହର୍ଷି କଶ୍ୟପଙ୍କୁ ନିଜ ଅଧୀନସ୍ଥ ସମସ୍ତ ରାଜ୍ୟ ଦାନ ଦେଇଦେଲେ ଏବଂ ତପସ୍ୟା କରିବା ନିମନ୍ତେ ହିମାଳୟ ପର୍ବତକୁ ଚାଲିଗଲେ । ସେଠାରେ ସେ କଠୋର ତପସ୍ୟାରେ ନିମଗ୍ନ ରହିଲେ ।

ପର୍ଶୁରାମଙ୍କ ଆତଙ୍କ ଦୂର ହେବାରୁ ଲୁଚି ଛପିଥିବା କ୍ଷତ୍ରିୟମାନେ ଆତ୍ମପ୍ରକାଶ କଲେ । ମହର୍ଷି କଶ୍ୟପ ସେମାନଙ୍କୁ ବିଭିନ୍ନ ରାଜ୍ୟରେ ରାଜା ରୂପେ ପୁନର୍ବାର ଅଭିଷିକ୍ତ କରାଇ ସତ୍ୟ ଓ ନ୍ୟାୟମାର୍ଗରେ ସୁଶାସନ କରିବା ନିମନ୍ତେ ପରାମର୍ଶ ଦେଲେ । ନୂତନ ରାଜା-ମାନେ ଧର୍ମ ମାର୍ଗରେ ରାଜ୍ୟ ଶାସନ କଲେ ।

ସେହି ରାଜାମାନଙ୍କ ମଧ୍ୟରେ ଇକ୍ଷ୍ୱାକୁ ଥିଲେ ଅନ୍ୟତମ । ତାଙ୍କର ଉତ୍ତରାଧିକାରୀ ଥିଲେ ରଘୁ । ସେହି ରଘୁ ବଂଶରେ ଅଜ, ଭଗୀରଥ, ଦଶରଥ ପ୍ରଭୃତି ଜନ୍ମ ଗ୍ରହଣ କରିଥିଲେ । ଏମାନେ ଥିଲେ ଯେଭଳି ଧାର୍ମିକ ସେହିଭଳି ଦୟାଶୀଳ ଓ ପ୍ରଜାପାଳକ । ଦଶରଥଙ୍କ ପୁତ୍ର ରୂପେ ସ୍ୱୟଂ ଭଗବାନ ବିଷ୍ଣୁ ଷଷ୍ଠ ଅବତାରରେ ଶ୍ରୀରାମ ରୂପେ ଜନ୍ମ ନେଲେ । ଶ୍ରୀରାମ ମିଥିଳା ରାଜାରେ ରାଜର୍ଷି ଜନକଙ୍କ କନ୍ୟା ସୀତାଙ୍କୁ ଶିବଧନୁ ଭାଙ୍ଗି ବିବାହ କରିଥିଲେ ।

ପର୍ଶୁରାମ ଏକ ହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲା ପରେ ଶୁଦ୍ଧ ପୂତ ହୋଇ ସ୍ୱଗଙ୍କ ଆଶ୍ରମରେ ରହୁଥାନ୍ତି । ସେ ପରମ ଶିବଭକ୍ତ । ଶ୍ରୀରାମ ନାମକ ଜଣେ କ୍ଷତ୍ରିୟ ରାଜକୁମାର ଶିବଙ୍କ ଶକ୍ତିଶାଳୀ ଧନୁ ଭାଙ୍ଗି ଦେଇଥିବା ଖବର ଶୁଣି ସେ ରାଗିଯାଇଥାନ୍ତି । ବୈବାହ୍ ରାଜା ଦଶରଥ ନିଜର ପୁତ୍ର ଓ ପୁତ୍ରବଧୂ ମାନଙ୍କୁ ନେଇ ସ୍ୱଗଙ୍କ ଆଶ୍ରମ ବାଟରେ ରଥ,ରଥୀ ସୈନ୍ୟ ସାମନ୍ତ ନେଇ ବଡ଼ ପଟୁଆରରେ ଫେରୁଥିଲେ । ସେ ଶବ୍ଦରେ ପର୍ଶୁରାମ ବ୍ୟସ୍ତ ହୋଇ ଆଶ୍ରମଭିତରରୁ ବୁଲି ଆସିଲେ । ସହସ୍ର ବର୍ଷ ତଳେ ପୃଥିବୀକୁ ସେ ନିଃକ୍ଷତ୍ରିୟ କରିଥିଲେ । ଅଥଚ ଏ ଭିତରେ କ୍ଷତ୍ରିୟମାନେ ପୁଣି ମୁଣ୍ଡଟେକି ନିଜକୁ ପ୍ରତିଷ୍ଠିତ କରିଥିବା ଘଟଣାକୁ ସେ ସହ୍ୟ କରିପାରୁ ନଥାନ୍ତି । ତାଙ୍କ ଭଳି ଜଣେ ବୀର ବୟୋଜ୍ୟେଷ୍ଠ । ବ୍ରାହ୍ମଣ ଓ ତପସ୍ୱୀଙ୍କୁ ସମ୍ମାନ ନଜଣାଇ ଆଶ୍ରମର ଶାନ୍ତିଭଙ୍ଗ କରି ରଥଚଳାଇ ଯାଉଥିବା ଶୋଭାଯାତ୍ରାକାରୀଙ୍କୁ ସେ ଅଟକାଇ ପରିଚୟ ମାଗିଲେ । ଦଶରଥ ନିଜର ପରିଚୟ ଦେଲେ ଓ ନିଜର ପୁତ୍ରମାନଙ୍କ ସହ ପର୍ଶୁରାମ ଶିବଧନୁ ଭଙ୍ଗକାରୀ ରାମଙ୍କୁ ଦେଖି କ୍ରୋଧ ପ୍ରକାଶ କଲେ । ସେ କଟୁକ୍ତି ପ୍ରକାଶ କରି କହିଲେ —"ରାମ ! ଗୋଟାଏ ବହୁ ବର୍ଷ ତଳର ପୁରୁଣା ଧନୁ ଭାଙ୍ଗି ଦେଇ ତୁମେ ନିଜକୁ ଖୁବ୍ ବୀର ବୋଲି ମନେକରୁଛ । କିନ୍ତୁ ତା'ପୂର୍ବରୁ ଜାଣିରଖିବା ଉଚିତ ଯେ ତୁମଠାରୁ ସହସ୍ର ଗୁଣରେ ଶକ୍ତିଶାଳୀ ଏହି ପର୍ଶୁରାମ ଏକଦା ସମସ୍ତ ଧରଣୀକୁ କ୍ଷତ୍ରିୟଶୂନ୍ୟ କରିପାରିଥିଲା । ଯୋଗଧ୍ୟାନ ପାଇଁ ମୁଁ ସହସ୍ର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିବାରେ ନିମଗ୍ନ ଥିବା ଅବସରରେ ତୁମେ କ୍ଷତ୍ରିୟମାନେ ପୁଣି ପୃଥିବୀରେ ନିଜକୁ ରାଜା ରୂପେ ପ୍ରତିଷ୍ଠା କରାଇ ନେଇଛ । ଅବଶ୍ୟ କ୍ଷତ୍ରିୟମାନେ ହିଁ ରାଜ୍ୟ ଶାସନର ଯୋଗ୍ୟ । ତଥାପି ମନେହୁଏ ରାଜସିଂହାସନରେ ଅଭିଷିକ୍ତ ହେବାପରେ ପୁଣି ତୁମର ଗର୍ବ ଓ ଉଦ୍ଧତପଣିଆ ବଢ଼ିଯାଇଛି । ତା ନହେଲେ ମୋ ଆଶ୍ରମର ଶାନ୍ତି ନଷ୍ଟ କରିବା ପାଇଁ ତୁମେମାନେ ସାହସ କରିନଥାନ୍ତ ।"

ରାମଙ୍କ କନିଷ୍ଠ ଭାଇ ଲକ୍ଷ୍ମଣ ଏଥିରେ ରାଗିଯାଇ କହିଲେ—"ଆପଣ ଜଣେ ବ୍ରାହ୍ମଣ ଆଉ ତପସ୍ୱୀ ବୋଲି ନିଜକୁ କହୁଛନ୍ତି ଅଥଚ କ୍ରୋଧ ରୂପକ ବଦ୍‌ଗୁଣ ଆପଣଙ୍କୁ ଅନ୍ଧ କରି ଦେଇଛି । ଯଦି ନିଜକୁ ଖୁବ୍ ବୀର ବୋଲି ମନେ କରୁଥାଅ ମୋ ସହିତ ଯୁଦ୍ଧ କରି ବଳର ପରୀକ୍ଷା ନେଇପାର ।"

ପରଶୁରାମ ଗର୍ଜନ କରି ଉଠିଲେ—"ରେ ରେ ଶିଶୁ! ଦେଖୁଛି କ୍ଷତ୍ରୀହନ୍ତା ପରଶୁରାମଙ୍କୁ ସାମାନ୍ୟ ବ୍ରାହ୍ମଣ ଭାବି ତୁ ଅସମ୍ମାନ ପ୍ରଦର୍ଶନ କରୁଛୁ। ଯୁଦ୍ଧର ଆହ୍ୱାନ ଦେଉଛୁ ? ଏହି ବୈଷ୍ଣବ ଧନୁରେ ଗୋଟିଏ ମାତ୍ର ସ୍ୱର୍ଣ୍ଣବାଣର କ୍ଷେପଣ କଲେ ନିମିଷକ ମଧ୍ୟରେ ତୋର ବିଶ୍ୱ ଜଳି ପୋଡ଼ି ଭସ୍ମ ହୋଇଯିବ। ତପସ୍ୟା କରି ନିଜ ଅଙ୍ଗକୁ ମୁଁ ଶୁଦ୍ଧପୂତ କରିଥିବାରୁ ନରହତ୍ୟା କରିବା ପାଇଁ ସ୍ୱଚ୍ଛନ୍ଦ ନଥିଲି ତୁ ଛୋଟବେଳୁ ଏ ଧନୁର୍ବାଣକୁ ବିଦାୟ ଦେଇ ଯାଇଥିଲି। ଛୋଟ ଛୋକର ଏତେ ଅହଂକାର କେବେ ଯୁଦ୍ଧରେ ପ୍ରୟୋଜନ ନାହିଁ ଏହି ବୈଷ୍ଣବ ଧନୁକୁ ଟିକିଏ ଉଠାଇ ଦେଖିନେ" ଧନୁ ବଢ଼ାଇ ଦେଲେ। ଲକ୍ଷ୍ମଣ ଧନୁ ଧରିବା ପାଇଁ ଆସୁଥିଲେ ମାତ୍ର ରାମ ତାଙ୍କୁ ବାରଣ କରି ଆଗକୁ ଆସି କୋମଳ ସ୍ୱରରେ କହିଲେ—"ଅବୁଝକୁ କ୍ଷମା ଗୁଣରେ କ୍ଷମା କରନ୍ତୁ ଭୃଗୁକୁଳ ମଣ୍ଡନକାରୀ ପରଶୁରାମ। ସେ ଆପଣଙ୍କ ମହିମା ଜାଣିନାହିଁ। ଆପଣଙ୍କ ଇଚ୍ଛା ମୁଁ ପୂରଣ କରିବି। ଭୃଗୁପତି ଦୟା ପୂର୍ବକ ଥରେ ମୋତେ ପ୍ରଦାନ କରନ୍ତୁ।"

ପରଶୁରାମ ସଙ୍ଗେ ସଙ୍ଗେ ରାମଚନ୍ଦ୍ରଙ୍କୁ ବୈଷ୍ଣବଧନୁ ବଢ଼ାଇ ଦେଲେ। ରାମଚନ୍ଦ୍ର ଧନୁ ଗ୍ରହଣ କରିବା ସମୟରେ ପରଶୁରାମଙ୍କଠାରୁ ବିଷ୍ଣୁ କଳା ହରଣ କରିନେଲେ ଏବଂ ଧନୁରେ ଗୁଣଦେଇ ଶର ସ୍ଥାପନ କରି କହିଲେ—"ହେ ମହାତ୍ମା। କହନ୍ତୁ ଏହି ଅମୋଘ ଶରଟି ମୁଁ କି ଉଦ୍ଦେଶ୍ୟରେ ମାରିବି ଆପଣ ତ ଅବଧ ବ୍ରାହ୍ମଣ, ତପୋବଳ ନିର୍ଦ୍ଦୋଷୀ ଧର୍ମଜ୍ଞୀ, ଆକାଶରେ ଦେବଗଣ ଅଛନ୍ତି ?"

ପରଶୁରାମ ରାମଙ୍କର ଶକ୍ତିଦେଖି ପ୍ରବୁଦ୍ଧ ହୋଇଗଲେ। ସେ ଦେଖିଲେ ଧନୁଧାରୀ ରାମଚନ୍ଦ୍ରଙ୍କ ସ୍ଥାନରେ ଉଭା ହୋଇଛନ୍ତି ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରୀ ସ୍ୱୟଂ ଭଗବାନ ବିଷ୍ଣୁ। ସେ କରଯୋଡ଼ି ପ୍ରାର୍ଥନା କଲେ—"ହେ ଭଗବାନ! ଆପଣଙ୍କ ସ୍ୱରୂପ ଦର୍ଶନ କରିବାରୁ ମନରୁ ମୋର ମାୟାପଟଳ ହଟିଯାଇଛି। ମୁଁ ଜାଣି ପାରିଛି ଆପଣ ସ୍ୱୟଂ ନାରାୟଣଙ୍କ ସପ୍ତମ ଅବତାର ପୁରୁଷୋତ୍ତମ ରାମଚନ୍ଦ୍ର। ରାବଣ, କୁମ୍ଭକର୍ଣ୍ଣ ପ୍ରଭୃତି ରାକ୍ଷସମାନଙ୍କ ବିନାଶ ପାଇଁ ଆପଣଙ୍କ ଜନ୍ମ। ମୋର ଷଷ୍ଠ ଅବତାର କାର୍ଯ୍ୟ ସମାପ୍ତ ହୋଇଛି। ଧରିଥିବା ଶରଟି ମୋତେ କ୍ଷେପଣ କରନ୍ତୁ ପ୍ରଭୁ। ମୁଁ ଶରୀର ତ୍ୟାଗ କରି ବୈକୁଣ୍ଠବିହାରୀଙ୍କ ଜ୍ୟୋତିରେ ଲୀନ ହୋଇଯିବି। ରାମଚନ୍ଦ୍ର କହିଲେ—"ନା' ମହାତ୍ମା ପରଶୁରାମ! ଏ ଶର କ୍ଷେପଣ କଲେ ମୁଁ ବ୍ରହ୍ମହତ୍ୟା ପାପରେ ଦୂଷିତ ହେବି। ବରଂ ଏହାକୁ ମୁଁ ଭାରତର ପଶ୍ଚିମ ପଟକୁ କ୍ଷେପଣ କରୁଛି। ଏହା ଜନଶୂନ୍ୟ ଅଞ୍ଚଳ ମରୁଭୂମିରେ ପତିତ ହେବ ଓ କାହାର ଅନିଷ୍ଟ ସାଧନ କରିବ ନାହିଁ। ଆପଣଙ୍କ ଅବତାର ଶେଷ ହୋଇମଧ୍ୟ ହୋଇନାହିଁ କହିଲେ ରାମ। ଆପଣ ବର୍ତ୍ତମାନ ପୂଣ୍ୟ ଭୂମି ଉତ୍କଳର ମହେନ୍ଦ୍ର ପର୍ବତକୁ ଗମନ କରନ୍ତୁ। ବିଶ୍ୱକଲ୍ୟାଣ କାମନାରେ ସେଠାରେ ଆପଣ ଯୋଗଧ୍ୟାନରେ ପ୍ରବୃତ୍ତ ହୁଅନ୍ତୁ। ଦ୍ୱାପର ଯୁଗରେ ସୂର୍ଯ୍ୟପୁତ୍ର କର୍ଣ୍ଣଙ୍କୁ ଆପଣ ଶିଷ୍ୟରୂପେ ସ୍ୱୀକାର କରି ସକଳ ଶାସ୍ତ୍ରବିଦ୍ୟା ପ୍ରଦାନ କରିବେ।

ପୁନଶ୍ଚ ଅମ୍ବା ନାମକ କନ୍ୟା ଜନ୍ମରେ ମହାରଥୀ ଭୀଷ୍ମଙ୍କ ସହ ଆପଣଙ୍କର ଯୁଦ୍ଧ ହେବ। ବଧି ନଦେଇଁଛ । ଯୁଦ୍ଧପରେ ଆପଣ ଯୋଗବଳ ମାଧ୍ୟମରେ ଶରୀର ତ୍ୟାଗ କରିବା ପାଇଁ ସକ୍ଷମ ହେବେ ।”

ପରଶୁରାମ କହିଲେ—“ଭଗବାନ ! ଆପଣଙ୍କ କଥାକୁ ସ୍ୱୀକାର କରି ମୁଁ ମହେନ୍ଦ୍ର ପର୍ବତକୁ ଚାଲିବି ।” ଦଶରଥ ଲକ୍ଷ୍ମଣ ଓ ଅନ୍ୟମାନେ ପରଶୁରାମଙ୍କୁ ଯଥାମାନ୍ୟ ଜଣାଇ ଅଭିସମ୍ଭାଷା କଲେ । ପରଶୁରାମ ସମସ୍ତଙ୍କୁ ଆଶୀର୍ବାଦ ଦେଇ ପ୍ରସ୍ଥାନ କଲେ ।

ଏହିଭଳି ଭାବରେ ଭଗବାନଙ୍କ ଷଷ୍ଠ ଅବତାର ଲୀଳା ଦ୍ୱାପର ଯୁଗରେ ଶେଷ ହୋଇଥିଲା ।






ବରାହ ଏବଂ ନୃସିଂହ ଅବତାରରେ ଭଗବାନ ବିଷ୍ଣୁ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷକୁ ବଧ କରିବା ପରେ ବିଷ୍ଣୁଙ୍କ ଦ୍ୱାରପାଳ ଜୟ ଓ ବିଜୟର ପ୍ରଥମ ଅଭିଶାପ ଜନ୍ମ ଶେଷ ହେଲା । ଦ୍ୱିତୀୟଥର ସେମାନେ ରାବଣ ଓ କୁମ୍ଭକର୍ଣ୍ଣ ରୂପେ ଜନ୍ମ ନେଲେ । ତାଙ୍କର ପିତା-ଥିଲେ ମହର୍ଷି ବିଶ୍ରବା ଏବଂ ମାତା କୈକେଶି । ରାବଣ ଓ କୁମ୍ଭକର୍ଣ୍ଣଙ୍କ ଅନ୍ୟ ଭାଇଙ୍କ ନାମ ହେଲା ବିଭୀଷଣ ଏବଂ ଭଉଣୀର ନାମ ହେଲା ସୂର୍ପଣଖା । ଏମାନଙ୍କ ଭିତରୁ ବିଭୀଷଣ ଥିଲେ ଧାର୍ମିକ ନୀତିବାନ୍ । ସରଳ ଏବଂ ଦୟା ଓ କ୍ଷମା ଗୁଣରେ ପରିପୂର୍ଣ୍ଣ ମାତ୍ର ରାବଣ, କୁମ୍ଭକର୍ଣ୍ଣ ଓ ସୂର୍ପଣଖା ଠାରେ ଭରି ରହିଥିଲା ସମସ୍ତ ପ୍ରକାର ରାକ୍ଷସ ଗୁଣ । ସେମାନେ ଥିଲେ ନିର୍ଦ୍ଦୟ ଓ ଅତ୍ୟାଚାରୀ । ରାବଣର ଥିଲା ଦଶଟି ମୁଣ୍ଡ । କୁମ୍ଭକର୍ଣ୍ଣର ଶରୀର ଥିଲା ଖୁବ୍ ବିରାଟ ; କିନ୍ତୁ ବିଭୀଷଣ ଥିଲେ ଠିକ୍ ମଣିଷ ଭଳି ।

ରାବଣ ହଜାର ଶତ ବର୍ଷ ପାଇଁ ଘୋର ତପସ୍ୟା କଲା ଓ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲା । କୁମ୍ଭକର୍ଣ୍ଣ ମଧ୍ୟ ତପସ୍ୟା କରୁଥାଏ । ରାବଣ ବ୍ରହ୍ମାଙ୍କ ଠାରୁ ଅମରବର ପାଇବା ପାଇଁ ପ୍ରାର୍ଥନା କଲା । ମାତ୍ର ବ୍ରହ୍ମା ସେଥିରେ ଅକ୍ଷମତା ପ୍ରକାଶ କଲେ । ସେଠୁ ରାବଣ

ପ୍ରାର୍ଥନା କଲା—"ପ୍ରଭୁ ମୋତେ ଦୀର୍ଘାୟୁ କରନ୍ତୁ ଏବଂ ମୋର ମୃତ୍ୟୁ କୌଣସି ଦେବତା, ଯକ୍ଷ, ରାକ୍ଷସ ଦ୍ୱାରା ନହେଉ।" ବ୍ରହ୍ମା କହିଲେ "ତଥାସ୍ତୁ"। କୁମ୍ଭକର୍ଣ୍ଣ ନିଜ ପାଇଁ ଇନ୍ଦ୍ରାସନ ମାଗିବା ଇଚ୍ଛାରେ ତପସ୍ୟା କରୁଥିଲା। କିନ୍ତୁ ଇନ୍ଦ୍ର ଏହା ଜାଣିପାରି ମାତା ସରସ୍ୱତୀଙ୍କୁ ଅନୁରୋଧ କଲେ କୁମ୍ଭକର୍ଣ୍ଣ କଣ୍ଠରେ ବସି ଇନ୍ଦ୍ରାସନ ବଦଳେ ନିଦ୍ରାସନ ମାଗିବା ପାଇଁ ପ୍ରେରଣା ଦେବାକୁ। ତାହାହିଁ ହେଲା। କୁମ୍ଭକର୍ଣ୍ଣ ବ୍ରହ୍ମାଙ୍କୁ ନିଦ୍ରାସନ ମାଗି ନେଲା। ବ୍ରହ୍ମା ତଥାସ୍ତୁ କହିବା ପରେ କୁମ୍ଭକର୍ଣ୍ଣ ନିଜର ଭୁଲ ବୁଝି ପାରିଲା ମାତ୍ର ସେତେବେଳକୁ ସବୁ ସରି ଯାଇଥିଲା। ରାବଣ ନିଜ ଭାଇ ପାଇଁ ବ୍ରହ୍ମାଙ୍କ ନିକଟରେ ଅନୁନୟ କଲା ଯେ— "ନିଦ୍ରାସନ ଯୋଗୁଁ କୁମ୍ଭକର୍ଣ୍ଣର ଜନ୍ମ ବୃଥା ହୋଇଯିବ କାରଣ ସେ କେବଳ ମୃତ୍ୟୁ ପର୍ଯ୍ୟନ୍ତ ଶୋଇ ରହିବ। ତେଣୁ ତାକୁ ଅନ୍ତତଃ ଖାଇବା ପିଇବା ଓ ବୁଲିବା ବୁଲିବା ପାଇଁ କିଛି ସମୟ ଦିଅନ୍ତୁ।" ବ୍ରହ୍ମା କହିଲେ—"ମୋର ବର ବୃଥା ନହେବାର ନୁହେଁ ତେବେ କୁମ୍ଭକର୍ଣ୍ଣ ବର୍ଷକରେ ଛଅମାସ ଶୋଇରହିବ ଏବଂ ଆଉଛଅମାସ ଜାଗ୍ରତ ରହି ଆହାର ବିହାର କରିବା ପରେ ପୁଣି ଛଅମାସ ଶୋଇବ। କିନ୍ତୁ ଅସମୟରେ ତା'ର ନିଦ୍ରାଭଙ୍ଗ ହେଲେ ସେ ଯୁଦ୍ଧରେ ମୃତ୍ୟୁ ବରଣ କରିବ। ଜାଗ୍ରତ ସମୟରେ ସେ ଅଜେୟ ହୋଇ ରହିବ।"

ରାବଣ ବ୍ରହ୍ମାଙ୍କ ବରରେ ବଳବାନ ହେବାପରେ ପୃଥିବୀରେ ପୁଣି ରାକ୍ଷସ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ମନସ୍ଥ କଲା। ସେତେବେଳକୁ ସମୁଦ୍ର ଭିତରେ ଥିବା ଲଙ୍କା ଦ୍ୱୀପରେ ରହୁଥାନ୍ତି କୁବେର। ସେ ରାବଣର ବିମାତା ଭାଇ। ରାବଣ କୁବେରଙ୍କୁ ନିଜ ବାହୁ ବଳରେ ଲଙ୍କାରୁ ତଡ଼ି ଦେଲା ଏବଂ ସେଠାରେ ନିଜେ ରାଜ୍ୟ ସ୍ଥାପନ କଲା। ସମସ୍ତ ରାକ୍ଷସମାନଙ୍କୁ ଏକତ୍ରିତ କରି ଲଙ୍କାରେ ରଖାଇଲା। ରାବଣ; ମୟ ଦାନବଙ୍କ ଝିଅ ମନ୍ଦୋଦରୀଙ୍କୁ ବିବାହ କଲା। ମନ୍ଦୋଦରୀ ଥିଲେ ଧର୍ମ ପରାୟଣା ନାରୀ। ସେ ରାବଣକୁ ସତ୍ ମାର୍ଗରେ ଯିବା ପାଇଁ ପରାମର୍ଶ ଦେଉଥାନ୍ତି। ମାତ୍ର ରାବଣ କିଛି ଶୁଣୁନଥାଏ। ଏଥର ସେ ରାକ୍ଷସମାନଙ୍କୁ ଏକାଠି କରି ଦଳବଳସହରେ ବାହାରିଲା। ଦେବତାମାନେ ରାକ୍ଷସମାନଙ୍କର ଥିଲେ ପରମଶତ୍ରୁ। ରାବଣ ସ୍ୱର୍ଗପୁର ଆକ୍ରମଣ କଲା ଓ ଅନାୟାସରେ ବିଜୟ ଲାଭ କଲା। ସେ ଦେବତାମାନଙ୍କୁ ଆଣି ନିଜର ଦାସ ଦାସୀ ରୂପେ ସେବକ ନିଯୁକ୍ତ କଲା। ଦେବତାମାନଙ୍କ ରଥ ପୁଷ୍ପକ ଯାନକୁ ନିଜ ନିକଟରେ ରଖିଲା। ପୁଷ୍ପକ ଯାନ ସଚରାଚର ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଭ୍ରମଣ କରିପାରୁଥିଲା।

ରାବଣର ଗର୍ବ ଦିନକୁ ଦିନ ବଢ଼ିଗଲା। ଥରେ ସେ ଶିବଙ୍କ ଆସ୍ଥାନ କୈଳାସ ପର୍ବତ ଉପାଡ଼ି ଦଶମୁଣ୍ଡରେ ଧରିଲା। ଭଗବାନ ଶିବ ରାବଣର ଏପରି କର୍ମ ଦେଖି ନିଜର ପାଦକୁ ସାମାନ୍ୟ ଚାପି ଦେଲେ। ଫଳରେ କୈଳାସ ପର୍ବତ ରାବଣକୁ ଚାପି ଦେଲା। ରାବଣ ଚିତ୍କାର କଲା ଏବଂ ଶିବଙ୍କୁ ଆକୁଳରେ ସ୍ତୋତ୍ର ବୋଲି ଉଦ୍ଧାର ପାଇଁ ପ୍ରାର୍ଥନା କଲା। ଶିବ ରାବଣର ସ୍ତୁତିରେ ପ୍ରସନ୍ନ ହୋଇଗଲେ ଏବଂ ତାଙ୍କ ଇଚ୍ଛାରେ କୈଳାସ ପର୍ବତ କିଞ୍ଚିତ୍ ଉପରକୁ ଉଠିଯିବାରୁ ରାବଣ ପ୍ରାଣବିକଳରେ ବାହାରି ଆସିଲା। ଶିବଙ୍କ

ପାଦତଳେ ପଡ଼ି କ୍ଷମା ପ୍ରାର୍ଥନା କଲା । ମହାଦେବ ରାବଣଙ୍କୁ ଦିଗ୍‌ବିଜୟୀ ହେବାପାଇଁ ବର ଦେବା ସଙ୍ଗେ ସଙ୍ଗେ ଅନେକ ଦିବ୍ୟାସ୍ତ୍ର ଦେଲେ । ରାବଣ ସେହି ଦିନଠାରୁ ହେଲା ପରମ ଶିବ ଭକ୍ତ ।

ରାବଣ ଦିଗ୍‌ବିଜୟ ପାଇଁ ପାତାଳରେ ପହଞ୍ଚିଲା । ମାତ୍ର ସେଠାରେ ବଳୀଙ୍କ ଦ୍ୱାରପାଳରୂପେ ବାମନ ବିଷ୍ଣୁଙ୍କ ନଖ ଆଘାତରେ ଅନେକ ଯୋଜନ ପର୍ଯ୍ୟନ୍ତ ଛିଟିକି ପଡ଼ିଲା । ପରେ ବଳୀ ରାବଣଙ୍କୁ ଆଦର କରି ପାଛୋଟି ନେଲେ ଏବଂ ପାତାଳରେ ଥିବା ରାକ୍ଷସମାନଙ୍କ ବଂଶ ସମ୍ପର୍କରେ ରାବଣଙ୍କୁ ବୁଝାଇଦେଲେ । ରାବଣ ନିଜ ବଂଶର ସପକ୍ଷୀୟ ମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ଫେରି ଆସିଲା । ଏପରି ସମସ୍ତ ସ୍ୱର୍ଗ, ମର୍ତ୍ତ୍ୟଲୋକର ବିନ୍ଧ୍ୟାଞ୍ଚଳର ଦକ୍ଷିଣଭାଗ ପର୍ଯ୍ୟନ୍ତ ଓ ପାତାଳ ପୁରରେ ରାବଣର ଆଧିପତ୍ୟ ବୃଦ୍ଧି ପାଇଲା । ରାବଣର ଛତ୍ରଛାୟା ତଳେ ରାକ୍ଷସମାନେ ଖୁବ୍ ଉଦ୍ଧତ ହୋଇ ପଡ଼ିଲେ । ଆର୍ଯ୍ୟାବର୍ତ୍ତରେ ମୁନି ଋଷିମାନଙ୍କ ଦ୍ୱାରା ଯେଉଁସବୁ ହୋମ ଯଜ୍ଞ ହେଉଥାଏ, ରାକ୍ଷସମାନେ ସେଥିରେ ବାଧା ଘଟାଇବାରେ ଲାଗିଲେ । ଆଶ୍ରମରେ ନିଆଁ ଲଗାଇଦେବା, ଋଷିମାନଙ୍କୁ ନିର୍ଯ୍ୟାତନା ଦେବା, ଗ୍ରାମ ଓ ସହରମାନ ଲୁଣ୍ଠନ କରିବା, ନର ଓ ଗୋରୁ ଗାଈମାନଙ୍କୁ ଖାଇଯିବା ପ୍ରଭୃତି ନାନାପ୍ରକାର ଅପକର୍ମ ସେମାନେ ନିର୍ଭୟରେ କରିଯାଉଥାନ୍ତି । ଫଳେ ଅବସ୍ଥା ଅସମ୍ଭାଳ ହୋଇ ଉଠିଲା । ରାକ୍ଷସମାନଙ୍କ ଅତ୍ୟାଚାରରେ ପୃଥିବୀରେ ତ୍ରାହି ତ୍ରାହି ଡାକ ଶୁଭିଲା ।

ରାବଣର ଅତ୍ୟାଚାର ମଧ୍ୟ କ୍ରମାଗତ ଭାବେ ବୃଦ୍ଧି ପାଉଥିଲା । ସୁନ୍ଦରୀ ସ୍ତ୍ରୀମାନଙ୍କୁ ଧରିନେଇ ସେମାନଙ୍କୁ ନିଜ ରାଣୀ କରି ରଖିବାରେ ରାବଣ ପାଉଥିଲା ଅସୀମ ଆନନ୍ଦ । ଅଥଚ ଏହି ନାରୀ ହରଣ ପାପ ଯୋଗୁଁ ଯେତେ ଶକ୍ତିଶାଳୀ ହୋଇ ମଧ୍ୟ ଛପନ ଗଣ୍ଡା ଯୁଗ ପର୍ଯ୍ୟନ୍ତ ବଞ୍ଚିବାକୁ ବରପାଇ ମାତ୍ର ଚଉଦ ଗଣ୍ଡା ଯୁଗ ଭୋଗକରି ରାବଣ ବିନାଶ ପ୍ରାପ୍ତ ହୋଇଥିଲା ।

ସେହି ସମୟରେ କୁଶଧ୍ୱଜ ନାମକ ଜଣେ ଋଷି ବେଦପାଠ କରି ଗୋଟିଏ ପବିତ୍ର କନ୍ୟା ଲାଭ କଲେ । ସେ କନ୍ୟାର ନାମ ଦେଲେ ବେଦବତୀ । ବେଦବତୀ ଯେପରିକି ସୁନ୍ଦରୀ ସେହିପରି ଗୁଣୀ । ମହାଲକ୍ଷ୍ମୀଙ୍କ କଳାରେ ସେ ଜାତ ହୋଇଥିବାରୁ ବିଷ୍ଣୁଙ୍କୁ ପତିରୂପେ ପାଇବା ପାଇଁ ସେ ପିଲାଦିନରୁ ତପସ୍ୟା କରୁଥାନ୍ତି । ଯୌବନ ପ୍ରାପ୍ତି ପରେ ବେଦବତୀ ହୋଇଉଠିଲେ ଅସମାନ୍ୟ ସୁନ୍ଦରୀ । ସେ ତପସ୍ୟା କରୁଥିବା ସମୟରେ ରାବଣ ପୁଷ୍ପକ ଯାନରେ ଆକାଶରୁ ତାଙ୍କର ରୂପ ପ୍ରତି ଆକୃଷ୍ଟ ହେଲା । ରଥରୁ ତଳକୁ ଓହ୍ଲାଇ ସେ ବେଦବତୀଙ୍କୁ ନିଜର ରାଣୀ ହେବା ପାଇଁ ଅନୁରୋଧ କଲା । ମାତ୍ର ବେଦବତୀ ରାବଣକୁ ତିରସ୍କାର କରି ସେ ସ୍ଥାନ ଛାଡ଼ି ଯିବାପାଇଁ କହିଲେ । କିନ୍ତୁ ରାବଣ ବେଦବତୀଙ୍କୁ ଲଙ୍କା ନେବାପାଇଁ ଜିଦ୍ ଧରି ବସିଲା ଓ ଶେଷରେ ବେଦବତୀଙ୍କ କେଶଧରି

ଟାଣିଲା । ତା'ର ଏପରି ଅଭଦ୍ର ଆଚରଣରେ ବେଦବତୀ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ "—–ରେ ଦୁଷ୍ଟମତି ରାବଣ ! ତୁ ମୋତେ ଛୁଇଁ ମୋ ଦେହକୁ ଅପବିତ୍ର କରିଥିବାରୁ ମୁଁ ମୋ ଦେହକୁ ଜାତ ବୈଷ୍ଣବ ଅଗ୍ନିରେ ନିଜକୁ ପାଉଁଶରେ ପରିଣତ କରୁଛି । କିନ୍ତୁ ମରିବା ପୂର୍ବରୁ ଅଭିଶାପ ଦେଇଯାଉଛି ଆସନ୍ତା ଜନ୍ମରେ ମୁଁ ସୀତା ରୂପେ ଜନ୍ମ ହୋଇ ରାମଚନ୍ଦ୍ର ରୂପି ବିଷ୍ଣୁଙ୍କ ପତ୍ନୀ ହେବି । ଆଉ ମୋତେ ହରଣ କରିବା ପାପ ଯୋଗୁଁ ତୋର ବିନାଶ ହେବ ।" ରାବଣ କ୍ରୁଦ୍ଧ ହୋଇ ଚୁହିଁ ରହିଥାଏ । ବେଦବତୀ ଯୋଗବଳରେ ନିଜ ଦେହରୁ ଅଗ୍ନି ବାହାର କରି ନିଜକୁ ଭସ୍ମ କରିଦେଲେ । ଦୁର୍ମତି ରାବଣ ମନ ଦୁଃଖରେ ଫେରି ଆସିଲା ।

ଆଉ ଥରେ ସ୍ୱର୍ଗ ପଥରେ ଯାଉଥିବା ସମୟରେ ରାବଣ ଅପ୍ସରା ରମ୍ଭାଙ୍କ ପ୍ରତି ବଳତ୍କାର କରିବାରୁ ସେ ଅଭିଶାପ ଦେଇଥିଲେ ଯେ ରାବଣ ଯଦି କୌଣସି ନାରୀର ଇଚ୍ଛା ବିରୁଦ୍ଧରେ ବଳତ୍କାର କରେ ତେବେ ତାହାର ମୁଣ୍ଡ ଖଣ୍ଡ ଖଣ୍ଡ ହୋଇଯିବ । ରାବଣ ସେହି ଦିନଠାରୁ କିଛିଟା ସଯତ୍ନ ହୋଇଗଲା । ନିଜ ଶୋଇବା ଘରେ ମଧ୍ୟ ଲେଖି ଟଙ୍ଗାଇ ଦେଲା "ସୀତା ହରଣ...ରାବଣ ମରଣ ।" ପ୍ରତିଦିନ ଏହା ପଢ଼ି ସେ କ୍ରମଶଃ ସତର୍କ ହୋଇ ଯାଉଥାଏ । ହେଲେ ଅତ୍ୟାଚାର ଓ ଅନ୍ୟାୟର ମାତ୍ରା ବଢ଼ି ଚାଲିଥାଏ । ରାବଣର ସେବା କରି ଦେବତାମାନେ ଅଧୈର୍ଯ୍ୟ ହୋଇ ପଡିଲେ । ସେମାନେ ସମସ୍ତେ ଏକାଠି ହୋଇ ଭଗବାନ ବିଷ୍ଣୁଙ୍କୁ ଗୁହାରି ଜଣାଇଲେ । ଭଗବାନ ବିଷ୍ଣୁ ଦେବତାମାନଙ୍କ ଠାରୁ ଶୁଣିଲେ ଯେ ରାବଣ ସୂର୍ଯ୍ୟ ଦେବତାଙ୍କୁ ନିଜର ଦ୍ୱାରପାଳ, ଚନ୍ଦ୍ର ଦେବତାଙ୍କୁ ଛତ୍ରଧର, ଅଗ୍ନି ଦେବତାଙ୍କୁ ପାଚକ, ବରୁଣଙ୍କୁ ମିଠା ପାଣି ଯୋଗାଇବା ପାଇଁ, ବସୁମତି ମାତାଙ୍କୁ ଘର ସଫା କରିବା ଦାୟିତ୍ୱ, କୁବେରଙ୍କୁ ଧୋବା କାମ, ପବନ ଦେବତାଙ୍କୁ ଆଲଟ ଚାମର ଚଲାଇବା କାମ, ଯମ ଦେବତାଙ୍କୁ ନିଜ ଦେହରେ ତେଲମାଲିସ୍ କରିବା କାମ, ଅପ୍ସରା ମାନଙ୍କୁ ନୃତ୍ୟାଙ୍ଗନା ରୂପେ ଖଟାଉଛି; ସେ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ବ୍ରହ୍ମା କହିଲେ ଯେ ରାବଣକୁ ବର ଦେଇ ଶକ୍ତିମାନ୍ କରିଛନ୍ତି ସତ ହେଲେ ରାବଣ ତାଙ୍କୁ ମଧ୍ୟ ସମ୍ମାନ ଦେଉନାହିଁ ଏବଂ ନିଜ ଲଙ୍କାରେ ଅବଧାନ କାର୍ଯ୍ୟରେ ନିଯୁକ୍ତ କରିଛି । ବିଷ୍ଣୁ ପଚାରିଲେ ତେବେ ରାବଣର ମୁକ୍ତି ଭେଦ କ'ଣ ?"

ବ୍ରହ୍ମା କହିଲେ—"ରାବଣ ବର ପାଇଛି ଦେବ, ଦାନବ, ଯକ୍ଷ ବା ଗନ୍ଧର୍ବମାନଙ୍କ ଦ୍ୱାରା ଅବଧ୍ୟ ମାତ୍ର ମୁଁ ମଣିଷ ହାତରେ ତା'ର ମୃତ୍ୟୁ ବିଧାନ କରିଛି । ତେଣୁ ଆପଣଙ୍କୁ ପୁଣି ଥରେ ମଣିଷ ରୂପରେ ଅବତାର ଗ୍ରହଣ କରିବାକୁ ହେବ ।"

ଭଗବାନ ବିଷ୍ଣୁ କହିଲେ—"ଠିକ୍ ଅଛି । ମୁଁ ଗଙ୍ଗାନଦୀର ଉତ୍ତର ତଟରେ ଥିବା କୋଶଳ ରାଜ୍ୟର ରାଜଧାନୀ ଅଯୋଧ୍ୟାରେ ସୂର୍ଯ୍ୟ ବଂଶର ରାଜା ଦଶରଥଙ୍କ ପୁତ୍ର ରୂପେ

ଜନ୍ମ ଗ୍ରହଣ କରିବ । ମୋ ସହିତ ଶଙ୍ଖ, ପଦ୍ମ ଓ ଶେଷନାଗ ଅନନ୍ତ ମଧ୍ୟ ମୋ ଭାଇ ରୂପେ ଜନ୍ମ ଗ୍ରହଣ କରିବେ । କେବଳ ସେତିକି ନୁହେଁ ସମସ୍ତ ଦେବ ଦେବୀ ମଧ୍ୟ ନର ଓ ବାନର ରୂପେ ଜନ୍ମ ନିଅନ୍ତୁ । ସେମାନେ ମୋତେ ସବୁ କ୍ଷେତ୍ରରେ ସାହାଯ୍ୟ କରିବେ । ମୁଁ ମୋର ମାନବଲୀଳା ପ୍ରକଟ କରି ଅତ୍ୟାଚାରୀ ରାବଣ ଓ କୁମ୍ଭକର୍ଣ୍ଣଙ୍କୁ ବଧ କରିବ ଏବଂ ବିଶ୍ୱରେ ସୁଖ ଶାନ୍ତି ଫେରାଇ ଆଣିବ ।"

ଦେବତାମାନେ ବିଷ୍ଣୁ ଭଗବାନଙ୍କ ଜୟନାଦ କରି ଫେରିଗଲେ । ବ୍ରହ୍ମାଙ୍କ ନିର୍ଦ୍ଦେଶରେ ସେମାନେ ବାନରହୋଇ ଜନ୍ମ ହେଲେ । କିଷ୍କିନ୍ଧ୍ୟା ନାମକ ସ୍ଥାନରେ ବାନରମାନଙ୍କ ରାଜା ଥାନ୍ତି ବାଲି ଓ ତାଙ୍କର ସାନ ଭାଇ ସୁଗ୍ରୀବ । ହନୁମାନ, ନଳ, ନୀଳ ପ୍ରଭୃତି ବାନରମାନେ ଦେବ ଅଂଶରେ ଜାତ ହୋଇ ସେହି ବାନର ରାଜ୍ୟରେ କାଳାତିପାତ କରୁଥାନ୍ତି ।

ପବିତ୍ର ସୂର୍ଯ୍ୟ ବଂଶରେ ସେତେବେଳେ ରାଜା ଥାନ୍ତି ଦଶରଥ । ସେ ଯେପରି ପରାକ୍ରମୀ ସେହିପରି ବୀର । ତାଙ୍କର ରଥ ଦଶ ଦିଗକୁ ନିମିଷକ ମଧ୍ୟରେ ଯାଇ ପାରୁଥିଲା । ତାଙ୍କ ବଂଶର ଦିଲୀପ, ରଘୁ, ଅଜ ପ୍ରଭୃତିଙ୍କ ବୀରତ୍ୱ ଓ ଆଦର୍ଶ ପ୍ରତି ଦେବତାମାନେ ମଧ୍ୟ ସମ୍ମାନ ପ୍ରଦର୍ଶନ କରୁଥିଲେ । ଦଶରଥ ଥିଲେ ଅଜଙ୍କର ପୁତ୍ର । ଦଶରଥଙ୍କ ଅସାଧାରଣ ବୀରତ୍ୱ ଯୋଗୁଁ ଦରକାର ବେଳେ ଦେବତାମାନଙ୍କ ରାଜା ଇନ୍ଦ୍ର ଦଶରଥଙ୍କୁ ନିଜ ସହାୟତା ନିମନ୍ତେ ଯୁଦ୍ଧ ବେଳେ ଡାକି ନେଉଥିଲେ ।

ଦଶରଥଙ୍କର ଥିଲେ ତିନିଗୋଟି ରାଣୀ । ସେମାନେ ହେଲେ କୌଶଲ୍ୟା, କୈକେୟୀ ଏବଂ ସୁମିତ୍ରା । ରାଜା ଦଶରଥ କୈକେୟୀଙ୍କୁ ବିଶେଷ ଭଲ ପାଉଥିଲେ । ଥରେ ରାକ୍ଷସମାନଙ୍କ ସହିତ ଇନ୍ଦ୍ର ଯୁଦ୍ଧ କରୁଥିବା ବେଳେ ସାହାଯ୍ୟ ପାଇଁ ଦଶରଥଙ୍କୁ ଡକାଇ ପଠାଇଲେ । ରାଜା ଦଶରଥ ସଙ୍ଗରେ କୈକେୟୀଙ୍କୁ ନେଇ ଯାଇଥିଲେ । ଭୟଙ୍କର ଯୁଦ୍ଧ ଚାଲିଥିବା ବେଳେ ଦଶରଥଙ୍କ ରଥରୁ କଲଣୀ ଖସି ଯିବାରୁ ଗୋଟିଏ ଚକ ଖସିବାରେ ଲାଗିଲା । ବୁଦ୍ଧିମତୀ କୈକେୟୀ ନିଜର ଆଙ୍ଗୁଠିକୁ କଲଣୀ ରୂପେ ବ୍ୟବହାର କରି ଚକକୁ ଅଟକାଇ ରଖିଲେ । ଏଥିପାଇଁ ତାଙ୍କୁ ଦାରୁଣ ଯନ୍ତ୍ରଣା ସହିବାକୁ ହୋଇଥିଲା ଓ ସେ ଆହତ ହୋଇ ଯାଇଥିଲେ । ଯୁଦ୍ଧ ଶେଷରେ ରାଣୀଙ୍କର ଏଭଳି ସମୟୋଚିତ ସାହସିକ କାର୍ଯ୍ୟରେ ଦଶରଥ ଅତ୍ୟନ୍ତ ଖୁସି ହୋଇ ତାଙ୍କୁ ଦୁଇଟି ବର ଯାଚିଲେ । କୈକେୟୀ କହିଲେ ଯେ ସମୟ ଆସିଲେ ନିଜ ଇଚ୍ଛା ଅନୁସାରେ ସେ ବର ଦୁଇଟି ମାଗିନେବେ ।

ଦଶରଥ ଥିଲେ ଯେଭଳି ବୀର ସେହିଭଳି ପ୍ରଜାପାଳକ । ଥରେ ବନ୍ୟହସ୍ତୀ ମାନେ ଗୋଟିଏ ଗ୍ରାମରେ ପଶି ଫସଲ ନଷ୍ଟ କରୁଥିବା ସମ୍ବାଦ ପାଇ ରାଜା ସେମାନଙ୍କୁ ଆୟତ୍ତ କରିବା ପାଇଁ ଯାଇଥିଲେ । ରାଜା ଥିଲେ ଶିକାର ପ୍ରିୟ ମଧ୍ୟ । ଶବ୍ଦଭେଦୀ ଶର

ଚଳାଇବାରେ ଦଶରଥ ଥିଲେ ପାରଙ୍ଗମ । ବଣ ଭିତରେ ଗୋଟିଏ ଜଳଧାର ନିକଟରେ ସେ ଧନୁ ଧରି ଅପେକ୍ଷା କଲେ । ଜଳପିଇବା ପାଇଁ ଆସୁଥିବା ହସ୍ତୀ ବା ଜାନୁଆରମାନଙ୍କୁ ଶିକାର କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଅନ୍ଧାର ଭିତରେ ସେ ଶୁଣି ପାରିଲେ କୌଣସି ହସ୍ତୀର ପାଣି ପିଇବା ଶବ୍ଦ । ସଙ୍ଗେ ସଙ୍ଗେ ସେ ଶବ୍ଦଭେଦୀ ଶର ମାରିଦେଲେ । ମାତ୍ର ପରକ୍ଷଣରେ ଏକ ବାଳକର ଚିତ୍କାର ଶୁଣି ସେ ଚମକି ପଡ଼ିଲେ ଏବଂ ଘଟଣା ସ୍ଥଳକୁ ଧାଇଁଲେ । ସେଠାରେ ଦେଖିଲେ ଋଷିପୁତ୍ରଟିଏ ଶରାଘାତରେ ପଡ଼ି ଛଟପଟ ହେଉଛି । ତାଠାରୁ ଶୁଣିଲେ ଯେ ସେ ହେଉଛି ଅନ୍ଧ ବାପା ମାଙ୍କ ଏକମାତ୍ର ପୁତ୍ର ଶ୍ରବଣ କୁମାର । ତୃଷାତୁର ବାପା ମା'ଙ୍କ ପାଇଁ ସେ ପାଣି ନେବାକୁ ଆସିଥିଲା । ଶ୍ରବଣ କୁମାର ସେଠି ମରିଗଲେ । ରାଜା ଦଶରଥ ପାଣି ଓ ଶ୍ରବଣଙ୍କ ମୃତ ଦେହ ନେଇ ଆଶ୍ରମକୁ ଗଲେ । ଅନ୍ଧ ଅନ୍ଧୁଣୀ ଶ୍ରବଣଙ୍କ ପିତା ମାତାଙ୍କୁ ପାଣି ପିଇବାକୁ ଦେଲେ ଏବଂ ସମସ୍ତ ଘଟଣା କହିଦେଲେ । ଅନ୍ଧ ଋଷି ତାଙ୍କ ପତ୍ନୀ ପୁତ୍ର ଶୋକରେ କାନ୍ଦିବାକୁ ଲାଗିଲେ । ରାଜା ଦଶରଥ ନିଜ କୃତ କର୍ମ ପାଇଁ ବାରମ୍ବାର କ୍ଷମା ଭିକ୍ଷା କରୁଥାନ୍ତି । ଅନ୍ଧ ଋଷିଙ୍କ ନିର୍ଦ୍ଦେଶରେ ଦଶରଥ ଚିତା ଜଳାଇ ଶ୍ରବଣ କୁମାରଙ୍କୁ ଦଗ୍ଧ କଲେ ; ଅନ୍ଧ ବାପା ମା ମଧ୍ୟ ସେହି ଚିତା-ନଳରେ ପ୍ରବେଶକଲେ ଏବଂ ଦଶରଥଙ୍କୁ ଅଭିଶାପ ଦେଇଗଲେ ଯେ ଦଶରଥ ମଧ୍ୟ ସେମାନଙ୍କ ଭଳି ମଲାବେଳକୁ ପୁତ୍ର ଶୋକରେ ମରିବେ ।

ଅନ୍ଧ ମୁନିଙ୍କ ଅଭିଶାପକୁ ଦଶରଥ ଆଶୀର୍ବାଦ ରୂପେ ଗ୍ରହଣ କରିନେଲେ । ଅସଲ କଥା ହେଲା ଯେ ପର୍ଯ୍ୟନ୍ତ ତାଙ୍କର କୌଣସି ସନ୍ତାନ ଜାତ ହୋଇନଥାନ୍ତି । ଋଷିଙ୍କ ଅଭିଶାପ ଅନୁସାରେ ନିଶ୍ଚୟ ସନ୍ତାନ ଜାତ ହେବ ବୋଲି ତାଙ୍କର ଦୃଢ଼ ଧାରଣା ହେଲା । ତାପରେ ରାଜା ଦଶରଥ କୁଳଗୁରୁ ବଶିଷ୍ଠଙ୍କୁ ଡ଼କାଇ ସନ୍ତାନଲାଭ ପାଇଁ ଧର୍ମକାର୍ଯ୍ୟ କରିବା ନିମନ୍ତେ ପରାମର୍ଶ ମାଗିଲେ । ତାଙ୍କ ପରାମର୍ଶରେ ଦଶରଥ ଆୟୋଜନ କଲେ ପୁତ୍ରେଷ୍ଟି ଯଜ୍ଞ । ଋଷ୍ୟଶୃଙ୍ଗ ନାମକ ଜଣେ ଖ୍ୟାତନାମା ମହର୍ଷିଙ୍କୁ ବରଣ କରି ଅଣାଗଲା ଋଷ୍ୟଶୃଙ୍ଗଙ୍କ ମନ୍ତ୍ରାହୁତ ଫଳରେ ଯଜ୍ଞ ପୁରୁଷ ବାହାରି ରାଜା ଦଶରଥଙ୍କୁ ଯଜ୍ଞଚରୁ ଦେଇ, ରାଣୀମାନଙ୍କୁ ସେବନ କରିବା ନିମନ୍ତେ କହିଲେ ।

ରାଜା ଯଜ୍ଞ ଚରୁକୁ ନେଇ କୌଶଲ୍ୟା ଓ କୈକେୟୀଙ୍କୁ ଦେଲେ । କୌଶଲ୍ୟା ଓ କୈକେୟୀ ନିଜ ନିଜ ଚରୁଅନ୍ନରୁ ଖଣ୍ଡେ ଖଣ୍ଡେ ସୁମିତ୍ରାଙ୍କୁ ଦେଲେ । ଯଜ୍ଞଚରୁ ପ୍ରସାଦରୁ ତିନିରାଣୀଙ୍କ ଗର୍ଭୋଦୟ ହେଲା । ଯଥା ସମୟରେ ଚୈତ୍ରଶୁକ୍ଳ ନବମୀ ତିଥିରେ ନୂତନ ଦୂବ ଘାସର କାନ୍ତି ନେଇ ଭଗବାନ ବିଷ୍ଣୁ ରାଜା ଦଶରଥଙ୍କ ବଡ଼ରାଣୀ କୌଶଲ୍ୟାଙ୍କ ଗର୍ଭରୁ ଜନ୍ମ ନେଲେ । ଶଙ୍ଖ ଓ ପଦ୍ମ ଅଂଶରୁ କୈକେୟୀଙ୍କ ଗର୍ଭରୁ ଜନ୍ମହେଲେ ଭରତ ଏବଂ ସୁମିତ୍ରାଙ୍କ ଗର୍ଭରୁ ଚକ୍ର ଓ ଗଦା ଅଂଶରୁ ଜାତ ହେଲେ ଶତ୍ରୁଘ୍ନ ଏବଂ ଶେଷନାଗ ଅନନ୍ତ ଅଂଶରୁ ଜାତହେଲେ କୁମାର ଲକ୍ଷ୍ମଣ । ଚରୁ ସେବନ ଅନୁକ୍ରମେ ରାମଙ୍କ ଅନୁଗାମୀ

ହେଲେ ଲକ୍ଷ୍ମଣ ଏବଂ ଭରତଙ୍କ ଅନୁଗାମୀ ହେଲେ ଶତ୍ରୁଘ୍ନ । ସେମାନଙ୍କ ଜନ୍ମ ପରେ ପରେ ବହୁ ଶୁଭ ଲକ୍ଷଣମାନ ଦେଖାଦେଲା । ଅଯୋଧ୍ୟାବାସୀ ବହୁ ଉତ୍ସବ କଲେ । ଏତେ ଦିନରେ ରାଜା ଦଶରଥଙ୍କ ସନ୍ତାନ ଚିନ୍ତା ଦୂରହେଲା ।

ଏଣେ ବେଦବତୀ ଭସ୍ମ ହେବାପରେ ସେ ପବିତ୍ର ପାଉଁଶ ପବନରେ ଉଡ଼ିଯାଇ ଲଙ୍କାନଗରୀର ଏକ ପୋଖରୀରେ ପଡ଼ିଲା । ସେ ପୋଖରୀଟି ପଦ୍ମଫୁଲରେ ଭରପୂର ଥାଏ । ରାବଣ ପ୍ରତିଦିନ ସେହି ପୋଖରୀରେ ସ୍ନାନ କରେ ଏବଂ ସେଠାରୁ ପଦ୍ମଫୁଲ ତୋଳି ନେଇ ଶିବପୂଜା କରେ । ଦିନେ ଫୁଲ ତୋଳିବା ସମୟରେ ରାବଣ ଗୋଟାଏ ବଡ଼ ପଦ୍ମଫୁଲ ଦେଖିପାରିଲା । ସେହି ଫୁଲଟି ତୋଳିବାକୁ ଯାଇ ଦେଖିଲା ସୁନା ପ୍ରତିମା ଭଳି ଗୋଟିଏ ସୁନ୍ଦର ଝିଅ ସେ ପଦ୍ମଫୁଲ ଉପରେ ଶୋଇରହି ଖେଳୁଛି । ସେ ଝିଅ ଦେହରୁ ସୁନେଲି ଜ୍ୟୋତି ଝଟକି ଚାରିଦିଗକୁ ଉଜ୍ଜ୍ୱଳ କରିଦେଉଛି । ରାବଣ ଝିଅଟିକୁ ଧରିବା ପାଇଁ ହାତ ବଢ଼ାଇବା କ୍ଷଣି ଶୂନ୍ୟବାଣୀ ଶୁଣିପାରିଲା "ହେ ରାବଣ ! ସାବଧାନ !! ଏହି ଝିଅଟି ଦିନେ ତୁମ ଲଙ୍କାପୁରୀ ଧ୍ୱଂସ ଓ ତୁମ ମୃତ୍ୟୁର କାରଣ ହେବ । ରାବଣ ମନରେ ଛନକା ପଶିଗଲା । ସେ ଝିଅଟାକୁ ମୂଳରୁ ମାରିଦେଲେ ଚିନ୍ତା ଯିବବୋଲି ଭାବି ତାକୁ ଖଣ୍ଡାରେ ହାଣିଦେଲା ମାତ୍ର ଆଶ୍ଚର୍ଯ୍ୟର କଥା ଖଣ୍ଡାଟା ଦୁଇଖଣ୍ଡ ହୋଇଗଲା । ରାବଣ ଭାବିଲା ଏ ସବୁ କୌଣସି ଦୈବୀ ଶକ୍ତିର ମାୟା ହୋଇପାରେ । ସେ ରାକ୍ଷସମାନଙ୍କୁ ଡକାଇ ଯେ କୌଣସି ପ୍ରକାରେ ଝିଅଟିକୁ ପ୍ରାଣରେ ମାରିଦେବା ପାଇଁ ଆଦେଶ ଦେଲା । ରାକ୍ଷସମାନେ ଝିଅଟାକୁ ନେଇ ପଥରରେ କଚାଡ଼ି ଦେଲେ, ମାତ୍ର ପଥରଗୁଡ଼ାକ ଝିଅର ସ୍ପର୍ଶରେ ଆସିବାରୁ ଫୁଲ ଗଦାରେ ପରିଣତ ହେଲେ । ଝିଅଟାକୁ ଜଳନ୍ତା ନିଆଁରେ ପକାଗଲା ମାତ୍ର ତା'ଦେହ ଜଳିଯିବ କ'ଣ ଓଲଟି ନିଆଁ ଲିଭିଗଲା । ଏଭଳି ନାନା ଉପାୟ କଲେ ମଧ୍ୟ ଝିଅଟିର କୌଣସି କ୍ଷତି ହେଲନାହିଁ । ଶେଷରେ ରାବଣ ଆଗରେ ନିଜର ଅକ୍ଷମତା ଜଣାଇଲେ । ରାବଣ ବିରକ୍ତ ହୋଇ ଗୋଟିଏ ପଥଧାରୁ ତିଆରି ଶକ୍ତ ପେଡ଼ିରେ ରଖି ଝିଅଟାକୁ ସମୁଦ୍ରର ଅଗାଧ ଜଳରେ ଫୋପାଡ଼ିଦେବା ପାଇଁ ନିର୍ଦ୍ଦେଶ ଦେଲା । ରାକ୍ଷସମାନେ ତାହାହିଁ କଲେ । ମାତ୍ର ସେ ପେଡ଼ିଟି ପାଣିରେ ନବୁଡ଼ି ସମୁଦ୍ରରେ ଭାସିବାକୁ ଲାଗିଲା । ତାହା ଭାସି ଭାସି ଜୁଆର ସମୟରେ ଏକ ନଦୀ ଭିତରକୁ ଗଲା । ନଦୀରେ ଭାସି ଭାସି ପେଡ଼ିଟି ଯାଇ ମିଥିଳା ରାଜ୍ୟରେ ଲାଗିଲା । ଧରିତ୍ରୀ ମାତା ଉକ୍ତ ପେଡ଼ିଟିକୁ ଜଳରୁ ଉଦ୍ଧାର କଲେ ଏବଂ ନିଜ କୋଳରେ ମାଟି ଭିତରେ ଲୁଚାଇ ରଖିଲେ । ଅସଲ କଥା ହେଲା ବେଦବତୀଙ୍କ ପାଉଁଶରୁ ଧରିତ୍ରୀମାତା ଝିଅଟିକୁ ଜାତ କରିଥିଲେ । ବେଦବତୀ କନ୍ୟା ରାବଣକୁ ଯେଉଁ ଅଭିଶାପ ଦେଇଥିଲା ତାହାର ଫଳ ସ୍ୱରୂପ ଏହି ବିଚିତ୍ର ଘଟଣା ଘଟିଥିଲା !

ସେ ସମୟରେ ମିଥିଳାରେ ରାଜାଥାନ୍ତି ରାଜର୍ଷି ଜନକ । ସେ ରାଜା ହେଲେ ମଧ୍ୟ ଋଷି ଭଳି ଜୀବନ ଯାପନ କରୁଥାନ୍ତି । ମିଥିଳାରେ ସର୍ବଦା ଯାଗ, ଯଜ୍ଞ, ଶାସ୍ତ୍ର ଆଲୋଚନା

ପ୍ରଭୃତ ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ହୁଏଥାଏ । ମିଥିଳାପୁରୀ ଜନକଙ୍କ ଯୋଗୁଁ ଭାରତର ଏକ ମହାନ୍ ଆଧ୍ୟାତ୍ମିକ କ୍ଷେତ୍ରରେ ପରିଣତ ହୋଇଥାଏ । ଥରେ ଏକ ଦେଵଧରଣର ଯଜ୍ଞ କରିବାପାଇଁ ରାଜା ନିଜେ ସୁନାଲଙ୍ଗଳ ସାହାଯ୍ୟରେ ଭୂମି ସମତଳ କରୁଥାନ୍ତି । ବେଳ-କାଳ ଜାଣି ଧରିତ୍ରୀମାତା ଜନକଙ୍କ ଲଙ୍ଗଳମୂନ ବାଜିବା ଭଳି ସ୍ଥାନରେ ଶିଶୁଟିଏ ଥିବା ପଶ୍ୟାରୁ ପେଡ଼ିଟି ମାଟିତଳେ ରଖିଦେଲେ । ସତକୁ ସତ ଲଙ୍ଗଳମୂନ ପେଡ଼ିଟିରେ ବାଜିବାରୁ ଶବ୍ଦହେଲା । ରାଜା କୌତୂହଳରେ ସେ ସ୍ଥାନଟିକୁ ଖୋଳି ପେଡ଼ିଟି ପାଇଲେ । ପେଡ଼ିଟି ଖୋଲିବାରୁ ସେ ଭିତରେ ଥିବା ସୁନା ଭଳି ଝଟକୁଥିବା ଗୁଲୁଗୁଲିଆ ଶିଶୁଟିକୁ ପାଇଲେ । ରାଜା ଖୁବ୍ ଖୁସି ହୋଇଗଲେ । ପୃଥିବୀମାତାଙ୍କ ଏହା ତାଙ୍କ ପ୍ରତି ଏକ ବରଦାନ ବୋଲି ଭାବି ଶିଶୁଟିକୁ ନେଇ ଉଆସକୁ ଗଲେ । ମୈଥିଳୀ ଭାଷାରେ ଲଙ୍ଗଳର ଅଗ୍ରଭାଗକୁ ସୀତା ବୋଲି ସେ ସମୟରେ କୁହାଯାଉଥାଏ ଶିଶୁଟି ଲଙ୍ଗଳମୂନରୁ ପ୍ରକଟ ହୋଇଥିବାରୁ ଜନକ ତାଙ୍କ ନାମ ରଖିଲେ ସୀତା । ଜନକଙ୍କ ଝିଅ ହୋଇଥିବାରୁ ସୀତାଙ୍କ ଅନ୍ୟନାମ ହେଲା ଜାନକୀ । ମିଥିଳା ରାଜ୍ୟ ବାସିନୀ ହୋଇଥିବାରୁ କେହି କେହି ତାଙ୍କୁ ମୈଥିଳୀ ବୋଲି ଡାକନ୍ତି । ଜନକ ଅତି ଆଦର ଓ ଯତ୍ନରେ ସୀତାଙ୍କୁ ବଢ଼ାଇବାକୁ ଲାଗିଲେ ।

ଏଣେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଚାରି ରାଜକୁମାର ଦଶରଥଙ୍କ ଉଆସରେ ଖୁବ୍ ଅଳିଅଳରେ ବଢ଼ୁଥାନ୍ତି । କ୍ରମେ ସେମାନଙ୍କ ବିଦ୍ୟାଶିକ୍ଷା ସମୟ ଆସିଲା । ରାଜା ସେମାନଙ୍କୁ ସମସ୍ତ ପ୍ରକାର ଶିକ୍ଷାଦୀକ୍ଷା ଦେବା ବ୍ୟବସ୍ଥା କଲେ । କମ ସମୟ ମଧ୍ୟରେ ପୁଅମାନେ ଶାସ୍ତ୍ର ପୁରାଣ ଠାରୁ ଆରମ୍ଭ କରି ଯୁଦ୍ଧ ରାଜନୀତି ପର୍ଯ୍ୟନ୍ତ ସବୁ ପ୍ରକାର ବିଦ୍ୟାରେ ଧୁରନ୍ଧର ହୋଇ ଉଠିଲେ । ସବୁ କ୍ଷେତ୍ରରେ ଶ୍ରୀରାମ ହିଁ ସମସ୍ତଙ୍କଠାରୁ ଶ୍ରେଷ୍ଠ ବିବେଚିତ ହେଉଥାନ୍ତି ।

ରାବଣର ପ୍ରତାପ ଯୋଗୁଁ ଏ ଭିତରେ ରାକ୍ଷସମାନଙ୍କ ଉତ୍ପାତ ଖୁବ ବଢ଼ିଯାଇଥାଏ । ମୁନିଋଷି ମାନେ ହୋମ ଯଜ୍ଞ ପ୍ରଭୃତି ଧର୍ମାନୁଷ୍ଠାନ କରିବା ପାଇଁ ପ୍ରମାଦ ଗଣୁଥାନ୍ତି । ମହର୍ଷି ବିଶ୍ୱାମିତ୍ର ଗୁପ୍ତ ସ୍ଥାନଟିଏ ବାଛି ଯଜ୍ଞଟିଏ କରୁଥାନ୍ତି । ହୋମର ପବିତ୍ର ଶିଖ ଆହୁତି ବାସନା ବାରି କେତେକ ରାକ୍ଷସ ସେ ଗୁପ୍ତସ୍ଥାନକୁ ଆସି ଯଜ୍ଞ ଭାଙ୍ଗି ଦେଲେ । ବିଶ୍ୱାମିତ୍ର ରାଗିଗଲେ ନିଜ ତପଃ ଶକ୍ତି ବଳରେ ସେ ରାକ୍ଷସମାନଙ୍କୁ ଭସ୍ମ କରିଦେଇ ପାରନ୍ତେ; କିନ୍ତୁ ଏଥିରେ ତାଙ୍କର ଧର୍ମନାଶ ହୋଇଯିବ ଭାବି କିଛି କରି ନ ଥାନ୍ତି । ଉପଦ୍ରବର ସ୍ଥାୟୀ ସମାଧାନ ପାଇଁ ଉପାୟ ଖୋଜିବା କ୍ରମରେ ସେ ଯୋଗାସନରେ ବସିଲେ । ଶେଷରେ ଜାଣିପାରିଲେ ଯେ ଭଗବାନ ବିଷ୍ଣୁ ରାକ୍ଷସ ନିଧନ ପାଇଁ ରାମ ଅବତାର ଧାରଣ କରିଛନ୍ତି । ତାହାଙ୍କ ଦ୍ୱାରା ରାକ୍ଷସମାନଙ୍କୁ ମାରିବା କ୍ରମରେ ସେ ସ୍ଥିର କଲେ ! ଆଉ କାଳବିଳମ୍ବ ନକରି ଅଯୋଧ୍ୟା ଚାଲିଲେ ।

ରାଜା ଦଶରଥ ବିଶ୍ୱାମିତ୍ରଙ୍କୁ ଦେଖି ଯଥା ଯୋଗ୍ୟ ସମ୍ମାନ ଦେଲେ ଓ ଆଗମନର କାରଣ ପଚାରିଲେ । ମାତ୍ର ଯେତେବେଳେ ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ନେବାକୁ ଆସିଛନ୍ତି ଓ ରାମ ଲକ୍ଷ୍ମଣଙ୍କ ଦ୍ୱାରା ରାକ୍ଷସମାନଙ୍କୁ ମାରିବା ପାଇଁ ଚାହାନ୍ତି ବୋଲି ଦଶରଥ ଶୁଣିଲେ ସେ ଆତଙ୍କିତ ହୋଇ ପଡ଼ିଲେ । ସେ ହାତଯୋଡ଼ି କହିଲେ—"ହେ ମହର୍ଷି ! ରାମ ଲକ୍ଷ୍ମଣ କେବଳ କିଶୋର ବୟସର । ସେମାନେ ଏବେ ଯୁଦ୍ଧ କୌଶଳ ଶିକ୍ଷା କରୁଛନ୍ତି। ସେମାନେ କ'ଣ ଭୟଙ୍କର ରାକ୍ଷସମାନଙ୍କୁ ମାରି ଆପଣଙ୍କ ଯଜ୍ଞ ରକ୍ଷା କରିପାରିବେ ? ସ୍ୱୟଂ ସୈନ୍ୟସାମନ୍ତ ନେଇ ଆପଣଙ୍କର ସେ କାର୍ଯ୍ୟ ମୁଁ କରିବି ।"

ମାତ୍ର ବିଶ୍ୱାମିତ୍ର କହିଲେ—"ଦଶରଥ ! ମୁଁ ଜାଣେ କିଶୋର ବୟସ୍କ ରାମ ଲକ୍ଷ୍ମଣ ଏବେ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଛନ୍ତି । ମୁଁ ସେମାନଙ୍କୁ ନେଇ ପ୍ରଥମେ ନାନା ପ୍ରକାର ଧନୁର୍ବିଦ୍ୟା ଶିକ୍ଷା ଦେବି ତାପରେ ସେ ବିଦ୍ୟାର ପରୀକ୍ଷା ଅସୁରମାନଙ୍କ ମାରିବା ଦ୍ୱାରା କରାଇବି ।" ଦଶରଥଙ୍କ ମନ ବୁଝୁ ନଥାଏ । ସେ ନିଜର କୁଳଗୁରୁ ବଶିଷ୍ଠଙ୍କ ପରାମର୍ଶ ଲୋଡ଼ିଲେ । ବଶିଷ୍ଠ କହିଲେ—"ରାଜା ଦଶରଥ ଚିନ୍ତାର କୌଣସି କାରଣ ନାହିଁ । ମହର୍ଷି ବିଶ୍ୱାମିତ୍ରଙ୍କ ଧନୁର୍ବିଦ୍ୟା ଜଗତରେ ଅତୁଳନୀୟ । ରାଜକୁମାରମାନଙ୍କୁ ପଠାଇଦିଅନ୍ତୁ ସେମାନେ ଅଳ୍ପ ସମୟ ମଧ୍ୟରେ ଧନୁର୍ଦ୍ଧର ହୋଇ ରାକ୍ଷସମାନଙ୍କୁ ମାରି ନିଜର ବୀରତ୍ୱ ନିଶ୍ଚିତ ଭାବେ ପ୍ରମାଣିତ କରିଦେବେ ।"

ଶେଷରେ ରାଜା ଦଶରଥ ରାମ ଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ରଙ୍କ ସାଙ୍ଗରେ ପଠାଇ ଦେଲେ । ଯାତ୍ରା ସମୟରେ ଅନଙ୍ଗାଶ୍ରମରେ ସେମାନେ ରାତିକ ପାଇଁ ବିଶ୍ରାମ ନେଲେ । ଏ ଅବସରରେ ବିଶ୍ୱାମିତ୍ର ସେମାନଙ୍କୁ ପ୍ରଥମେ କ୍ଳାନ୍ତି ଓ ବିପଦସଂହାରକ ବଳା ଓ ଅତିବଳା ନାମକ ଦୁଇଟି ବିଦ୍ୟା ଶିକ୍ଷାଦେଲେ । ତାପରେ ସେମାନେ ଗଙ୍ଗାନଦୀ ପାର ହୋଇ ତାଡ଼କା ନାମକ ବନରେ ପ୍ରବେଶ କଲେ । ସେ ବନରେ ତାଡ଼କା ନାମକ ରାକ୍ଷସୀ ରହୁଥାଏ । ସେ ଦେଖିବାକୁ ଯେତିକି ବିକଟାଳ ସେତିକି ହିଂସ୍ର । ରାମ ଲକ୍ଷ୍ମଣଙ୍କୁ ଦେଖି ଗିଳିବା ପାଇଁ ଭୟଙ୍କର ଶବ୍ଦ କରି ଆବେଗରେ ଆସିଲା । ବିଶ୍ୱାମିତ୍ର ଏଥିରେ ଭୟଭୀତ ହୋଇଗଲେ କିନ୍ତୁ ରାମଚନ୍ଦ୍ର ଦୋଥରକରେ ଅଭିମନ୍ତ୍ରିତ ତୀରରେ ମାରି ରାକ୍ଷସୀକୁ ମାରିଦେଲେ । ତାପରେ ସେମାନେ ଯାଇ ବିଶ୍ୱାମିତ୍ରଙ୍କ ସିଦ୍ଧାଶ୍ରମରେ ପହଞ୍ଚିଲେ ।

ସିଦ୍ଧାଶ୍ରମରେ ଯଜ୍ଞ ଆୟୋଜନ ଆରମ୍ଭ ହେଲା । ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଧନୁର୍ବିଦ୍ୟାର ଗୂଢ଼ ରହସ୍ୟ ଓ କୌଶଳମାନ ଶିକ୍ଷା ଦେଉଥାନ୍ତି । ଯଜ୍ଞ ଠିକ୍ ସମୟରେ ଆରମ୍ଭ ହେଲା । ଯଜ୍ଞ ଭଙ୍ଗ କରିବାପାଇଁ ପୂର୍ବଭଳି ରାକ୍ଷସମାନେ ମାଡ଼ି ଆସିଲେ । ମାତ୍ର ଯଜ୍ଞ ରକ୍ଷାଭାର ନେଇଥିବା ରାମ ଓ ଲକ୍ଷ୍ମଣ ଧନୁର୍ବାଣ ସାହାଯ୍ୟରେ ରାକ୍ଷସମାନଙ୍କୁ ନିର୍ମୂଳ କରିଦେଲେ । ଦୁର୍ଦ୍ଦାନ୍ତ ରାକ୍ଷସ ସୁବାହୁ ଦଳବଳ ସହ ମଲା । ମାରୀଚ ନାମକ ରାକ୍ଷସକୁ ରାମ ପବନାସ୍ତ୍ର ମାରି ଉଡ଼ାଇ ଦେଲେ । ସେ ଯାଇ ସମୁଦ୍ର ଆରପଟରେ ପଡ଼ିଲା ।

ନିର୍ବିଘ୍ନରେ ଯଜ୍ଞ ଶେଷ ହେଲା । ବିଶ୍ୱାମିତ୍ର ପୂର୍ଣ୍ଣାହୁତି ଦେବାବେଳେ ପ୍ରାର୍ଥନା କରିବାରୁ ସେଥିରୁ ଏକ ଦିବ୍ୟଅସ୍ତ୍ର ବାହାରିଲା । ସେ ମହାଅସ୍ତ୍ରକୁ ବିଶ୍ୱାମିତ୍ର ରାମଙ୍କୁ ଦେଇ କହିଲେ—"ଏ ଅସ୍ତ୍ର ଯେତେ ପରାକ୍ରମଶାଳୀ ଶତ୍ରୁ ହେଲେ ମଧ ଆଜ୍ଞା ମାତ୍ରେ ତାକୁ ମାରି ପୁଣି ଲେଉଟି ଆସିବ ।" ରାମ ଭକ୍ତି ଓ ଶ୍ରଦ୍ଧାରେ ସେ ଅସ୍ତ୍ର ଗ୍ରହଣ କଲେ । ବିଶ୍ୱାମିତ୍ରଙ୍କୁ ନିଜର ଅସ୍ତ୍ରଗୁରୁ ରୂପେ ସ୍ୱୀକାର କରି ରାମ ଲକ୍ଷ୍ମଣ ଆଶୀର୍ବାଦ ନେଲେ !

ଏଣେ ମିଥିଳାରେ ସୀତା ମଧ୍ୟ ଚନ୍ଦ୍ରକଳା ଭଳି ବଢ଼ୁଥାନ୍ତି । ଦିନକର କଥା କିଶୋରୀ ସୀତା ନିଜ ସଖୀମାନଙ୍କ ସହ ପେଣ୍ଡୁ ଖେଳୁଥାନ୍ତି । ପେଣ୍ଡୁଟି ଦେଇ ଗଡ଼ିଯାଇ ସୁରକ୍ଷିତ ଥିବା ଶିବଧନୁ ତଳକୁ ଚାଲିଗଲା । ସୀତା ଶିବଧନୁଟିକୁ ବାମ ହାତରେ ଟେକି ଦେଇ ପେଣ୍ଡୁଟି ବାହାର କରି ନେଇଗଲେ । ବାଳିକାର ଏ ଅଦ୍ଭୁତ ଶକ୍ତି ଦେଖି ଜନକ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ଶିବଧନୁ ହେଉଛି ସ୍ୱୟଂ ଶିବଙ୍କର ଧନୁ । ତ୍ରିପୁରାସୁରକୁ ବଧ-କରିବା ସମୟରେ ଶିବ ଏ ଧନୁ ବ୍ୟବହାର କରୁଥିଲେ । ଏହି ଧନୁ ମିଥିଳାରେ ପୂଜା ପାଉଥିଲା । ଧନୁଟିର ଓଜନ ଯାହା ତାକୁ ଉଠାଇବା ପାଇଁ ଏକାଠରେ ତିନିଶହରୁ ଚାରିଶହ ପର୍ଯ୍ୟନ୍ତ ଲୋକଙ୍କ ବଳ ଦରକାର ହେଉଥିଲା । ଏହା ଥିଲା ଖୁବ୍ ବିରାଟ । ସାମାନ୍ୟ ବାଳିକା ସୀତା ଏହାକୁ ବାମହାତରେ ଉଠାଇ ପାରୁଥିବା ଘଟଣା ଅଲୌକିକ ହୋଇଥିବାରୁ ଜନକ ସ୍ଥିର କରିଥିଲେ ଯେ ଏହି ଧନୁକୁ ଟେକି ଯେଉଁ ବୀର ପୁରୁଷ ଗୁଣ ଚଢ଼ାଇ ପାରିବ ସେ ହିଁ ସୀତାଙ୍କ ପତି ହେବାକୁ ଯୋଗ୍ୟ । ସୀତାଙ୍କ ବୟସ ହେବାପରେ ଜନକ ତାଙ୍କର ସ୍ୱୟମ୍ବର ଆୟୋଜନ କଲେ । ପଣ ହେଲା ଯେଉଁ ରାଜା ବା ରାଜକୁମାର ଶିବଧନୁ ଟେକି ଗୁଣ ଚଢ଼ାଇ ପାରିବେ ସୀତା ତାଙ୍କୁ ହିଁ ପତିରୂପେ ବରଣମାଳା ଦେବେ ।

ଜନକଙ୍କ ରାଜପୁରୋହିତ ଶତାନନ୍ଦ ସ୍ୱୟମ୍ବରରେ ଯୋଗଦେବା ପାଇଁ ସବୁ ମୁନି ଋଷିଙ୍କୁ ଜନକଙ୍କ ନିମନ୍ତ୍ରଣ ଦେବା ପାଇଁ ବୁଲୁଥାନ୍ତି । ଯଥାସମୟରେ ସେ ସିଦ୍ଧାଶ୍ରମରେ ପହଞ୍ଚି ବିଶ୍ୱାମିତ୍ରଙ୍କୁ ନିମନ୍ତ୍ରଣ ଦେଲେ । ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ମିଥିଳା ଯାତ୍ରା କଲେ । ରାସ୍ତାରେ ଚାଲିବାବେଳେ ସେମାନେ ଗୌତମ ମୁନିଙ୍କ ଆଶ୍ରମ ଦେଖିଲେ । ସେଠାରେ ଗୌତମଙ୍କ ପତ୍ନୀ ଅହଲ୍ୟା ପତିଙ୍କ ଅଭିଶାପରେ ପଥର ହୋଇ ପଡ଼ିଥିଲେ । ବିଶ୍ୱାମିତ୍ରଙ୍କ ନିର୍ଦ୍ଦେଶରେ ରାମଚନ୍ଦ୍ର ସେହି ପଥରକୁ ପାଦରେ ଛୁଇଁଦେଲେ । ଭଗବାନ ରାମଙ୍କ ସ୍ପର୍ଶ ପାଇବା କ୍ଷଣି ଅହଲ୍ୟା ଶାପ ମୁକ୍ତ ହୋଇ ନିଜ ରୂପ ଫେରି ପାଇଲେ ଓ ରାମଙ୍କୁ କୃତଜ୍ଞତା ଜଣାଇଲେ । ତାପରେ ସେମାନେ ଗଙ୍ଗା ନଦୀ ପାରହେଲେ । ଶ୍ରୀରାମଙ୍କ ଦୟାରୁ ଡଙ୍ଗା ଚଳାଉଥିବା ନାବିକର ଭଙ୍ଗା ଡଙ୍ଗାଟି ଏକ ସୁନା ଡଙ୍ଗାରେ ପରିଣତ ହୋଇଗଲା । ଏଭଳି ସେମାନେ ଆସି ମିଥିଳାରେ ପହଞ୍ଚିଲେ ।

ମିଥିଳାରେ ସୀତାଙ୍କ ସ୍ୱୟମ୍ବର ଖୁବ୍ ଆଡ଼ମ୍ବର ସହ ହେଉଥାଏ । ଭାରତର ଲକ୍ଷେ ରାଜା ନିମନ୍ତ୍ରିତ ହୋଇ ଆସିଥାନ୍ତି । ସେମାନଙ୍କ ମଧ୍ୟରେ ଲଙ୍କାପତି ରାବଣ ମଧ୍ୟ ଥାଏ । ଜନକଙ୍କ ପଣ ଅନୁସାରେ ରାଜାମାନେ ଜଣକ ପରେ ଜଣେ ଯାଇ ଶିବଧନୁ ଉଠାଇବାକୁ

ଚେଷ୍ଟାକଲେ ମାତ୍ର ଉଠାଇବାତ ଦୂରର କଥା ସାମାନ୍ୟ ଘୁଂଚାଇ ମଧ୍ୟ ପାରିଲେ ନାହିଁ । ସମସ୍ତଙ୍କର ଆଶାଥିଲା ଏକମାତ୍ର ବୀର ଶ୍ରେଷ୍ଠ ରାବଣ ସେ ଧନୁ ଉଠାଇପାରିବ । ମାତ୍ର ଆଶ୍ଚର୍ଯ୍ୟର କଥା ରାବଣ ଧନୁକୁ ଉଠାଇ ପାରିଲା ନାହିଁ । ସବୁରାଜା ଏଥର ଲଜ୍ଜିତ ହୋଇ ତଳକୁ ମୁହଁ ପୋତି ବସି ରହିଲେ । ଏ ଘଟଣାରେ ରାଜା ଜନକ ଚିନ୍ତିତ ହୋଇ ପଡ଼ିଲେ । ସେ ଦୁଃଖର ସହିତ ଘୋଷଣାକଲେ—"ଯଦି ମୁଁ ଜାଣିଥାନ୍ତି ବସୁନ୍ଧରାରେ ବୀର କେହି ନାହାନ୍ତି ତେବେ ସୀତା ସ୍ୱୟମ୍ବର ପାଇଁ ଏଭଳି ଏକ ସର୍ତ୍ତ ରଖିନଥାନ୍ତି ।"

ସମସ୍ତେ ନୀରବ । କିନ୍ତୁ ଲକ୍ଷ୍ମଣ ଉଠିପଡ଼ି କହିଲେ—"ହେ ରାଜର୍ଷି ! ଧରଣୀ ବୀରଶୂନ୍ୟା ଅଟେ । ବୀରହୀନ ବୋଲି ଆପଣ ମନ୍ତବ୍ୟ ଦେଇ ମୋର ବଡ଼ଭାଇ ମହାବୀର ରାମଙ୍କ ଅପମାନ କରୁଛନ୍ତି ।"

ସମସ୍ତଙ୍କ ଦୃଷ୍ଟି ଶ୍ରୀରାମଙ୍କ ଉପରେ ପଡ଼ିଲା । ଜନକଙ୍କ ଅନୁରୋଧରେ ରାମଚନ୍ଦ୍ର ଗୁରୁ ବିଶ୍ୱାମିତ୍ରଙ୍କ ଆଦେଶ ନେଇ ଶିବଧନୁ ଭାଙ୍ଗିବା ପାଇଁ ଧନୁ ନିକଟକୁ ଗଲେ । ପ୍ରଥମେ ଶିବଙ୍କୁ ପ୍ରଣାମ ଜଣାଇ ଆଶୀର୍ବାଦ ଲାଭକଲେ । ଧନୁକୁ ତିନିଥର ପ୍ରଦକ୍ଷିଣ କରି ନମସ୍କାର ଜଣାଇଲେ । ବାମହାତରେ ଧନୁଟିକୁ ଅତି ସହଜରେ ସେ ଉଠାଇ ନେଲେ ଏବଂ ଡାହାଣ ହାତରେ ଗୁଣ ଚଢ଼ାଇଲେ ଏକ ପ୍ରଚଣ୍ଡ ଶବ୍ଦ ସହିତ ଶିବଧନୁଟି ଦୁଇଖଣ୍ଡ ହୋଇ ଭାଙ୍ଗି ଗଲା । ଶ୍ରୀରାମଙ୍କ ଜୟ ଜୟ କାର ନାଦରେ ଗଗନ ପବନ ମୁଖରିତ ହୋଇଉଠିଲା । ଦେବତାମାନେ ପୁଷ୍ପ ବୃଷ୍ଟି କଲେ । ସମସ୍ତେ ଆନନ୍ଦ ହେଲେ । ଜନକଙ୍କ ସ୍ୱପ୍ନ ସଫଳ ହେଲା । ପରମ ରୂପବତୀ ସୀତା ବରଏ ମାଳାଧରି ରାମଙ୍କ ପାଖରେ ପହଞ୍ଚିଲେ ଏବଂ ପତି ରୂପେ ବରଣକଲେ । ସଙ୍ଗେ ସଙ୍ଗେ ଏ ସୁସମ୍ବାଦ ଅଯୋଧ୍ୟା ମୂଲକକୁ ପଠାଗଲା । ମହାରାଜ ଦଶରଥ କୁଳଗୁରୁ ବଶିଷ୍ଠ ଋଷି, ଶତ୍ରୁଘ୍ନ, ଭରତ ଏବଂ ମନ୍ତ୍ରୀ ଓ ପାରିଷଦବର୍ଗଙ୍କ ସହ ମହା-ସମାରୋହରେ ମିଥିଳାରେ ପହଞ୍ଚିଲେ । ଶ୍ରୀରାମଙ୍କ ସହିତ ସୀତାଙ୍କର ଶୁଭବିବାହ ଅନୁଷ୍ଠିତ ହେଲା । କେବଳ ସେତିକିରେ ନୁହେଁ ସେହି ଏକା ବେଦୀରେ ଜନକଙ୍କ ସାନ ଝିଅ ଉର୍ମିଳାଙ୍କ ସହ ଲକ୍ଷ୍ମଣଙ୍କ ବିବାହ ହେଲା । ଜନକଙ୍କ ସାନଭାଇଙ୍କ ନାମ କୁଶଧ୍ୱଜ । ତାଙ୍କର ମଧ୍ୟ ଆଉ ଦୁଇଟି ଝିଅ ଥିଲେ । ସେମାନଙ୍କ ନାମ ଥିଲା ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି । ଭରତଙ୍କ ସହ ମାଣ୍ଡବୀ ଓ ଶତ୍ରୁଘ୍ନଙ୍କ ସହ ଶ୍ରୁତକୀର୍ତ୍ତିଙ୍କର ମଧ୍ୟ ବିବାହ ସମ୍ପନ୍ନ ହେଲା ।

ତାପରେ ମହାରାଜ ଦଶରଥ ଚାରିପୁତ୍ର ଓ ଚାରିପୁତ୍ରବଧୂଙ୍କୁ ନେଇ ଜନକଙ୍କ ଠାରୁ ବିଦାୟ ମାଗି ଅଯୋଧ୍ୟା ଅଭିମୁଖେ ଯାତ୍ରା କଲେ । ରାସ୍ତାରେ କିନ୍ତୁ ସେମାନେ କ୍ଷତ୍ରୀ-ହନ୍ତା ପର୍ଶୁରାମଙ୍କ କାବୁରେ ପଡ଼ିଲେ । ତାଙ୍କର ଉଗ୍ରମୂର୍ତ୍ତି ଦେଖି ଦଶରଥ ଡର ପରିତସ୍ତ ହୋଇ ତାଙ୍କୁ ଶାନ୍ତ କରାଇବା ପାଇଁ ଚେଷ୍ଟାକଲେ । ମାତ୍ର ପର୍ଶୁରାମ ଶିବଧନୁ ଭଙ୍ଗ ଘଟଣାରେ ଏତେ ରାଗିଯାଇଥିଲେ ଯେ, ସେ ନାନା କଟୁ କଥା କହିଲେ । ଲକ୍ଷ୍ମଣ ଏଥିରେ ଉତ୍ତ୍ୟକ୍ତ ହୋଇ ପର୍ଶୁରାମଙ୍କ ସହ ଲଢ଼ିବା ପାଇଁ ବାହାରି ପଡ଼ିଲେ । ମାତ୍ର କୋମଳ ଶାନ୍ତ ମୂର୍ତ୍ତି ରାମ ଲକ୍ଷ୍ମଣଙ୍କୁ ଶାନ୍ତ କରାଇ ନିଜେ ପର୍ଶୁରାମଙ୍କ ସହ ଯୁଦ୍ଧାର୍ଥୀ ହେଲେ ।

ଶ୍ରୀରାମଙ୍କ ମାର୍ଜିତ ଏବଂ ସମ୍ମାନ ଜନକ ବ୍ୟବହାରରେ ପର୍ଶୁରାମ ସନ୍ତୋଷ ହେଲେ । ରାମଙ୍କ ଶକ୍ତିପରୀକ୍ଷା ପାଇଁ ସେ ନିଜର ବୈଷ୍ଣବ ଧନୁକୁ ବଢ଼ାଇଦେଇ କହିଲେ—"ରାମ ତମେ ବହୁ ଯୁଗର ପୁରୁଣା ଶିବଧନୁଟା ଭାଙ୍ଗି ଦେଇ ନିଜକୁ ବୀର ବୋଲି କହିବା ଉଚିତ ନୁହେଁ । ମୋ ବୈଷ୍ଣବ ଧନୁରେ ଗୁଣ ଦେଇପାରିଲେ ତୁମ ବୀରତ୍ୱର ପ୍ରକୃତ ପରିଚୟ ମିଳିବ ।" ରାମ ହସି ହସି ପର୍ଶୁରାମଙ୍କ ବୈଷ୍ଣବ ଧନୁରେ ଗୁଣ ଚଢ଼ାଇଦେଲେ । ଧନୁ ସ୍ପର୍ଶ ହେଲେ ସେ ପର୍ଶୁରାମଙ୍କ ଦେହରୁ ବିଷ୍ଣୁକଳା ମଧ୍ୟ ହରଣ କଲେ । ପର୍ଶୁରାମ ଏଥର ଶ୍ରୀରାମଙ୍କୁ ସ୍ୱୟଂ ବିଷ୍ଣୁଙ୍କ ଅବତାର ବୋଲି ଚିହ୍ନିପାରି ନିଜ ଅନୁଚିତ ବ୍ୟବହାର ପାଇଁ ଦୁଃଖ ପ୍ରକାଶ କଲେ ଓ କ୍ଷମା ମାଗିନେଲେ । ଶ୍ରୀରାମଙ୍କ ପରାମର୍ଶ କ୍ରମେ ସେ ତପସ୍ୟା କରିବାପାଇଁ ମହେନ୍ଦ୍ର ପର୍ବତକୁ ଚାଲିଗଲେ । ଶ୍ରୀରାମ ଓ ଅନ୍ୟମାନେ ଯଥା ସମୟରେ ଆସି ଅଯୋଧ୍ୟାରେ ପହଞ୍ଚିଲେ । ନଗରବାସୀଙ୍କ ପକ୍ଷରୁ ରାଜା, ରାଜପୁତ୍ର ଓ ରାଜ ବଧୂମାନଙ୍କୁ ସ୍ୱାଗତ କରାଗଲା । ଚାରିଆଡ଼େ ତୋରଣ ସଜ, ନାଚ ଗୀତ ଆମୋଦପ୍ରମୋଦ ବାଣ, ପଟୁଆର ରୋଷଣିରେ କମ୍ପି ଉଠିଲା । ଅଯୋଧ୍ୟାରେ କେବଳ ଆନନ୍ଦ ଆଉ ଆନନ୍ଦ ।

ରାଜା ଦଶରଥ ବୃଦ୍ଧ ହୋଇ ପଡ଼ିଥାନ୍ତି । ଅତଏବ ରାଜ ସିଂହାସନରେ ରାମଙ୍କୁ ବସାଇ ସେ ଅବସର ନେବାକୁ ଇଚ୍ଛାକଲେ । ରାଜାଙ୍କ ଘୋଷଣା ପରେ ପରେ ରାମଙ୍କ ରାଜା-ଭିଷେକ ପାଇଁ ଅଯୋଧ୍ୟାରେ ଧୂମ୍ ଧାମ୍ ଆୟୋଜନ ଚାଲିଲା । ରାମଙ୍କର ସମସ୍ତ ପ୍ରକାର ସଦ୍-ଗୁଣ ଓ ବୀରତ୍ୱ ଯୋଗୁଁ ପ୍ରଜାମାନେ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ ଦେଖାଉଥିଲେ । ରାମ ରାଜା ହେଉଥିବା ଶୁଣି ସେମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ଏତଥାନ୍ତି କିନ୍ତୁ ମନ୍ଥରାକୁ ଭଲଲାଗିଲା ନାହିଁ । ମନ୍ଥରା ହେଉଛି ମହାରାଣୀ କୈକେୟୀଙ୍କ ଦାସୀ । ସେ କୈକେୟୀଙ୍କ ସହିତ ତାଙ୍କ ବାପଘର ରାଜ୍ୟରୁ ଆସିଥିଲା । ମନ୍ଥରା ଥିଲା ଦୁଷ୍ଟବୁଦ୍ଧି ସମ୍ପନ୍ନ ଦାସୀ । ପିଠିରେ ତା'ର ଥିଲା ଗୋଟାଏ କୁଜ । ଦେଖିବାକୁ ଅସୁନ୍ଦରୀ । କୁଜଯୋଗୁଁ ନଇଁ ନଇଁ ଚାଲୁଥାଏ । ସେ କୈକେୟୀଙ୍କୁ ପିଲାଟି ଦିନରୁ ଲାଳନପାଳନ କରିଆସିଥିଲା । ତେଣୁ କୈକେୟୀ ତାକୁ ବହୁତ ଭଲ ପାଉଥିଲେ । ମନ୍ଥରା ଥିଲା ସ୍ୱାର୍ଥପର । ରାମ ରାଜା ହେଉଥିବା ଖବର ଶୁଣି ତା ମୁହଁ ଶୁଖିଗଲା । ସେ ଆସି କୈକେୟୀଙ୍କୁ ଏ ଖବରଟା ଦେଲା । କୈକେୟୀ ଏଥିରେ ଖୁସିହୋଇ ନିଜ ଗଳାରୁ ଗୋଟାଏ ବହୁମୂଲ୍ୟ ରତ୍ନହାର ବାହାର କରି ମନ୍ଥରାର ଶୁଭସମ୍ବାଦ ପାଇଁ ଉପହାର ଦେଲେ । ମାତ୍ର ମନ୍ଥରା ବୁଢ଼ୀ ସେ ହାରଟାକୁ ଫୋପାଡ଼ି ଦେଇ କହିଲା—"ତୁମେ କେଡ଼େ ବୋକା; ରାମ ରାଜା ହେଲେ ଆମର କି ଲାଭଟା ହେବ ଯେ ତୁମେ ମୋତେ ଉପହାର ଦେଉଛ । ରାମ ହେବ ରାଜା । ତା ମା' କୌଶଲ୍ୟା ହେବେ ରାଜମାତା । ଆଉ ତୁମେ ହେବ କୌଶଲ୍ୟାଙ୍କର ଦାସୀ ! ଏ କଥା ଥରେ ଭାବିଛ ? ତୁମ ପୁଅ ଭରତ ରାଜା ହେଲେ ଯାଇ ତୁମେ ରାଜମାତା ହୋଇପାରନ୍ତ ଅନ୍ୟମାନଙ୍କୁ ନିଜର ଦାସୀ କରିଇପାରନ୍ତ । ସେ [illegible] [illegible] ଭୋଗକଥାରେ ଏତେ ଆନନ୍ଦ ବା ?"

କୈକେୟୀ ମନ୍ଥରାର କୁମନ୍ତ୍ରଣାରେ ପଡ଼ିଗଲେ । ତା ପରାମର୍ଶ ଅନୁସାରେ ସେ ଦଶରଥଙ୍କ ଠାରୁ ପୂର୍ବରୁ ବାକି ଥିବା ଦୁଇଟି ବର ମାଗିଲେ । ସେ ଦୁଇଟି ବର ଦୁଇଟି ହେଲା ପ୍ରଥମ ବରରେ ଭରତ ଅଯୋଧ୍ୟାରେ ରାଜା ହୁଅନ୍ତୁ ଏବଂ ଦ୍ୱିତୀୟ ବରରେ ରାମଚନ୍ଦ୍ର ଚଉଦ ବର୍ଷ ବନବାସରେ ଯାଆନ୍ତୁ । ଦଶରଥ ଏଭଳି ନିଷ୍ଠୁର ବର ନମାଗିବା ପାଇଁ କୈକେୟୀଙ୍କୁ ବହୁତ ବୁଝାଇଲେ ମାତ୍ର କୈକେୟୀ ନିଜ ଜିଦ୍‌ରେ ଅଟଳ ରହିଲେ । ମହାରାଜ ଦଶରଥ ସ୍ୱେଚ୍ଛା ଇଚ୍ଛା କରିଥିଲେ କୈକେୟୀଙ୍କୁ ଏଭଳି ବର ଦେଇନଥାନ୍ତେ ମାତ୍ର ସେ ଥିଲେ ସତ୍ୟ ସନ୍ଧ । ବଚନ ରକ୍ଷା ଥିଲା ସେସମୟର ଏକ କଠୋର ଧର୍ମ । ଅଗତ୍ୟା ଦଶରଥ ନୀରବ ରହି କାନ୍ଦିବାକୁ ଲାଗିଲେ । ଅସୁସ୍ଥ ହୋଇ ଶେଯରେ ପଡ଼ି ରହିଲେ ।

ପିତୃ ସତ୍ୟ ପାଳିବା ପାଇଁ ରାମଚନ୍ଦ୍ର ବଣକୁ ଯିବାକୁ ବାହାରିଲେ । ତାଙ୍କ ସହିତ ତାଙ୍କର ପତ୍ନୀ ସୀତା ଏବଂ ଲକ୍ଷ୍ମଣ ମଧ୍ୟ ବଣକୁ ବାହାରି ପଡ଼ିଲେ । ଭରତ ଓ ଶତ୍ରୁଘ୍ନ ସେ ସମୟକୁ ମାମୁଁ ଘରକୁ ଯାଇଥାନ୍ତି । ଭରତ ଅଯୋଧ୍ୟାରେ ଥିଲେ ହୁଏତ ଅବସ୍ଥା ବଦଳି ଯାଇଥାନ୍ତା ମାତ୍ର ବିଧିର ବିଧାନକୁ କିଏ ଅବଜ୍ଞା କରିବ ? ପିତା ମାତା ଓ ରାଜ୍ୟବାସୀଙ୍କ ଠାରୁ ବିଦାୟ ନେଇ ରାମ ଲକ୍ଷ୍ମଣ ଓ ସୀତା ବଣକୁ ଗଲେ । ଗଲାବେଳେ ସେମାନେ ରାଜକୀୟ ପୋଷାକ ତ୍ୟାଗକରି ମୁନି ଋଷି ମାନଙ୍କ ଭଳି ଗେରୁଆ ଲୁଗା ପିନ୍ଧିଥିଲେ । ମୁଣ୍ଡ ବାଳକୁ ଜଟରେ ପରିଣତ କରି ଚୂଳ ବାନ୍ଧିଥିଲେ ଏବଂ ସଙ୍ଗରେ କୌଣସି ଜିନିଷପତ୍ର ମଧ୍ୟ ନେଇ ନଥିଲେ । ରାମଚନ୍ଦ୍ର ଅଯୋଧ୍ୟା ଛାଡ଼ିବାର ଦୃଶ୍ୟ ବଡ଼ କରୁଣଥିଲା । ଅଯୋଧ୍ୟାର ନର ନାରୀ ହାହାକାର କରି କେବଳ କାନ୍ଦିବାରେ ଲାଗିଥାନ୍ତି । କୈକେୟୀ ଓ ମନ୍ଥରାଙ୍କୁ ଛାଡ଼ି ଦେଲେ ରାଜପ୍ରାସାଦରେ ସମସ୍ତେ କାନ୍ଦୁଥାନ୍ତି । ରାମ ସମସ୍ତଙ୍କୁ ବୁଝାଇ ବିଦାୟ ନେଲେ । ସୁମନ୍ତ୍ର ରଥରେ ନେଇ ତାଙ୍କୁ ସରଯୁ ନଦୀ ପାର କରିଦେଇ ଆସିଲେ । ବନବାସର ପ୍ରଥମ ରାତିଟି ରାମଚନ୍ଦ୍ର ନିଜ ଶବରୀ-ମିତ୍ର ଗୁହକଙ୍କ ବଣରାଜ୍ୟରେ; ତା ପରଦିନ ଗଙ୍ଗାନଦୀ ପାରହୋଇ ଗହନ ବନରେ ପ୍ରବେଶ କଲେ ।

ରାମଚନ୍ଦ୍ରଙ୍କ ବନଗମନ ପରେ ପରେ ଅତ୍ୟନ୍ତ ଶୋକରେ ମହାରାଜ ଦଶରଥ ପରଲୋକ ଗମନ କଲେ । ଅଯୋଧ୍ୟାବାସୀଙ୍କ ଶୋକର ସୀମା ରହିଲାନାହିଁ । ଭରତ ଓ ଶତ୍ରୁଘ୍ନଙ୍କ ପାଖକୁ ଡ଼ାକରାଗଲା । ସେମାନେ ଅଯୋଧ୍ୟାର ହତଶ୍ରୀ ରୂପ ଦେଖି ବହୁତ ଦୁଃଖ କଲେ । ସମସ୍ତ ଘଟଣା ଶୁଣିବା ପରେ ଭରତ ନିଜ ମା' କୈକେୟୀଙ୍କୁ ବହୁତ କଟୁ କଥା କହିଲେ ଏବଂ ରାମଙ୍କ ବିନା ସେ ବଂଚିବେ ନାହିଁ ବୋଲି ମତ ପ୍ରକାଶ କଲେ । ଶତ୍ରୁଘ୍ନ ମନ୍ଥରା ଯୋଗୁଁ ଏଭଳି ଅନିଷ୍ଟ ହୋଇଥିବା ଜାଣି ତାକୁ ମାରି ମାରି ଅଯୋଧ୍ୟାରୁ ତଡ଼ି ଦେଲେ । ପିତା ଦଶରଥଙ୍କ ଅନ୍ତ୍ୟେଷ୍ଟି କ୍ରିୟା ପରେ ଭରତ ରାମଚନ୍ଦ୍ରଙ୍କୁ ଫେରାଇ ଆଣିବା ପାଇଁ ବଣକୁ ବାହାରିଲେ । କୈକେୟୀ ନିଜର ଭୁଲ୍ ବୁଝି ପାରିଥାନ୍ତି । ସେ ମଧ୍ୟ କୃତକର୍ମ

ପାଇଁ ବହୁତ ଅନୁତାପ କଲେ ମାତ୍ର ସେତେବେଳକୁ ଯାହା ଘଟିବା କଥା ଘଟି ସାରିଲାଣି । ବଶିଷ୍ଠ, ପାତ୍ରମନ୍ତ୍ରୀ, ମା'ମାନଙ୍କୁ ନେଇ ଭରତ ରାମଙ୍କ ଅନୁସନ୍ଧାନରେ ବାହାରି ପଡ଼ିଲେ ।

ପିତାଙ୍କ ଚିତ୍ରକୂଟ ପର୍ବତରେ ରାମଙ୍କ ସହ ତାଙ୍କର ସାକ୍ଷାତ ହେଲା । ପରଲୋକ ଗମନ ସମ୍ବାଦରେ ରାମଚନ୍ଦ୍ର ବହୁତ ଦୁଃଖିତ ହେଲେ ଏବଂ ପିତାଙ୍କ ଉଦ୍ଦେଶ୍ୟରେ ରାମ, ଲକ୍ଷ୍ମଣ ଓ ସୀତା ସ୍ନାନ ତର୍ପଣ ଆଦି କଲେ । ମହାତ୍ମା ଭରତ ରାମଙ୍କ ପାଦତଳେ ପଡ଼ି ଅଯୋଧ୍ୟାକୁ ଫେରିଯିବା ପାଇଁ ବ୍ୟାକୁଳ ଭାବରେ ପ୍ରାର୍ଥନା କଲେ । ଗୁରୁ ବଶିଷ୍ଠ ମା'ମାନେ ଏବଂ ମନ୍ତ୍ରୀମାନେ ରାମଙ୍କୁ ବହୁତ ବୁଝାଇଲେ । ମାତ୍ର ସତ୍ୟ ସନ୍ଧ ରାମଚନ୍ଦ୍ର ବୁଝାଇ ଦେଲେ ଯେ, ପିତାଙ୍କ ସତ୍ୟରକ୍ଷା କରିବା ପାଇଁ ସେ ବଣକୁ ଆସିଛନ୍ତି । ଚଉଦବର୍ଷ ପୂର୍ବରୁ ଅଯୋଧ୍ୟା ଫେରିଯିବା ଦ୍ୱାରା ପିତାଙ୍କ ପ୍ରତି ଅବମାନନା ହେବ ଓ ସତ୍ୟ ଭଗ୍ନ ହେବ । ଏ କଳଙ୍କ ରଘୁବଂଶରେ ଲାଗିବାପାଇଁ ସେ ଦେବେନାହିଁ ।

ଭରତ କହିଲେ—'ଭାଇ ! ଅଯୋଧ୍ୟା ରାଜ ସିଂହାସନ ଆପଣଙ୍କର । ମୁଁ ଆପଣଙ୍କ ସେବକମାତ୍ର । ଆପଣ ଯଦି ଅଯୋଧ୍ୟା ନ ଫେରିବେ ତେବେ ମୋତେ ଆପଣଙ୍କ ପାଦର କଠାଉ ଦୁଇଟି ଦିଅନ୍ତୁ । ମୁଁ ସେ ପବିତ୍ର କଠାଉକୁ ସିଂହାସନରେ ସ୍ଥାପନ କରି ପୂଜା କରିବି ଏବଂ ଆପଣଙ୍କର ସେବକ ରୂପେ ରାଜକାର୍ଯ୍ୟ ଦେଖାଶୁଣା କରିବି । ମୁଁ ମଧ୍ୟ ଆପଣଙ୍କ ଭଳି ବନବାସୀ ପୋଷାକ ପିନ୍ଧି ନିରାଡ଼ମ୍ବର ଜୀବନ ଯାପନ କରିବି ।"

ଭ୍ରାତୃଭକ୍ତ ଭରତଙ୍କ ଏ ବିନମ୍ର ଅଳିକୁ ରାମଚନ୍ଦ୍ର ଟାଳି ପାରିଲେ ନାହିଁ । ସେ ନିଜର ପାଦୁକା ଦୁଇଟି ଭରତଙ୍କୁ ଦେଇ ବୁଝାଇ ସୁଝାଇ ଅଯୋଧ୍ୟା ଫେରାଇ ଦେଲେ । ଭରତ ନନ୍ଦୀଗ୍ରାମ ଠାରେ ସମସ୍ତ ରାଜ ସୁଖ ପରିତ୍ୟାଗ କରି ରାମଙ୍କ ପାଦୁକା ପୂଜା କରି ରାଜ ପ୍ରତିନିଧି ରୂପେ ରାଜ୍ୟର ଶାସନ କାର୍ଯ୍ୟ ବୁଝିଲେ । ତାଙ୍କର ଏଭଳି ସ୍ୱାର୍ଥତ୍ୟାଗ ଲାଗି ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ । ଶତ୍ରୁଘ୍ନ ମଧ୍ୟ ଭରତଙ୍କ ଭଳି ନିରାଡ଼ମ୍ବର ଭାବେ ରହି ଭରତଙ୍କୁ ସାହାଯ୍ୟ କରିବାରେ ଲାଗିଲେ ।

ରାମ, ଲକ୍ଷ୍ମଣ ଓ ସୀତା ବନରୁ ବନ ବୁଲି କାଳ କଟାଉଥାନ୍ତି । ଫଳମୂଳ ଖାଉଥାନ୍ତି । କୁଡ଼ିଆଘର କରି ରହୁଥାନ୍ତି । ଲକ୍ଷ୍ମଣ କିନ୍ତୁ କୌଣସି ଖାଦ୍ୟ ଗ୍ରହଣ ନକରି, ରାତିରେ ନଶୋଇ ରାମ ଜାନକୀଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥାନ୍ତି ।

ଅନେକ ଦିନପରେ ରାମଚନ୍ଦ୍ର ପଞ୍ଚବଟୀ ବନରେ ପହଞ୍ଚିଲେ । ସେ ବନର ପ୍ରାକୃତିକ ଶୋଭାରେ ମୁଗ୍ଧ ହୋଇ ସେଠାରେ ବନବାସର ଅବଶିଷ୍ଟ ଦିନ କଟାଇବାକୁ ଠିକ୍ କଲେ । ଲକ୍ଷ୍ମଣ ସୁନ୍ଦର କୁଡ଼ିଆଟିଏ ତିଆରି କରିଦେଲେ । ସେଠାରେ ତିନି ଜଣଙ୍କ ଦିନଗୁଡ଼ିକ ବେଶ୍ ଆନନ୍ଦରେ କଟିଯାଉଥାଏ ।

ଗୋଲାପ ଫୁଲରେ ଭର୍ତ୍ତିଥାଏ । ସେହିଭଳି ପାଞ୍ଚଟି ବିଶାଳ ବିଶାଳ ବରଗଛ ଏଠାରେ ଶୋଭା ପାଉଥିବାରୁ ପଞ୍ଚବଟୀ କୁହାଯାଉଥିବା ବନଭୂମି ଓ ବିନ୍ଧ୍ୟାଚଳର ଜନପଦ ସବୁରେ ଆଧିପତ୍ୟ ଥାଏ ରାକ୍ଷସମାନଙ୍କର । ରାବଣର ଭଉଣୀ ସୂପର୍ଣ୍ଣଖା ଓ ସମ୍ପର୍କୀୟ ଭାଇ ଖର ଓ ଦୂଷଣ ରାବଣର ପ୍ରତିନିଧି ରୂପେ ସେ ଅଞ୍ଚଳରେ ଶାସନ ଚଳାଉଥାନ୍ତି । ପବିତ୍ର ଗୋଦାବରୀ ନଦୀ କୁଳୁ କୁଳୁ ନାଦରେ ପଞ୍ଚବଟୀ ଦେଇ ବହୁଯାଉଥାଏ ।

ତାପରର କଥା : ସୂପର୍ଣ୍ଣଖା ବୁଲିବୁଲି କରୁ କରୁ ହଠାତ୍ ସେ ଆଶ୍ରମ ନିକଟରେ ପହଞ୍ଚିଗଲା । ସେତେବେଳକୁ ରାମ, ଲକ୍ଷ୍ମଣ ଓ ସୀତା ଆଶ୍ରମରେ ଥାନ୍ତି । ରାମଚନ୍ଦ୍ରଙ୍କ ସୁନ୍ଦର ରୂପ ଦେଖି ସୂପର୍ଣ୍ଣଖା ତାଙ୍କୁ ବାହାହେବ ବୋଲି ଭାବିଲା । ସେ ତ ମାୟାବିନୀ । ସଙ୍ଗେ ସଙ୍ଗେ ନିଜର ରୂପ ବଦଳାଇ ଗୋଟାଏ ସୁନ୍ଦରୀ କନ୍ୟା ରୂପ ଧରିଲା ଓ ନାଚି ନାଚି ଆଶ୍ରମରେ ପହଞ୍ଚିଗଲା । ସେ ରାମଙ୍କ ପାଖକୁ ଯାଇ ତାଙ୍କୁ ବାହା ହେବାକୁ ଇଚ୍ଛାକରେ ବୋଲି ନିଜର ମନକଥା ଜଣାଇଲା । ରାମ ରାକ୍ଷସୀର ମାୟା ଜାଣିପାରିଲେ । ସେ ନିଜେ ବିବାହିତ ଓ ତାଙ୍କ ସ୍ତ୍ରୀ ସୀତା କୁଟୀର ଭିତରେ ଅଛନ୍ତି ବୋଲି ଜଣାଇଦେଲେ । ସୂପର୍ଣ୍ଣଖା ସେଠୁ ଲକ୍ଷ୍ମଣଙ୍କ ପାଖକୁ ଯାଇ ତାଙ୍କୁ ବାହା ହୁଅନ୍ତୁ ବୋଲି ଅନୁରୋଧ କଲା, ଲକ୍ଷ୍ମଣ ମଧ୍ୟ ମନା-କଲେ । ଏହି ସମୟରେ ସୀତା କୁଟୀରରୁ ବାହାରକୁ ଆସୁଥିବା ଦେଖି ମନ୍ଦବୁଦ୍ଧି ରାକ୍ଷସୀ ତାଙ୍କୁ ଖାଇବ ବୋଲି ନିଜ ରୂପଧରି ଗୋଡ଼ାଇଲା । ମାତ୍ର ତରୁଣ ଲକ୍ଷ୍ମଣ ରାକ୍ଷସୀର ନାକ ଓ କାନ କାଟି ଦେଲେ । ରାକ୍ଷସୀ ପ୍ରାଣ ବିକଳରେ ଛାଟିପିଟି ହୋଇ ପଳାଇଗଲା । କିଛି ସମୟ ପରେ ଖର ଓ ଦୂଷଣଙ୍କ ନେତୃତ୍ୱରେ ହଜାର ହଜାର ରାକ୍ଷସ ରାମଙ୍କ ଆଡ଼କୁ ମାଡ଼ି ଆସିଲେ ଓ ଆକ୍ରମଣ ଆରମ୍ଭ କରିଦେଲେ । ମାତ୍ର ଭଗବାନ ରାମଚନ୍ଦ୍ର ଓ ଲକ୍ଷ୍ମଣ ନିଜର ଅବ୍ୟର୍ଥ ଶର ଦ୍ୱାରା ଖର ଓ ଦୂଷଣ ସମେତ ସମସ୍ତ ରାକ୍ଷସମାନଙ୍କୁ ମାରି ପକାଇଲେ । ନିରୁପାୟ ହୋଇ ସୂପର୍ଣ୍ଣଖା ମହାପ୍ରତାପୀ ନିଜ ଭାଇ ରାବଣ ନିକଟରେ ଫେରାଦ ହେଲା । କାନ୍ଦି କାନ୍ଦି ନିଜର ଦୁର୍ଦ୍ଦଶା ଓ ରାକ୍ଷସ ବାହିନୀର ଧ୍ୱଂସ କଥା ଜଣାଇଲା । ସୀତାଙ୍କର ସୌନ୍ଦର୍ଯ୍ୟ କଥା କହି ତାଙ୍କୁ ଆଣି ରାବଣ ନିଜର ରାଣୀ କରୁ ବୋଲି ମଧ୍ୟ ପ୍ରବର୍ତ୍ତାଇଲା । ରାବଣ ସୂପର୍ଣ୍ଣଖାକୁ ସାନ୍ତ୍ୱନା ଦେଲା ଏବଂ ରାମଙ୍କ ପ୍ରତିଶୋଧ ନେବ ବୋଲି ପ୍ରତିଜ୍ଞା କଲା । ସେ ମାରୀଚ ନାମକ ମାୟାବୀ ରାକ୍ଷସକୁ ସ୍ୱର୍ଣ୍ଣମୃଗ ସାଜି ରାମଙ୍କ ଆଶ୍ରମ ନିକଟରେ ଚରିବୁଲି କରିବା ପାଇଁ ପଠାଇଦେଲା ।

ସେହି ସ୍ୱର୍ଣ୍ଣହରିଣର ଚମତ୍କାର ରୂପ ସୀତାଙ୍କୁ ମୁଗ୍ଧ କଲା । ସେଇଟାକୁ ଧରି ଆଣିଦେବା ପାଇଁ ସେ ରାମଚନ୍ଦ୍ରଙ୍କୁ ଅନୁରୋଧ କଲେ । ରାମଚନ୍ଦ୍ର ସୀତାଙ୍କ ଅନୁରୋଧ ଟାଳି ପାରିଲେ ନାହିଁ । ଲକ୍ଷ୍ମଣଙ୍କୁ ଆଶ୍ରମ ଜଗିବା ପାଇଁ ଆଦେଶ ଦେଇ ସେ ହରିଣ ପଛରେ ଗୋଡ଼ାଇଲେ । ମାୟାମୃଗ ଲୁଚକାଳି ଖେଳି ଖେଳି ରାମଙ୍କୁ ଭୁଲାଇ ଗଭୀର ବନ ଭିତରକୁ ନେଇଗଲା । ରାମଚନ୍ଦ୍ର ଅସୁରମାୟା ଜାଣିପାରି ତାକୁ ଶରଘାତ କଲେ । ଶର ବାଜିବା କ୍ଷଣି ହରିଣ ରୂପ ହଜିଯାଇଗଲା ଓ ରାକ୍ଷସ ମାରୀଚ ତଳେ ପଡ଼ି ଛଟପଟ ହେଲା । ସେ ମରିବ

ପୂର୍ବରୁ ଅବିକଳ ରାମଙ୍କ ସ୍ୱରରେ ଚିତ୍କାର କଲା ହା...ସୀତେ...ହାୟ ଲକ୍ଷ୍ମଣ ମୋତେ ବଞ୍ଚାଅ ।” ଏ ସ୍ୱର ଶୁଣିବା କ୍ଷଣି ସୀତା ବ୍ୟସ୍ତ ହୋଇପଡ଼ିଲେ । ସ୍ୱାମୀଙ୍କୁ ବିପଦ ହେଉଛି ଏବଂ ସେ ସାହାଯ୍ୟ ଚାହାନ୍ତି ବୋଲି ତାଙ୍କର ଧାରଣା ହେଲା । ଲକ୍ଷ୍ମଣଙ୍କୁ ସେ ସଙ୍ଗେ ସଙ୍ଗେ ଜଙ୍ଗଲ ଭିତରକୁ ଯିବାପାଇଁ ଆଦେଶ ଦେଲେ । ଲକ୍ଷ୍ମଣ କହୁ ଏହା ସବୁ ରାକ୍ଷସ ମାୟା ଏବଂ ରାମଚନ୍ଦ୍ରଙ୍କ ପ୍ରତି କିଛି ବିପଦର ଆଶଙ୍କା ନାହିଁ ବୋଲି ସେତେ ବୁଝାଇଲେ ମଧ୍ୟ ସୀତା ବୁଝିଲେ ନାହିଁ ସେ ଲକ୍ଷ୍ମଣଙ୍କୁ ଅନେକ କଟୁ କଥା କହିଲେ । ଶେଷରେ ଲକ୍ଷ୍ମଣ ବାଧ୍ୟ ହୋଇ ବନ ଭିତରକୁ ଯିବାକୁ ବାହାରିଲେ । ଯିବା ପୂର୍ବରୁ ଶର ମୂନରେ ତିନୋଟି ଗାର କାଟି ଦେଇ କହିଲେ—“ମା’ ଯେତେ ଯାହାହେଲେବି ଏ ଗାର ଡେଇଁ ବାହାରକୁ ପାଦ ବଢ଼ାଇବ ନାହିଁ । ଗାର ଡେଇଁଲେ ବିପଦ ଘଟିପାରେ ।” ସୀତା ରାଜି ହେଲେ ଓ ଲକ୍ଷ୍ମଣ ଘଟଣା ଜାଣିବା ପାଇଁ ଜଙ୍ଗଲ ଭିତରକୁ ଦୌଡ଼ିଗଲେ ।

ଲକ୍ଷ୍ମଣ ଯିବା ପରେ ପରେ ରାବଣ ଏକ ବୃଦ୍ଧ ତପସ୍ୱୀ ବେଶ ଧରି ଆଶ୍ରମକୁ ଆସିଲା । ମାତ୍ର ଲକ୍ଷ୍ମଣଙ୍କ ଶକ୍ତିଗାର ଡେଇଁ ଭିତରକୁ ଯାଇପାରିଲା ନାହିଁ । ବାହାରେ ରହି ଭିକ୍ଷା ମାଗିଲା । ସୀତା ଭିକ୍ଷା ନେଇ ଆସିଲେ । ଭଣ୍ଡ ତପସ୍ୱୀର ମନଭୁଲାଣିଆ କଥାରେ ଭୁଲି ସୀତା ଗାର ଡେଇଁ ଭିକ୍ଷା ଦେବାକୁ ଚାଲି ଆସିଲେ । ରାବଣ ନିଜର ରୂପଧରି ସୀତାଙ୍କୁ ଟାଣି ନେଲା ଓ ପୁଷ୍ପକ ବିମାନରେ ବସାଇ ଲଙ୍କାପୁରୀକୁ ଉଡ଼ିଗଲା ।

ସୀତା ବିକଳରେ କାନ୍ଦୁଥାନ୍ତି । ତାଙ୍କର କ୍ରନ୍ଦନ ଧ୍ୱନି ସାରା ବନକୁ କମ୍ପାଇ ଦେଉଥାଏ । ରାସ୍ତାରେ ଦଶରଥଙ୍କ ମିତ୍ର ଜଟାୟୁ ପକ୍ଷୀ ସୀତାଙ୍କ ଦୁର୍ଦ୍ଦଶା ଦେଖି ତାଙ୍କୁ ରକ୍ଷା କରିବା ନିମନ୍ତେ ଚେଷ୍ଟାକଲା । ପକ୍ଷୀରାଜ ନିଜର ମୁନିଆ ନଖ ଓ ଥଣ୍ଟ ଆଘାତରେ ରାବଣକୁ କ୍ଷତ ବିକ୍ଷତ କରି ପକାଇଲା ; ମାତ୍ର ପ୍ରତାପୀ ରାବଣ ନିଜର ଶକ୍ତିଶାଳୀ ଖଣ୍ଡାରେ ଜଟାୟୁର ଡେଣା କାଟି ପକାଇଲା । ଡେଣା କଟିଯିବାରୁ ରକ୍ତାକ୍ତ ଅବସ୍ଥାରେ ଜଟାୟୁ ତଳକୁ ଖସି ପଡ଼ିଲା । ସୀତା ଆକାଶ ମାର୍ଗରେ ଯାଉଥିବା ସମୟରେ ନିଜର ସବୁ ଅଳଙ୍କାର ପତ୍ର ନିଜର ଲୁଗାକାନି ଚିରି ସେଥିରେ ବାନ୍ଧି ସଙ୍କେତ ସ୍ୱରୂପ ତଳକୁ ପକାଇ ଦେଲେ । ତାହାଯାଇ ଏକ ପର୍ବତ ଉପରେ ପଡ଼ିଲା । ରାବଣ ସୀତାଙ୍କୁ ନେଇ ଅଶୋକ ବନମଧ୍ୟରେ ଅସୁରୁଣୀମାନଙ୍କ ଜଗୁଆଳ ଘେରରେ ନଜର ବନ୍ଦୀ ଅବସ୍ଥାରେ ରଖାଇଲା । ତାଙ୍କୁ କେତେବେଳେ ଭୟଦେଖାଇ କେତେବେଳେ କୋମଳ କଥା କହି ନିଜର ବୀରତ୍ୱ ଓ ବିଭବ କଥା ଶୁଣାଇ ନିଜର ରାଣୀ ହେବାକୁ ରାଜି କରାଇବା ଚେଷ୍ଟାରେ ଥାଏ । ମାତ୍ର ସୀତା ଅଖିଆ ଅପିଆ କାନ୍ଦି କାନ୍ଦି ନିଜ ସ୍ୱାମୀ ଶ୍ରୀରାମଙ୍କ ନାମ ସ୍ମରଣ କରି ମୁହଁ ପୋତି ବସି ରହିଥାନ୍ତି ।

ଏଣେ ରାମ ଲକ୍ଷ୍ମଣ ଜଙ୍ଗଲରୁ ଫେରି ସୀତାଙ୍କୁ ନଦେଖି ପ୍ରମାଦ ଗଣିଲେ । ଭିକ୍ଷାଦେବା ଗୁଣ୍ଡି ଫଳମୂଳ ସେଠି ବିଞ୍ଚି ହୋଇ ପଡ଼ିରହିଥାଏ । ରଥଚକର ଚିହ୍ନ

ଦେଖାଯାଉଥାଏ ମାତ୍ର ତାହା କେଉଁ ଦିଗକୁ ଯାଇଛି ଜଣା ପଡୁନଥାଏ । ଦୁଇଭାଇ ସୀତାଙ୍କୁ ବ୍ୟାକୁଳ ଭାବେ ଖୋଜା ଖୋଜି କଲେ କିନ୍ତୁ କୌଣସି ସନ୍ଧାନ ପାଇଲେ ନାହିଁ । ଏଭଳି ଖୋଜି ଖୋଜି ଯାଉ ଯାଉ ସେମାନେ ଜଟାୟୁ ପକ୍ଷୀର ସନ୍ଧାନ ପାଇଲେ । ଜଟାୟୁର ଶେଷ ଅବସ୍ଥା । ରାବଣ ସୀତାଙ୍କୁ ରଥରେ ବସାଇ ଦକ୍ଷିଣ ଆଡ଼କୁ ଉଡ଼ିଯିବା କଥା ଜଣାଇଦେଲା । ରାବଣ ସହିତ ଯୁଦ୍ଧ କରି ଏପରି ଦୁର୍ଦ୍ଦଶା ଭୋଗୁଥିବା ଯୋଗୁଁ ରାମଲକ୍ଷ୍ମଣ ଜଟାୟୁ ପ୍ରତି ସମବେଦନା ଜ୍ଞାପନ କଲେ । ଜଟାୟୁ ସୀତାଙ୍କ ସନ୍ଧାନ ଦେଇ ପ୍ରାଣତ୍ୟାଗ କରିବାରୁ ରାମ ଲକ୍ଷ୍ମଣ ଦୁଃଖିତ ହେଲେ ଏବଂ ବିଧାନ ଅନୁସାରେ ଜଟାୟୁର ଶେଷକୃତ୍ୟ ସମାପନ କଲେ । ଦୁଇଭାଇ ଦକ୍ଷିଣ ଦିଗକୁ ଯାଉଥାନ୍ତି । ବାଟରେ କବନ୍ଧ ନାମକ ଏକ ରାକ୍ଷସ ତାଙ୍କୁ ଧରିନେଇ ଖାଇବାକୁ ବସିଲା । ରାକ୍ଷସର ମୁଣ୍ଡ ନଥିଲା । ପେଟରେ ହିଁ ତା'ର ପାଟିଥିଲା । ମାତ୍ର ରାମଚନ୍ଦ୍ର ଶରମାରି ରାକ୍ଷସର ହାତ କାଟି ପକାଇଲେ । ରାକ୍ଷସ ମରିବା ପରେ ଏକ ଗନ୍ଧର୍ବ ହୋଇଗଲା । ସେ ଅଭିଶାପ ଯୋଗୁଁ ରାକ୍ଷସ ଜନ୍ମ ପାଇଥିଲା । ଏବଂ ପ୍ରଭୁ ରାମଚନ୍ଦ୍ର ତାକୁ ମୁକ୍ତ କରିଥିବାରୁ ସେ କୃତଜ୍ଞତା ପ୍ରକାଶ କଲା । ରାମଚନ୍ଦ୍ରଙ୍କୁ କିଷ୍କିନ୍ଧ୍ୟା ଯାଇ ବାନରମାନଙ୍କ ସହ ବନ୍ଧୁତା କରିବା ପାଇଁ ପରାମର୍ଶ ଦେଇ ସେ ସ୍ୱର୍ଗକୁ ଗଲା ।

ରାମଚନ୍ଦ୍ର ସେଠୁ ଯାଇ ମାତଙ୍ଗ ଋଷିଙ୍କ ଶିଷ୍ୟା ଶବରୀଙ୍କ ଆଶ୍ରମରେ ପହଞ୍ଚିଲେ । ଶବରୀ ରାମଚନ୍ଦ୍ରଙ୍କ ଦର୍ଶନ ପାଇଁ ଦୀର୍ଘଦିନ ଅପେକ୍ଷା କରିଥିଲା । ସେ ରାମଚନ୍ଦ୍ରଙ୍କୁ ପାଛୋଟି ନେଲା । ପାଚିଲା ଫଳ ଓ କୋଳି ତୋଳି ଆଣିଲା । ନିଜେ ପ୍ରଥମେ ସେଗୁଡ଼ିକ ଖଟା କି ମିଠା ଚାଖିବା ପରେ ମିଠା ଗୁଡ଼ିକୁ ରାମଙ୍କୁ ଆଦରରେ ଦେଇ ଖାଇବାକୁ ଅନୁରୋଧ କଲା । ଭକ୍ତବତ୍ସଳ ଭଗବାନ ଶବରୀର ଅନାବିଲ ଭକ୍ତିରେ ମୁଗ୍ଧ ହୋଇ ସେ ଅଇଁଠା ଫଳ ଓ କୋଳିକୁ ପରମ ଆନନ୍ଦରେ ଖାଇଲେ । ରାମଚନ୍ଦ୍ର ଶବରୀ ଠାରୁ ପରାମର୍ଶ ଗ୍ରହଣ କରି ସେଠାରୁ ପମ୍ପାସର ଆଡ଼କୁ ଗଲେ । ପମ୍ପାସର ଠାରୁ ସେମାନେ ଯାଇ ବାନର ରାଜ୍ୟ କିଷ୍କିନ୍ଧ୍ୟାରେ ପହଞ୍ଚିଲେ ।

ରାମଙ୍କ ଅବତାର ସମୟରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଉନକୋଟି ଦେବତା ବାନର ରୂପେ ଜନ୍ମ ହୋଇଥିଲେ । ଦ୍ୱାପର ଯୁଗରେ ଏହି ବାନରମାନଙ୍କ ମୂର୍ତ୍ତି କେବଳ ବାନରଭଳି ଥିଲା ଓ ଲମ୍ବା ଲାଙ୍ଗୁଳ ଥିଲେ ମଧ୍ୟ ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଦେବତା ଓ ମଣିଷମାନଙ୍କ ଭଳି ସୁନ୍ଦର ଓ ସୁଦୃଢ଼ ଥିଲା । ଏମାନେ ଅତିକାୟ ଥିଲେ । ସେଭଳି ବୀର ସେହିଭଳି ପଣ୍ଡିତ ମଧ୍ୟ ଥିଲେ ।

କିଷ୍କିନ୍ଧ୍ୟାରେ ରାଜାଥାନ୍ତି ମହାବୀର ବାଳୀ । ତାଙ୍କ ସାନ ଭାଇ ନାମ ସୁଗ୍ରୀବ । ଦୁଇଭାଇଙ୍କ ଭିତରେ ମନୋମାଳିନ୍ୟ ଦେଖା ଦେବାରୁ ବାଳୀ ସୁଗ୍ରୀବଙ୍କୁ ରାଜ୍ୟରୁ ତଡ଼ି ଦେଇଥାନ୍ତି । ସୁଗ୍ରୀବ ଋଷ୍ୟମୂକ ନାମକ ଏକ ପର୍ବତରେ ଦଳ ବଳ ନେଇ ରହୁଥାନ୍ତି । ଅଭିଶାପ ଥିବାରୁ ବାଳୀ ସେ ପର୍ବତକୁ ଆସି ପାରୁନଥାନ୍ତି । ସୁତରାଂ ସୁଗ୍ରୀବ ସେ ପର୍ବତ

ଛାଡ଼ି ଅନ୍ୟଆଡ଼କୁ ଯାଇପାରୁ ନଥାନ୍ତି । ଦୂରରୁ ରାମ ଲକ୍ଷ୍ମଣଙ୍କୁ ଦେଖି ସେମାନେ ଶତ୍ରୁ ନା ମିତ୍ର ଜାଣିବା ପାଇଁ ସୁଗ୍ରୀବ ତାଙ୍କର ଅନୁଚର ହନୁମାନଙ୍କୁ ପଠାଇଲେ ।

ହନୁମାନ ମହାବୀର ଏବଂ ପଣ୍ଡିତ । ସେ ଶିବଙ୍କ ଅଂଶରୁ ଜାତ । ବାୟୁ ଦେବତା ଶିବଙ୍କ ବଭୂତ ନେଇ ଅଞ୍ଜନା ଦେବୀଙ୍କ ଦ୍ୱାରା ହନୁମାନଙ୍କୁ ଜାତ କରାଇଥିବାରୁ ତାଙ୍କୁ ବାୟୁପୁତ୍ର ହନୁମାନ ମଧ୍ୟ କୁହାଯାଏ । ହନୁମାନ ଏତେ ଶକ୍ତିଶାଳୀ ଥିଲେ ଯେ ଜନ୍ମ ପରେ ପରେ ଉଦୟ ହେଉଥିବା ସୂର୍ଯ୍ୟଙ୍କୁ ଗୋଟାଏ ନାଲିଫଳ ଭାବି ଖାଇବାପାଇଁ ଆକାଶକୁ ଉଡ଼ିଗଲେ । ସୂର୍ଯ୍ୟ ମହାଭୟ ପାଇ ଚନ୍ଦ୍ରଙ୍କ ସାହାଯ୍ୟ ଭିକ୍ଷାକଲେ । ଇନ୍ଦ୍ର ବଜ୍ରମାରି ହନୁମାନଙ୍କୁ ମାରି ପକାଇଲେ । ଏଥିରେ ରାଗିଯାଇ ବାୟୁଦେବତା ସଂସାରରେ ବାୟୁଚଳାଚଳ ବନ୍ଦ କରିଦେଲେ । ଚରାଚରର ପ୍ରାଣୀମାନେ ଅଣନିଃଶ୍ୱାସୀ ହୋଇ ମରିବାକୁ ବସିଲେ । ସେତେବେଳେ ସବୁ ଦେବତା ମିଶି ନିଜ ନିଜ ଶକ୍ତି ଦ୍ୱାରା ହନୁମାନଙ୍କୁ ପୁନର୍ଜୀବନ ଦାନ କଲେ ଏବଂ ବ୍ରହ୍ମା ତାଙ୍କୁ କବଚ କୁଣ୍ଡଳ ଦେଲେ । ଇନ୍ଦ୍ର ହନୁମାନଙ୍କୁ ବଜ୍ରଅଙ୍ଗ କରାଇଦେଲେ । ଶକ୍ତିଶାଳୀ ହୋଇ ହନୁମାନ ଫେରିବା ପରେ ବାୟୁଦେବତା ନିଜର କ୍ରୋଧ ପରିତ୍ୟାଗ କଲେ । ମାତ୍ର ହନୁମାନ ନିଜର ଶକ୍ତି ଦ୍ୱାରା ଅନ୍ୟମାନଙ୍କୁ ହଇରାଣ କରିବାରୁ ବ୍ରହ୍ମା ତାଙ୍କୁ ନିଜର ଶକ୍ତିବଳରେ ବଳହୀନ କରାଇଦେଲେ ଏବଂ ରାମଚନ୍ଦ୍ରଙ୍କ ସ୍ପର୍ଶ ପାଇବା ମାତ୍ରେ ହନୁମାନ ପୁଣି ବଳବାନ୍ ହୋଇପାରିବେ ବୋଲି ବର ଦେଇଥିଲେ । ସେହି ହନୁମାନ ବ୍ରାହ୍ମଣ ବେଶରେ ରାମଲକ୍ଷ୍ମଣଙ୍କ ପରିଚୟ ପାଇଲେ । ରାମ ତାଙ୍କୁ ଆଲିଙ୍ଗନ କଲେ । ହନୁମାନଙ୍କ ପୂର୍ବଶକ୍ତି ଫେରିଆସିଲା । ସେ ସେହି ଦିନଠାରୁ ରାମଭକ୍ତ ହନୁମାନ ରୂପେ ପରିଚିତ ହେଲେ । ରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ସେ ସୁଗ୍ରୀବଙ୍କ ନିକଟକୁ ନେଇଗଲେ । ରାମ ଓ ସୁଗ୍ରୀବ ଅଗ୍ନିକୁ ସାକ୍ଷୀ ରଖି ପରସ୍ପର ମିତ୍ରତା ସ୍ଥାପନ କଲେ । ରାମ ବାଲୀଙ୍କୁ ମାରି ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାର ରାଜା କରିବା ନିମନ୍ତେ ପ୍ରତିଜ୍ଞାକଲେ ଏବଂ ସୁଗ୍ରୀବ ସୀତାଙ୍କ ସନ୍ଧାନ ନେଇ ରାବଣ ସହିତ ଯୁଦ୍ଧ କରାଇ ସୀତା ଉଦ୍ଧାରରେ ରାମଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବାପାଇଁ ପ୍ରତିଜ୍ଞା କଲେ ।

ପରେ ବାଲୀ ଓ ସୁଗ୍ରୀବ ଯୁଦ୍ଧକଲା ବେଳେ ଗୋଟାଏ ଶରରେ ବାଲୀ ବଧ କରି ରାମଚନ୍ଦ୍ର ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାରେ ରାଜା କରାଇ ନିଜର ପ୍ରତିଜ୍ଞା ରକ୍ଷାକଲେ । ସେହିଭଳି ସୁଗ୍ରୀବ ମଧ୍ୟ ବାନରସେନା ମାନଙ୍କୁ ସୀତାଙ୍କ ଅନୁସନ୍ଧାନ ପାଇଁ ଚାରିଦିଗକୁ ପଠାଇଲେ । ଦକ୍ଷିଣ ଦିଗ ଅଢେ ସୀତାଙ୍କୁ ନିଆଯାଇଥିବାରୁ ସେ ଦିଗକୁ ଯାଉଥିବା ଦଳରେ ହନୁମାନ-ଅଙ୍ଗଦ, ଜାମ୍ବୁବାନ ପ୍ରଭୃତିଙ୍କୁ ପଠାଗଲା । ସଙ୍କେତ ସ୍ୱରୂପ ରାମଚନ୍ଦ୍ର ନିଜର ବିବାହ ସମୟର ଅଙ୍ଗୁମୁଦିଟି ହନୁମାନଙ୍କୁ ଦେଇଥିଲେ ।

ଏହି ଦଳଟି ସମୁଦ୍ର କୂଳରେ ପହଞ୍ଚିବା ପରେ ବିଶାଳ ସମୁଦ୍ରକୁ କିପରି ପାର କରିପାରିବେ ଚିନ୍ତିତ ହୋଇପଡ଼ିଲେ । ଦେଖିବାକୁ ତାଙ୍କର ସମ୍ପାତି ନାମକ ଏକ ପର୍ବତଭଳି

ବିସ୍ତାରିତ ପକ୍ଷୀ ସହିତ ଦେଖାହେଲା । ସମ୍ପାତି ଥିଲା ଜଟାୟୁର ଭାଇ । ଅତୀତ କାଳରେ ଜଟାୟୁ ଓ ସମ୍ପାତି ନିଜ ନିଜ ମଧ୍ୟରେ ପ୍ରତିଯୋଗିତା କରି ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଉଡ଼ିବା ପାଇଁ ଚେଷ୍ଟା କରିଥିଲେ । ପ୍ରଖର ସୂର୍ଯ୍ୟତେଜ ଯୋଗୁଁ ନିଜର କ୍ଷତ ହେବ ଭାବି ଜଟାୟୁ ପ୍ରତ୍ୟାଗମିବାରୁ ଓହରିଗଲା କିନ୍ତୁ ସମ୍ପାତି ସୂର୍ଯ୍ୟମଣ୍ଡଳ ନିକଟକୁ ଯିବାପାଇଁ ଉଦ୍ୟମ ଅବ୍ୟାହତ ରଖିବାରୁ ତା'ର ପକ୍ଷ ସବୁ ସୂର୍ଯ୍ୟତେଜରେ ପୋଡ଼ିଗଲା ଓ ଦକ୍ଷିଣ ସମୁଦ୍ର କୂଳରେ ଖସି ପଡ଼ିଲା । ସେହି ଦିନଠାରୁ ସେ ସେଠାରେ ରହୁଛି । ବାନରମାନଙ୍କ ଠାରୁ ସମ୍ପାତି ସବୁ କଥା ଶୁଣି ଅଙ୍ଗଦ ପ୍ରଭୃତିଙ୍କୁ ନିଜ ପିଠିରେ ବସାଇ ଆକାଶ ମାର୍ଗକୁ ନେଲେ ଓ ସମୁଦ୍ର ମଝିରେ ଥିବା ଲଙ୍କା ଦ୍ୱୀପ ଦୂରରୁ ଦେଖାଇଦେଲେ ।

ହନୁମାନ ଶ୍ରୀରାମଙ୍କ ନାମ ସ୍ମରଣ କରି ନିଜର ଅପୂର୍ବ ଶକ୍ତିରେ ଆକାଶରେ ଉଡ଼ି ଉଡ଼ି ଲଙ୍କାଗଡ଼ ଯାତ୍ରା କଲେ । ବୀରହନୁମାନଙ୍କ ଶକ୍ତି ସାମର୍ଥ୍ୟ ଓ ବୁଦ୍ଧି ପରୀକ୍ଷା ପାଇଁ ଦେବତାମାନେ ସୁରସା ନାମକ ଜଣେ ଅପ୍ସରାଙ୍କୁ ପଠାଇଲେ । ସୁରସା ଗୋଟିଏ ଭୟଙ୍କର ରାକ୍ଷସୀ ସାଜି ନିଜର ମୁହଁ ମେଲା କରି ସମୁଦ୍ର ଗର୍ଭରୁ ଆକାଶ ଭେଦକରି ରାସ୍ତା ଅବରୋଧ କଲେ । ହନୁମାନ ନିଜର ଦେହକୁ ଖୁବ୍ ବଡ଼ କରିଦେଲେ । ସୁରସା ମଧ୍ୟ ନିଜର ଆକାର ବଢ଼ାଇବାକୁ ଲାଗିଲେ ହଠାତ୍ ହନୁମାନ ନିଜ ଦେହଟାକୁ ଏକଦମ୍ ଛୋଟ କରି ସୁରସାଙ୍କ ପାଟିରେ ପଶି ବାହାରି ଆସିଲେ । ସୁରସା ହାର ମାନିଲେ । ସେ ହନୁମାନଙ୍କ ବୁଦ୍ଧିକୁ ପ୍ରଶଂସା କରି ରାସ୍ତା ଛାଡ଼ିଦେଲେ । ହନୁମାନ ଆକାଶ ମାର୍ଗରେ ପକ୍ଷୀଭଳି ଉଡ଼ିଯାଉଥାନ୍ତି । ଏହି ସମୟରେ ସିଂହିକା ନାମକ ଏକ ରାକ୍ଷସୀ ହନୁମାନଙ୍କୁ ନିଜ ଛାୟା ଦ୍ୱାରା ଆକର୍ଷଣ କଲା । ହନୁମାନ ରାକ୍ଷସୀକୁ ମାରିଦେଲେ ଓ ପୁଣି ଆଗକୁ ଚାଲିଲେ । ପରିଶ୍ରମ ହେତୁ ହନୁମାନଙ୍କ ଦେହରୁ ଝାଳ ସବୁ ବୁନ୍ଦା ବୁନ୍ଦା ହୋଇ ଖସି ସମୁଦ୍ରରେ ପଡ଼ୁଥାଏ । ଗୋଟିଏ ମକର ମାଛ ତାହା ପାଣିପିଇବା ସମୟରେ ପିଇଦେଲା । ସେତିକିବେଳେ ସେ ଗର୍ଭବତୀ ଥିଲା । ହନୁମାନଙ୍କ ଝାଳର ଶକ୍ତି ତା' ଗର୍ଭସ୍ଥ ସନ୍ତାନକୁ ଶକ୍ତି ପ୍ରଦାନ କଲାପରେ ସେ ହନୁମାନଙ୍କ ପୁଅ ମକରଧ୍ୱଜ ରୂପେ ଜନ୍ମ ନେଲା ।

ହନୁମାନଙ୍କୁ ବିଶ୍ରାମ ଦେବା ପାଇଁ ଦେବତାମାନେ ସମୁଦ୍ର ଭିତରେ ବୁଡ଼ି ରହିଥିବା ହିମାଳୟଙ୍କ ପୁତ୍ର ମୈନାକଙ୍କୁ ନିର୍ଦ୍ଦେଶ ଦେଲେ । ମୈନାକ ସମୁଦ୍ର ମଝିରୁ ଉଠି ଦେଖାଦେଲେ ଓ ହନୁମାନଙ୍କୁ ବିଶ୍ରାମ ଓ ଭୋଜନ କରିବା ନିମନ୍ତେ ଅନୁରୋଧ କଲେ । ମାତ୍ର ହନୁମାନଙ୍କ ହାଲିଆ ବା ଭୋକ ଲାଗୁନଥିବାରୁ ସେ ବିନମ୍ରଭାବ ସହ ମନାକରି ରାମନାମ ସ୍ମରଣ ପୂର୍ବକ ଆଗକୁ ଚାଲିଲେ ।

ଶେଷରେ ହନୁମାନ ଲଙ୍କାଗଡ଼ରେ ପହଞ୍ଚିଗଲେ । ବିଶାଳ ଲଙ୍କାନଗରୀକୁ ଜଗି ରହିଥାନ୍ତି ଲଙ୍କାଦେବୀ । ହନୁମାନ ଲଙ୍କାଗଡରେ ପଶିବା ପାଇଁ ଯାଉଥିବା ଦେଖି ଲଙ୍କାଦେବୀ ହିଁ ମୁଖ ଧରି ଗୋଡ଼ାଇ ଆସିଲେ । ହନୁମାନ ସଙ୍ଗେ ସଙ୍ଗେ ଖୁବ୍ ଛୋଟ

ଆକାରର ହୋଇଗଲେ ଏବଂ ଲଙ୍କାଗଡ଼ରେ ପଶିଗଲେ । ଲଙ୍କାଦେବୀ ହନୁମାନଙ୍କୁ ମାଡ଼ୁ ଭଲ ଧରିଦେବା ବେଳକୁ ହନୁମାନ ନିଜ ଦେହକୁ ଖୁବ୍ ବଡ଼ କରିଦେଲେ ଏବଂ ବଜ୍ରଭଳି ଗୋଟାଏ ବିଧା ମାଇଲେ । ବଜ୍ରଅଙ୍ଗ ବଳୀଙ୍କର ସେହି ଗୋଟାଏ ବିଧାରେ ଲଙ୍କାଦେବୀ ରକ୍ତ ବାନ୍ତି କରି ପକାଇଲେ ଓ ଚେତାହରାଇ ତଳେ ପଡ଼ିଗଲେ । ମୁହୂର୍ତ୍ତିକ ପରେ ଲଙ୍କା-ଦେବୀ ଚେତା ପାଇ ହନୁମାନଙ୍କୁ କହିଲେ—"ହେ ମହାବୀର ମତେ ବ୍ରହ୍ମା କହିଥିଲେ ଯେ' ଯେଉଁଦିନ ମୁଁ ଚେତାହରାଇ ପଡ଼ିଯିବି ସେହିଦିନ ଠାରୁ ଲଙ୍କା ନଗରୀର ପତନ ଆରମ୍ଭ ହେବ । ଆଜିଠାରୁ ଏ ଲଙ୍କା ନଗରୀ ଜଗିବା ଦାୟିତ୍ୱ ମୁଁ ଛାଡ଼ିଦେଲି । ତୁମେ ଆନନ୍ଦରେ ଯାଇ ନିଜର କାର୍ଯ୍ୟସିଦ୍ଧ କର ।" କହୁଁ କହୁଁ ଲଙ୍କାଦେବୀ ନିଜର ଅପ୍ସରା ରୂପ ଫେରି-ପାଇଲେ ଓ ଆକାଶ ମାର୍ଗରେ ଉଡ଼ିଗଲେ । ଅଭିଶାପ ପାଇ ସେ ରାକ୍ଷସୀ ରୂପେ ଲଙ୍କାନଗରୀ ଜଗିଥିଲେ ।

ହନୁମାନ ଲଙ୍କାପୁରୀରେ ପ୍ରବେଶ କଲେ । ରାବଣର କାରୁକାର୍ଯ୍ୟ ପୂର୍ଣ୍ଣ, ସୁନା, ରୁପା, ହୀରା, ନୀଳା ଖଚିତ ରାଜ ପ୍ରାସାଦ, ନଗରୀର ସାଜ ସଜ୍ଜା ଓ ବଡ଼ ବଡ଼ କଳାପୂର୍ଣ୍ଣ କୋଠାବାଡ଼ି ଦେଖି ଆଶ୍ଚର୍ଯ୍ୟ ହେଲେ । ସେ କ୍ଷୁଦ୍ର ରୂପଧରି ପ୍ରଥମେ ରାଜପୁରୀ ବୁଲି ବୁଲି ସୀତାଙ୍କୁ ଖୋଜିଲେ । ମାତ୍ର ପାଇଲେ ନାହିଁ । ଏଥର ସେ ଲଙ୍କାନଗରୀ ତମାମ ତନ୍ନ ତନ୍ନ କରି ସୀତାଙ୍କ ସନ୍ଧାନ ନେଲେ । ଦୈବାତ୍ ରାମନାମ ସ୍ମରଣ କରୁଥିବା ବିଭୀଷଣଙ୍କ ସହ ତାଙ୍କର ଭେଟ ହେଲା । ପରେ ଉଭୟେଁ ଉଭୟଙ୍କ ପରିଚୟ ପାଇବାପରେ ଖୋଲା ମନରେ କଥା ହେଲେ । ବିଭୀଷଣ ଅଶୋକ ଉପବନରେ ସୀତାଙ୍କୁ ବନ୍ଦିନୀ ଅବସ୍ଥାରେ ରଖାଯାଇଥିବା କଥା କହିଲେ । ହନୁମାନ ଅଶୋକବନକୁ ଗଲେ ଗୋଟାଏ ଶିଂଶପା ଗଛ ଉପରେ ଲୁଚି ରହି ଦେଖିଲେ ଯେ ସୀତା କାନ୍ଦି କାନ୍ଦି ରାମ ନାମ ସ୍ମରଣ କରୁଛନ୍ତି । ଭୟଙ୍କର ରାକ୍ଷସୀ ମାନେ ତାଙ୍କୁ ଘେରି ରହିଛନ୍ତି । ସୀତାଙ୍କ ସହିତ କିପରି ସାକ୍ଷାତ କରିବେ ସେ ସୁଯୋଗ ଅପେକ୍ଷାରେ ରହିଲେ । ଦେଖୁ ଦେଖୁ ନିଜେ ରାବଣ ଆସି ସେଠାରେ ପହଞ୍ଚିଗଲା । ସେ ସୀତାଙ୍କୁ ନାନା ପ୍ରଲୋଭନ ଦେଖାଇ ନିଜର ରାଣୀ ହେବା ପାଇଁ ପ୍ରବର୍ତ୍ତାଇଲା । ମାତ୍ର ସୀତା ତାକୁ ଧିକ୍କାର କଲେ । ସେ କହିଲେ—"ହେ' ରାବଣ ତୁମେ ଯଦି ତୁମର ଓ ଲଙ୍କାବାସୀଙ୍କ ମଙ୍ଗଳ ଚାହଁ ତେବେ ମୋତେ ରାମଚନ୍ଦ୍ରଙ୍କୁ ସମର୍ପଣ କରି ଶରଣ ପଶିଯାଅ । ନଚେତ୍ ମୋ ସ୍ୱାମୀ ରାମଙ୍କ ଦ୍ୱାରା ତୁମର ସର୍ବନାଶ ହେବ । ରାବଣ ଏଥିରେ ଖୁବ୍ ରାଗିଯାଇ ସୀତାଙ୍କୁ ଧମକ ଦେଇ କହିଲା—"ବନବୁଲା ରାମ ସ୍ୱପ୍ନରେ ବି ଲଙ୍କାଗଡ଼କୁ ଆସି ପାରିବନାହିଁ । ଯଦି ଆସେ ତେବେ ମୋଭଳି ବୀର ବଳଶାଳୀ ହାତରେ ନିଶ୍ଚୟ ମରିବ । ସୀତେ ! ତୁମକୁ ମାତ୍ର ଦୁଇମାସ ସମୟ ଦେଲି । ମାତ୍ର ଦୁଇ ମାସ ଭିତରେ ଭାବଚିନ୍ତି ନିଜର ଭବିଷ୍ୟତ ନିଜେ ଠିକ୍ କର ।" ରାବଣ ଚାଲିଗଲା ପରେ ହନୁମାନ ଗଛରୁ ଖସିଲେ । ସେ ଗଦାଘାତରେ ପ୍ରଥମେ ରାକ୍ଷସୀଗୁଡ଼ାକୁ ଘଉଡ଼ାଇ ଦେଲେ । ନିଜେ ରାମନାମ ଗାନ କରି

ପ୍ରଥମେ ସୀତାଙ୍କ ମନରେ ତାଙ୍କ ପ୍ରତି ବିଶ୍ୱାସ ଜନ୍ମାଇଲେ । ନିଜର ପରିଚୟ ଦେଇ କହିଲେ—"ମା' ମୁଁ ହେଉଛି ପବନ ପୁତ୍ର ହନୁମାନ ଏବଂ ରାମଚନ୍ଦ୍ରଙ୍କ ଭକ୍ତ । ପ୍ରଭୁ ମୋତେ ଆପଣଙ୍କୁ ଠାବ କରିବାପାଇଁ ଲଙ୍କାକୁ ପଠାଇଛନ୍ତି । ସନ୍ଦେହ ପାଇଁ ଏଇ ମୁଦିଟି ମଧ୍ୟ ପଠାଇଛନ୍ତି ।" ହନୁମାନ ସୀତାଙ୍କୁ ରାମଚନ୍ଦ୍ରଙ୍କ ମୁଦିଟି ଦେଲେ । ସୀତା ରାମଙ୍କ ମୁଦି ଚିହ୍ନି ପାରିଲେ । ସେ ହନୁମାନଙ୍କୁ ବିକଳରେ ରାମ ଲକ୍ଷ୍ମଣଙ୍କ କୁଶଳ ପଚାରି ବୁଝିଲେ । ହନୁମାନ ସୀତାଙ୍କ ବିକଳ ଦେଖି ନିଜେ ପ୍ରକାଣ୍ଡ ଶରୀର ଧରି କହିଲେ—"ମା' ଆପଣ ମୋ କାନ୍ଧରେ ବସନ୍ତୁ । ମୁଁ ନେଇ ଆପଣଙ୍କୁ ପ୍ରଭୁଙ୍କ ନିକଟରେ ପହଞ୍ଚାଇ ଦେବି ।"

ସୀତା ହନୁମାନଙ୍କୁ କହିଲେ—"ବତ୍ସ ! ମୋତେ ପଞ୍ଚବଟୀରୁ ରାବଣ ଚୋରାଇ ଆଣିଛି । ଏବେ ରାବଣର ଅଜ୍ଞାତରେ ତୁମେ ମୋତେ ଏଠାରୁ ଚୋରାଇନେଇ ଗଲେ ମୋର ତଥା ରାମଙ୍କର ସମ୍ମାନ ହାନି ହିଁ ସାର ହେବ । ଜଗତ ଲୋକେ ଆମକୁ ନିନ୍ଦା କରିବେ । ବରଂ ତୁମେ ମୋର ମଥାମଣିଟି ନେଇ ରାମଙ୍କୁ ଚିହ୍ନ ସ୍ୱରୂପ ଦିଅ । ଏବଂ ଦୁଇମାସ ମଧ୍ୟରେ ସେ ଲଙ୍କାକୁ ଆସି ରାବଣ ସହିତ ଯୁଦ୍ଧ କରି ମୋତେ ମୁକ୍ତ କରନ୍ତୁ ବୋଲି ସନ୍ଦେଶ ଦିଅ । ଏହାଦ୍ୱାରା ଆମ ସମସ୍ତଙ୍କର ସମ୍ମାନ ବଢ଼ିବ ଓ ପାପାତ୍ମା ଦୁରାଚାର ରାବଣ ନିଜର ପ୍ରତିଫଳ ଭୋଗକରିବ ।' ହନୁମାନ ସୀତାଙ୍କର ମଥାମଣିଟି ପାଖରେ ରଖିଲେ । ଏବଂ ତାଙ୍କର ଅନୁମତି ନେଇ ଅଶୋକବନରୁ ଫଳମୂଳ ଖାଇଲେ । ରାବଣ ପ୍ରତି ହନୁମାନଙ୍କ ମନରେ କ୍ରୋଧ ଥିଲା । ସେ ଅଶୋକ ବନର ଗଛ, ପତ୍ର, ଫୁଲ, ଫଳ ନଷ୍ଟ କରିବାକୁ ଲାଗିଲେ । ହନୁମାନଙ୍କୁ ଗୋଟାଏ ବଡ ମାଙ୍କଡ଼ ଭାବି ବନରକ୍ଷକମାନେ ମାରିଧରି ଗଲେ । ହନୁମାନ ପ୍ରତି ଆକ୍ରମଣ କରି ଅସୁରଗୁଡାକୁ ମାରି ପକାଇଲେ । ଦେଖୁ ଦେଖୁ ଚାରିଆଡ଼େ ଚହଳ ଖେଳିଗଲା । ହନୁମାନଙ୍କୁ ଜବତ କରିବା ପାଇଁ ରାବଣର ସାନପୁଅ ଅକ୍ଷୟକୁମାର ବହୁତ ଅସ୍ତ୍ର ଶସ୍ତ୍ର ନେଇ ଆସିଲା । ହନୁମାନଙ୍କ ସହ ଅସୁରମାନଙ୍କ ପ୍ରବଳ ଯୁଦ୍ଧ ହେଲା । ହନୁମାନ ଅକ୍ଷୟ କୁମାର ସହିତ ବହୁତ ସୈନ୍ୟଙ୍କୁ ମାରିଦେଲେ । ସେତେବେଳକୁ ଅଶୋକ ବନର ଅଧା ଅଧି ଧ୍ୱଂସ ହୋଇ ଯାଇଥାଏ । ଶେଷରେ ରାବଣ ନିଜର ସବୁଠାରୁ ବୀରପୁତ୍ର ଇନ୍ଦ୍ରଜିତକୁ ପଠାଇଲା । ଇନ୍ଦ୍ରଦେବତାଙ୍କୁ ଯୁଦ୍ଧରେ ପରାସ୍ତ କରିଥିବାରୁ ତାହାର ନାମଥିଲା ଇନ୍ଦ୍ରଜିତ । ଜନ୍ମ ସମୟରେ ମେଘଭଳି ନାଦ ବା ଗର୍ଜନ କରିଥିବାରୁ ତାହାର ଅନ୍ୟନାମ ମଧ୍ୟ ମେଘନାଦ । ଇନ୍ଦ୍ରଜିତ ଆସି ସଙ୍ଗେ ସଙ୍ଗେ ସବୁଠାରୁ ଶକ୍ତିଶାଳୀ ଅସ୍ତ୍ର ବ୍ରହ୍ମଅସ୍ତ୍ର ହନୁମାନଙ୍କ ପ୍ରତି ପ୍ରୟୋଗ କଲା । ସେ ଅସ୍ତ୍ର ହନୁମାନଙ୍କର କିଛି କ୍ଷତି କରିପାରି-ନଥାନ୍ତା । ମାତ୍ର ବ୍ରହ୍ମାଙ୍କୁ ସମ୍ମାନ ଦେଖାଇବାକୁ ଯାଇ ସେ ଇଚ୍ଛାବନ୍ଦୀ ବରଣ କଲେ । ତାଙ୍କୁ ରାବଣ ରାଜ ଦରବାରକୁ ନିଆଗଲା । ସେତେବେଳେ ହନୁମାନଙ୍କୁ ତାଙ୍କର ପରିଚୟ ପଚରାଗଲା ହନୁମାନ କହିଲେ– "ମୁଁ ଶ୍ରୀରାମଙ୍କ ଦୂତ । ହନୁମାନ । ତୁମେ ରାମ ମୃଗୟାକୁ ଯାଇଥିବା ବେଳେ ବଳପୂର୍ବକ ତାଙ୍କ ପତ୍ନୀ ମା' ସୀତାଙ୍କୁ ଚୋରାଇ ଆଣି ବଡ ଜଘନ୍ୟ ଅପରାଧ କରିଛ କ୍ଷମାସାଗର ଶ୍ରୀରାମଙ୍କ ନିକଟରେ ସୀତାଙ୍କୁ ସମର୍ପଣ କରି କ୍ଷମା ଭିକ୍ଷାକଲେ

ତୁମେ ରକ୍ଷାପାଇବ, ନଚେତ୍ ଶ୍ରୀରାମଙ୍କ କୋପାନଳରେ ଅବିଳମ୍ବେ ଧ୍ୱଂସ ପାଇବ ।" ହନୁମାନଙ୍କ ଏ ଚେତାବନୀ ଶୁଣି ଉତ୍ତେଜିତ, ରାବଣ ଅଟ୍ଟହାସ କରି ଉଠିଲା ଏବଂ ହନୁମାନଙ୍କୁ ମାରିଦେବା ପାଇଁ ଆଦେଶ ଦେଲା । ମାତ୍ର ବିଭୀଷଣ କହିଲେ—"ମହାରାଜ ! ସବୁକାଳରେ ଦୂତ ଅବଧ୍ୟ । ତାଙ୍କୁ ମାରିବା ଦ୍ୱାରା ଜଗତରେ ଆପଣ ନିନ୍ଦା ପାଇବେ । ବରଂ ଏହାଙ୍କୁ ସାମାନ୍ୟ ଦଣ୍ଡ ଦେଇ ଛାଡ଼ି ଦିଆଯାଉ ।"

ରାବଣ ମନକୁ ଏକଥା ପାଇଲା । ସେ ହନୁମାନଙ୍କ ଲାଙ୍ଗୁଡ଼ରେ କନା ଗୁଡ଼ାଇ ନିଆଁ ଲଗାଇ ପୋଡ଼ିଦେବା ପାଇଁ ଆଦେଶ ଦେଲା । ଆଦେଶ ପାଳିତ ହେଲା । ହନୁମାନ ନିଜ ଲାଙ୍ଗୁଡ଼ର ଆକାର ବଢ଼ାଇ ଦେଲେ । ରାକ୍ଷସ ମାନେ ବସ୍ତ୍ର ଲୁଗାପଟା ସଂଗ୍ରହ କରି ଲାଙ୍ଗୁଡ଼ରେ ଗୁଡ଼ାଇଲେ ତେଲ ମଧ ଢଳା ହେଲା ଓ ଶେଷରେ ହନୁମାନଙ୍କ ଲାଙ୍ଗୁଡ଼ରେ ନିଆଁ ଲଗାଇ ଦିଆଗଲା । ହନୁମାନ ନିଜର ଦେହ ଆକାର ବଢ଼ାଇ ଦେବାରୁ ବନ୍ଧନ ଦଉଡ଼ି ଗୁଡ଼ାକ ଆପେ ଆପେ ଛିଣ୍ଡି ଗଲା । ସେ ବନ୍ଧନ ମୁକ୍ତ ହୋଇ ହୁଙ୍କାର ଦେଇ ଛାତ ଉପରକୁ ଉଠି ଗଲେ । ଜଳୁଥିବା ନିଜର ଲାଙ୍ଗୁଡ଼ ସାହାଯ୍ୟରେ ସମଗ୍ର ଲଙ୍କା ନଗରରେ ନିଆଁ ଲଗାଇ ଦେଲେ । ଦେଖୁଁ ଦେଖୁଁ ଏଡେ ବଡ ନଗରୀ ହନୁମନ୍ତଙ୍କର ଅଗ୍ନିରେ ପୋଡ଼ି ଧ୍ୱଂସ ହୋଇଗଲା । ଚାରିଆଡ଼େ ରାକ୍ଷସ ରାକ୍ଷସୀ ମାନଙ୍କର କୋଳାହଳ ଓ କନ୍ଦାକଟା ଶୁଭାଗଲା । ବୀର ହନୁମାନ ଲଙ୍କା ପୋଡ଼ି ଦେଇ ସମୁଦ୍ରରେ ନିଜ ଲାଙ୍ଗୁଡ଼ ବୁଡ଼ାଇ ନିଆଁ ଲିଭାଇ ଦେଲେ । ସୀତାଙ୍କୁ ଦେଖାକରି ଆଶୀର୍ବାଦ ନେଇ ବାହୁଡ଼ା ଯାତ୍ରା ଆରମ୍ଭ କଲେ । ଯଥା ସମୟରେ ଦକ୍ଷିଣ ସମୁଦ୍ର ତଟରେ ପହଞ୍ଚିଗଲେ । ସେଠାରୁ ସଦଳବଳେ ଫେରିଆସି ଶ୍ରୀରାମଙ୍କ ପାଖକୁ ଗଲେ । ହନୁମାନଙ୍କ ଠାରୁ ସୀତାଙ୍କ ମଥାମଣି ପାଇ ରାମଚନ୍ଦ୍ର ଖୁସି-ହେଲେ । ପ୍ରାଣପ୍ରିୟା ସୀତାଙ୍କ ଦୁରବସ୍ଥା ମନେ ପକାଇ ଦୁଃଖିତ ମଧ୍ୟ ହେଲେ । ହନୁମାନଙ୍କ ଏଭଳି ସାହସିକ କାମ ପାଇଁ ରାମଚନ୍ଦ୍ର ତାଙ୍କୁ ଆଶୀର୍ବାଦ ଦେଲେ । ଏଥର ରାମ, ଲକ୍ଷ୍ମଣ, ସୁଗ୍ରୀବ ଇତ୍ୟାଦି ଲଙ୍କା ବିଜୟ ପାଇଁ ପ୍ରସ୍ତୁତ ଆରମ୍ଭ କଲେ ।

ଲଙ୍କା ପୋଡ଼ି ପରେ ରାବଣ ଦୁଃଖିତ ହେଲା । ସେ ବିଶ୍ୱକର୍ମାଙ୍କୁ ଡ଼କାଇ କମ୍ ସମୟ ମଧ୍ୟରେ ଲଙ୍କାପୁରୀର ପୁନଃ ନିର୍ମାଣ କରାଇଲା । ଏଣେ ଦରବାରରେ ବିଭୀଷଣ ରାବଣଙ୍କୁ ନମ୍ର ସହକାରେ ଜଣାଇ ଦେଲେ "ହେ ଅଗ୍ରଜ ! ଶ୍ରୀ ରାମଚନ୍ଦ୍ର ହେଉଛନ୍ତି ସ୍ୱୟଂ ଭଗବାନଙ୍କ ଅବତାର । ତାଙ୍କର ସାମାନ୍ୟ ଦୂତ ହନୁମାନ କମ୍ ସମୟ ମଧ୍ୟରେ ଲଙ୍କା ପୁରୀର ଯେଉଁ କ୍ଷତି କରିଗଲେ ତାହାହିଁ ପ୍ରମାଣ ପାଇଛେ । ସୁତରାଂ ପରମ ବୀର ପୁରୁଷୋତ୍ତମ ରାମଙ୍କ ସହିତ ଶତ୍ରୁତା ନକରିବା ଉଚିତ । ଆପଣ ସସମ୍ମାନେ ସୀତାଙ୍କୁ ଫେରାଇ ରାମଚନ୍ଦ୍ରଙ୍କ ସହ ମିତ୍ରତା ସ୍ଥାପନ କରନ୍ତୁ ନଚେତ୍ ଆମର ଆଦୌ ମଙ୍ଗଳ ହେବ ନାହିଁ ।

କଥାରେ ଅଛି ମରଣକାଳେ ବିପରୀତ ବୁଦ୍ଧି । ବିଭିଷଣଙ୍କ କଥା ଶୁଣିକି ରାବଣଙ୍କୁ ବହୁ ରାଗ ମନେହେଲା । ସେ ବିଭିଷଣଙ୍କୁ ଭୀରୁ, କାପୁରୁଷ ଆଖ୍ୟା ଦେଇ ଅପମାନ ଦେଇ ରାଜ୍ୟ ଛାଡ଼ି ଚାଲିଯିବା ପାଇଁ ଆଦେଶ ଦେଲା । ବିଭିଷଣ ସେହି ଦିନଠାରୁ ଲଙ୍କା ଛାଡ଼ି ଚାଲିଗଲେ ।

ରାବଣର ରାଣୀ ମନ୍ଦୋଦରୀ, ମା' କଇକେଶୀ, ଶ୍ୱଶୁର ମୟଦାନବ ପ୍ରଭୃତି ରାବଣଙ୍କୁ ବହୁତ ବୁଝାଇଲେ । ସୀତାଙ୍କୁ ଫେରାଇ ଯୁଦ୍ଧ ବନ୍ଦ କରିବା ପାଇଁ ପରାମର୍ଶ ମାନ ଦେଲେ । ମାତ୍ର ରାବଣ ନିଜ ବଳରେ ଏତେ ଗର୍ବୀ ହୋଇ ପଡିଥିଲା ଯେ ସେ କାହାରି କଥା ଶୁଣିଲା ନାହିଁ ।

ଏଣେ ରାମଚନ୍ଦ୍ର ବାନର ସେନାଙ୍କୁ ଧରି ଲଙ୍କାଯାତ୍ରା ପାଇଁ ଦକ୍ଷିଣ ସମୁଦ୍ର ତଟରେ ଉପସ୍ଥିତ ହେଲେ । ସମୁଦ୍ର ପାର ହେବାପାଇଁ ନାନା ବିଚାର ପରେ ଠିକ୍ ହେଲା ଯେ ସମୁଦ୍ର ଉପରେ ଏକ ବନ୍ଧ ବାନ୍ଧି ଲଙ୍କାକୁ ଯିବା ଉଚିତ ହେବ । ବାନର ସେନାଙ୍କ ମଧ୍ୟରେ ନଳ ଥିଲେ ବନ୍ଧ ନିର୍ମାଣରେ ଦକ୍ଷ । ନଳଙ୍କର ଅଦ୍ଭୁତ ଶକ୍ତି ଥିଲା ଯେ ସେ ଯେଉଁ ପଥରକୁ ଛୁଇଁ ଦେଉଥିଲେ ତାହା ପାଣିରେ ନବୁଡ଼ି ଭାସୁଥିଲା । ଏ ଭଳି ଭାସୁଥିବା ପଥର, ବାଲି, ଗଛପତ୍ର, ଗଣ୍ଡି, ମାଟି ଦ୍ୱାରା ସୁଦୃଢ଼ ବନ୍ଧଟିଏ ବନ୍ଧା ହେଲା । ଏହି ବନ୍ଧର ନାମ ହେଲା ସେତୁବନ୍ଧ । ରାମଚନ୍ଦ୍ର ସେତୁବନ୍ଧ ନିର୍ମାଣରେ ସଫଳତା ହାସଲ ପାଇଁ ରାମେଶ୍ୱର ଶିବ ଲିଙ୍ଗ ସ୍ଥାପନ କରି ପୂଜା ଅର୍ଚ୍ଚନା କରିଥିଲେ ।

ସେତୁ ବନ୍ଧ ନିର୍ମାଣ ପରେ ପରେ ଦେଖାଗଲା ବିଭୀଷଣ ନିଜର ଅନୁଚର ମାନଙ୍କ ସହ ଆସି ଶ୍ରୀରାମଙ୍କ ଶରଣ ପଶିଲେ । ଶତ୍ରୁ ଭାବି ଅନ୍ୟମାନେ ବିଭୀଷଣଙ୍କୁ ଆଶ୍ରୟ ଦେବା ପାଇଁ ଇଚ୍ଛା କରୁନଥିଲେ । କିନ୍ତୁ ଦୟାଳୁ ରାମଚନ୍ଦ୍ର ଆଦରରେ ବିଭୀଷଣଙ୍କୁ ଗ୍ରହଣ କଲେ ଏବଂ ବିଭୀଷଣଙ୍କୁ ଲଙ୍କାର ଭାବି ରାଜା ରୂପେ ଘୋଷଣା କରି ଅଭିଷେକ କରାଇଦେଲେ । ଏଥର ସେତୁବନ୍ଧ ଉପର ଦେଇ ରାମଚନ୍ଦ୍ର ନିଜର ବାନରସେନା ନେଇ ସହଜରେ ଲଙ୍କାରେ ପ୍ରବେଶ କଲେ ।

ଗୁପ୍ତଚର ଠାରୁ ଏ ଖବର ପାଇ ରାବଣ ମନେ ମନେ ଭୟ ପାଇଗଲା । ସେ ନିଜର ମନ୍ତ୍ରୀ ଶୁକ ଓ ସାରଣ ସହିତ ରାମଚନ୍ଦ୍ରଙ୍କ ସୈନ୍ୟ ଗଣନା ପାଇଁ ଆକାଶ ମାର୍ଗରୁ ଲକ୍ଷ୍ୟ-କଲା । ମାତ୍ର ବିଭୀଷଣ ରାବଣଙ୍କୁ ଚିହ୍ନି ପାରି ରାମଚନ୍ଦ୍ରଙ୍କୁ ତାହା ଜଣାଇଦେଲେ । ରାମଚନ୍ଦ୍ର ନିଜେ ବାଣପ୍ରୟୋଗ କରି ରାବଣର ଧନୁ ମୁକୁଟ ଇତ୍ୟାଦି କାଟି ପକାଇଲେ । ରାବଣ ଲାଜ ଓ ଭୟରେ ପଳାଇଗଲା । ସେ ଥିଲା ଆତ୍ମାଭିମାନୀ ଯାହାହେଲେ ମଧ୍ୟ ନିଜର ଟାଣ ପଣ ଛାଡିବାକୁ ସେ ରାଜି ନଥିଲା ।

ଏଣେ ରାମଚନ୍ଦ୍ର ପ୍ରଥମେ ବାଳୀଙ୍କ ପୁଅ ଅଙ୍ଗଦଙ୍କୁ ନିଜର ଦୂତ କରି ରାବଣ ପାଖକୁ ପଠାଇଲେ । ସହସ୍ମାନେ ସୀତାଙ୍କୁ ଫେରାଇ ରାମଚନ୍ଦ୍ରଙ୍କ କୃପାପ୍ରାର୍ଥୀ ହେଲେ ରାମଚନ୍ଦ୍ର ଲଙ୍କା ଆକ୍ରମଣ କରିବେ ନାହିଁ ଓ ରାବଣକୁ ବଧ କରିବେ ନାହିଁ ବୋଲି ଶାନ୍ତି-ବାର୍ତ୍ତା ପଠାଇଥିଲେ । ମାତ୍ର ରାବଣ ଅଙ୍ଗଦଙ୍କୁ ଦୂତ ଯୋଗ୍ୟ ସମ୍ମାନ ମଧ୍ୟ ଜଣାଇଲା ନାହିଁ । ଅଙ୍ଗଦ ନିଜ ଲାଙ୍ଗୁଡ଼ରେ ଏକ ଉଚ୍ଚ ଆସନ ତିଆରି କରି ରାବଣର ସିଂହାସନ ଠାରୁ ଉଚ୍ଚରେ ବସି ତାକୁ ରାମଙ୍କ ବାର୍ତ୍ତା ଶୁଣାଇଦେଲେ । ରାବଣ ଅଙ୍ଗଦଙ୍କ କଥାକୁ ଉପହାସ କଲା ଏବଂ ଅଙ୍ଗଦଙ୍କୁ ଆକ୍ରମଣ କରିବା ପାଇଁ ରକ୍ଷୀ ମାନଙ୍କୁ ନିର୍ଦ୍ଦେଶ ଦେଲା । ମାତ୍ର ଅଙ୍ଗଦ କହିଲେ --"ମୋତେ ଆକ୍ରମଣ କରିବା ଆବଶ୍ୟକ ନାହିଁ । ମୁଁ ଭଲେ ଠିଆ ହେଉଛି । ମୋର ଗୋଟାଏ ଗୋଡ଼କୁ ଯଦି କେହି ବୀର ଉଠାଇ ଦେଇ ପାରିବ ତେବେ ଆମେ ଯୁଦ୍ଧ ନକରି ଫେରିଯିବୁ ।" ରାବଣ ଏଥିରେ ଖୁସି ହୋଇ ନିଜର ବଡ଼ ବଡ଼ ବୀର ମାନଙ୍କୁ ଅଙ୍ଗଦଙ୍କ ଗୋଡ଼ଟିକୁ ଭୂମି ଉପରୁ ଉଠାଇ ଦେବାପାଇଁ ପଠାଇଲା । କେହି ବୀର ଏପରିକି ରାବଣର ବଳବାନ୍ ପୁତ୍ର ଇନ୍ଦ୍ରଜିତ ମଧ୍ୟ ଅଙ୍ଗଦଙ୍କ ଗୋଡ଼କୁ ଉଠାଇବା ତେଣିକି ଥାଉ ହଲାଇ ମଧ୍ୟ ପାରିଲେ ନାହିଁ । ଶେଷରେ ରାବଣ ଅଙ୍ଗଦଙ୍କ ଗୋଡ଼ ଉଠାଇବାକୁ ଗଲା ମାତ୍ର ଅଙ୍ଗଦ ନିଜ ଗୋଡ଼ ନିଜେ ହଟାଇ ନେଇ କହିଲେ—"ରାବଣ ! ତୁ ହେଉଛୁ ରାକ୍ଷସ ମାନଙ୍କ ରାଜା । ଜଣେ ରାଜା ହୋଇ ସାମାନ୍ୟ ଜଣେ ଦୂତର ଗୋଡ଼ ଧରିବା ଅସୁନ୍ଦର କଥା । ବରଂ ଯାଇ ଅଯୋଧ୍ୟାର ରାଜା ଶ୍ରୀରାମଙ୍କ ଗୋଡ଼ ଧରି କ୍ଷମା ମାଗିଲେ ତୋର ମଙ୍ଗଳ ହେବ ।" ରାବଣ ଏଥିରେ ରାଗିଯାଇ ଅଙ୍ଗଦଙ୍କୁ ଆକ୍ରମଣ କଲା, ମାତ୍ର ଅଙ୍ଗଦ ରାବଣକୁ ଠେଲି ଦେଇ ତଳେ ପକାଇଦେଲେ ଓ ଚେତାବନୀ ଶୁଣାଇ ଫେରି ଗଲେ ।

ଶେଷରେ ଯୁଦ୍ଧ ଘୋଷଣା କରାଗଲା । ଆରମ୍ଭ ହେଲା ରାମ ଓ ରାବଣ ମଧ୍ୟରେ ଘମାଘୋଟ ଯୁଦ୍ଧ । ଯୁଦ୍ଧ ଆରମ୍ଭରେ ହିଁ ରାବଣର ବଡ଼ ବଡ଼ ବୀର ସେନାପତି ଧୁମ୍ରାକ୍ଷ୍ୟ ଅକମ୍ପନ, ବଜ୍ରଦଂଷ୍ଟ୍ର, ପ୍ରହସ୍ତ, ନରାନ୍ତକ, ମହାନାଦ, କୁମ୍ଭ, ନିକୁମ୍ଭଙ୍କ ସମେତ ଅଶିଏ ହଜାର ସୈନ୍ୟ ମରିଗଲେ । ରାବଣ ଚିନ୍ତାରେ ପଡ଼ିଗଲା । ମନ୍ତ୍ରୀ ମାନଙ୍କ ସହ ପରାମର୍ଶ କରିବା ପରେ ସେ ନିଜ ଭାଇ କୁମ୍ଭକର୍ଣ୍ଣକୁ ଯୁଦ୍ଧକୁ ପଠାଇବା ପାଇଁ ଠିକ୍ କଲା । କୁମ୍ଭ-କର୍ଣ୍ଣର ଶୋଇବା ଡାଳ ଚାଲିଥାଏ । ବ୍ରହ୍ମାଙ୍କ ବରରେ ସେ ଛଅମାସ ଶୋଇ ରହେ ଏବଂ ଛଅମାସ ଜାଗ୍ରତ ରହେ । ଲଙ୍କାର ଏ ବିପତ୍ତି ଯୋଗୁଁ କୁମ୍ଭକର୍ଣ୍ଣର ନିଦ ଭାଙ୍ଗି ଦେବା ପାଇଁ ରାବଣ ଆଦେଶ ଦେଲା । ଅସୁରମାନେ ଢୋଲ, ଭେରି, ତୂରୀ, ଝରତାଳ, ମୃଦଙ୍ଗ, ଘଣ୍ଟ ପ୍ରଭୃତି ନାନା ପ୍ରକାର ବାଦ୍ୟ ବଜାଇ ପ୍ରଥମେ କୁମ୍ଭକର୍ଣ୍ଣକୁ ଉଠାଇବାକୁ ଚେଷ୍ଟା କଲେ । ମାତ୍ର କିଛି ଫଳ ହେଲାନାହିଁ । କୁମ୍ଭକର୍ଣ୍ଣର ଘୁଙ୍ଗୁଡ଼ି ଶବ୍ଦରେ ବାଦ୍ୟଶବ୍ଦ ମିଳେଇ ଯାଉଥାଏ । ସେଠୁ ହାତୀ ନେଇ କୁମ୍ଭକର୍ଣ୍ଣ ଉପରେ ଚଢ଼ାଗଲା । ସୈନ୍ୟମାନେ କାନ ପ୍ରଭୃତି କୋମଳ ସ୍ଥାନ ଦେଖି ଆଘାତ କଲେ । ଗରମ ପାଣି ଢଳାଗଲା ଏପରି ନାନା

ପ୍ରଚେଷ୍ଟା ପରେ କୁମ୍ଭକର୍ଣ୍ଣର ଅକାଳରେ ନିଦ୍ରାଭଙ୍ଗ ହେଲା । ଉଠୁ ଉଠୁ ସେ ଖାଦ୍ୟପାଇଁ ଚିତ୍କାର କଲା । ରାକ୍ଷସମାନେ ତା ସମ୍ମୁଖରେ ଗଦା ଗଦା ଖାଦ୍ୟପଦାର୍ଥ, ଶାବଲ୍ଲ ଛେଳି, ମଇଁଷି, ମେଣ୍ଢା ପ୍ରଭୃତି ଜନ୍ତୁ ସଂଖ୍ୟାରେ ଯୋଗାଇ ଦେଲେ । ପିଇବା ପାଇଁ କିମ୍ପା କିମ୍ପା ମଦ ମଧ୍ୟ ଦିଆଗଲା । କୁମ୍ଭକର୍ଣ୍ଣର କ୍ଷୁଧା ଶାନ୍ତ ହେଲା ପରେ ଦେଶର ବିପତ୍ତି ଯୋଗୁଁ ତା'ର ଭାଇ ରାଜା ରାବଣର ଆଦେଶରେ ତାଙ୍କୁ ନିଦରୁ ଉଠାଇ ଦିଆଯାଇଛି ବୋଲି ଜଣାଇ ଦିଆଗଲା । କୁମ୍ଭକର୍ଣ୍ଣ ସଙ୍ଗେ ସଙ୍ଗେ ରାବଣକୁ ଦେଖାକଲା । ରାବଣ କୁମ୍ଭକର୍ଣ୍ଣ ଆଗରେ ଆମୂଳଚୂଳ ସବୁ ଘଟଣା ବର୍ଣ୍ଣନା କରି ଯୁଦ୍ଧରେ ରାମ ଓ ଲକ୍ଷ୍ମଣଙ୍କୁ ମାରି ପ୍ରତିଶୋଧ ନେବା ପାଇଁ ଅନୁରୋଧ କଲା । ରାବଣର ଅନ୍ୟାୟ ହୋଇଥିବା କଥା କୁମ୍ଭକର୍ଣ୍ଣ ଉପଲବ୍ଧି କଲେ ମଧ୍ୟ ବଡ଼ଭାଇଙ୍କୁ ସମ୍ମାନ ଜଣାଇ ଯୁଦ୍ଧଯାତ୍ରା କଲା ।

କୁମ୍ଭକର୍ଣ୍ଣର ଆକାର ଥିଲା ଖୁବ୍ ବଡ଼ । ସେ ଯୁଦ୍ଧ କ୍ଷେତ୍ରରେ ପହଞ୍ଚି ବାନର ମାନଙ୍କୁ ଧରି ଅରତେ ଦଶ ପନର ଜଣଙ୍କୁ ଗିଳିବାକୁ ଲାଗିଲା, ଅନେକଙ୍କୁ ଘାତରେ ଦଳି ମକ୍ଥି ପକାଇଲା । ହାତୀ କଦଳୀବନ ଦଳିଲା ଭଳି ସେ ବାନର ସେନାଙ୍କୁ ଦଳା ଚକ-ଦେଲା । ଚାରିଆଡ଼େ ବିକଳ ଚିତ୍କାର ଶୁଣାଗଲା । ବାନରମାନେ ତ୍ରାହି ରାମ ଲକ୍ଷ୍ମଣ ବୋଲି ଡାକ ଛାଡ଼ିଲେ । ରାମଚନ୍ଦ୍ର ତାଲ ବିଳମ୍ବ ନକରି ଖଡ଼ବୋଡ଼ା ଓ ବାବଲ ଶରମାରି କୁମ୍ଭକର୍ଣ୍ଣର ହାତ ଗୋଡ଼ ସବୁ ଛେଦି ଦେଲେ । କୁମ୍ଭକର୍ଣ୍ଣର ମାଂସଳ ଦେହଟା ଡେଇଁ ଡେଇଁ ବାନର ମାନଙ୍କୁ ଗ୍ରାସ କରିବାରେ ଲାଗିଲା । ବିଭୀଷଣଙ୍କ ପରାମର୍ଶରେ ରାମଚନ୍ଦ୍ର ଇନ୍ଦ୍ର ଦେଇଥିବା 'ମଘବା' ଶର ମାରି କୁମ୍ଭକର୍ଣ୍ଣର ମୁଣ୍ଡକାଟି ଦେଲେ । କୁମ୍ଭକର୍ଣ୍ଣର ମଲା ମୁଣ୍ଡ ଓ ଦେହ ତଳେ ଚାପି ହୋଇ ମଧ୍ୟ ରାମଙ୍କ ଅନେକ ସୈନ୍ୟ ମଲେ ।

କୁମ୍ଭକର୍ଣ୍ଣର ମୃତ୍ୟୁ ସମ୍ବାଦ ପାଇ ରାବଣ ବହୁତ ଦୁଃଖ କଲା । ତା'ର ଦୁଃଖ ମୋଚନ ପାଇଁ ଜଣକ ପରେ ଜଣେ ରାକ୍ଷସ ବୀର ଯୁଦ୍ଧ ଯାଇ ରାମଙ୍କ ହାତରେ ପ୍ରାଣ ଦେଲେ । ରାବଣ ବିଭୀଷଣର ପୁତ୍ର ତରଣୀସେନକୁ ଯୁଦ୍ଧକୁ ପଠାଇଲା । ତରଣୀସେନ ନିଜ ବାପାଙ୍କ ଭଳି ରାମଭକ୍ତ । ସେ ରାମନାମ ଛାପା ପୋଷାକ ପିନ୍ଧିଥାଏ । ରାମଙ୍କ ନାମ ସ୍ମରଣ କରୁଥାଏ । ଯୁଦ୍ଧ କ୍ଷେତ୍ରରେ ସେ ରାମଚନ୍ଦ୍ରଙ୍କୁ ବାରମ୍ବାର ପ୍ରଣାମ ଜଣାଇ ଯୁଦ୍ଧ ପାଇଁ ଆହ୍ୱାନ କଲା । କିନ୍ତୁ ରାମଚନ୍ଦ୍ର ଏଭଳି ଭକ୍ତକୁ ମାରିବା ପାଇଁ ଅସ୍ତ୍ର ମଧ୍ୟ ଧରିଲେ ନାହିଁ, ବରଂ ବର ମାଗିବା ପାଇଁ ତରଣୀସେନଙ୍କୁ କହିଲେ । ତରଣୀସେନ ମୃତ୍ୟୁବର ମାଗିଲେ । ରାମଚନ୍ଦ୍ର ଏଥିରେ ରାଜିହେଲେ ନାହିଁ । ଶେଷରେ ତରଣୀସେନ ରାମଙ୍କୁ ଜାଣି ଶୁଣି କଟୁ କଥାମାନ କହି ଯୁଦ୍ଧ ଆରମ୍ଭ କଲେ । ବିଭୀଷଣଙ୍କ ପରାମର୍ଶରେ ରାମଚନ୍ଦ୍ର ବ୍ରହ୍ମଶର ମାରି ତରଣୀସେନଙ୍କୁ ବଧ କଲେ । ତରଣୀ ମଲାପରେ ବିଭୀଷଣ ନିଜ ପୁଅକୁ ଆଲିଙ୍ଗନ କରି ବହୁତ ଶୋକକଲେ । ରାମଚନ୍ଦ୍ର ତରଣୀସେନ ବିଭୀଷଣଙ୍କ ପୁଅ ବୋଲି ଆଗେ ଜାଣିନଥିଲେ । ସେ ମଧ୍ୟ ଏଥିପାଇଁ ବହୁତ ଦୁଃଖ କଲେ । ବିଭୀଷଣଙ୍କ ନିଃସ୍ୱାର୍ଥ ସେବାରେ ସେ ଅଶ୍ରୁଳ ହୋଇଗଲେ ।

ଏଣେ ଲଙ୍କାରେ ହଇଚଇ ସୃଷ୍ଟି ହେଲା । ରାବଣର ବଡ଼ ପୁଅ ଇନ୍ଦ୍ରଜିତ ବହୁତ ଆସ୍ଫାଳନ କରି ଯୁଦ୍ଧକୁ ଆସିଲା । ନିଜର ଅପୂର୍ବ ବୀରତ୍ୱ ଓ ଯୁଦ୍ଧ କୌଶଳ, ମାୟାଯୁଦ୍ଧ ଦ୍ୱାରା ରାମଙ୍କ ସେନାବାହିନୀକୁ ଧ୍ୱସ୍ତ ବିଧ୍ୱସ୍ତ କରି ପକାଇଲା । ଶେଷରେ ନିଜର ଏକ ପ୍ରଧାନ ଅସ୍ତ୍ର ନାଗପାଶ ମାରି ରାମ ଓ ଲକ୍ଷ୍ମଣଙ୍କୁ ଅଚେତ କରି ପକାଇଲା । ବିଷାକ୍ତ ସର୍ପମାନଙ୍କ ଦ୍ୱାରା ରାମଲକ୍ଷ୍ମଣ ବାନ୍ଧି ହୋଇ ପଡ଼ିରହିଲେ । ସେମାନେ ମରିଗଲେ ବୋଲି ଭାବି ଇନ୍ଦ୍ରଜିତ ବିଜୟ ଗର୍ବରେ ଲଙ୍କା ଗଡ଼ ଭିତରକୁ ଫେରି ଆସିଲା । ରାବଣ ବହୁତ ଖୁସି ହେଲା ଓ ପୁଅକୁ ଅଜସ୍ର ପ୍ରଶଂସା ଓ ଆଶୀର୍ବାଦଦାନ ଦେଲା ଲଙ୍କାରେ ଆନନ୍ଦ ଉତ୍ସବ ଚାଲିଲା । ଏଣେ ହନୁମାନ ଯାଇ ଗରୁଡ଼ଙ୍କୁ ଡ଼ାକି ଆଣିଲେ । ତାଙ୍କୁ ଦେଖୁ ଦେଖୁ ସର୍ପମାନେ ଛିନ୍ନ ଭିନ୍ନ ହୋଇ ପଳାଇଗଲେ । ବିଷଜ୍ୱାଳା କମିଯିବାରୁ ରାମ ଲକ୍ଷ୍ମଣ ସୁସ୍ଥ ହେଲେ । ବାନର ମାନେ ରାମଙ୍କ ଜୟଧ୍ୱନି କଲେ ।

ଏ ଖବର ଲଙ୍କାରେ ପହଞ୍ଚିବା କ୍ଷଣି ଇନ୍ଦ୍ରଜିତର କ୍ରୋଧ ବଢ଼ିଗଲା । ସେ ଦିବ୍ୟ ଅସ୍ତ୍ର ଓ ଅଜେୟ ରଥ ପାଇବାପାଇଁ ନିକୁମ୍ଭିଳା ନାମକ ଏକ ଗୁପ୍ତସ୍ଥାନରେ ଯଜ୍ଞ ଆରମ୍ଭ କଲା । ଏ ଖବର ପାଇବା ପରେ ବିଭୀଷଣ ରାମଚନ୍ଦ୍ରଙ୍କୁ ସତର୍କ କରାଇଦେଲେ । ସେ କହିଲେ—"ପ୍ରଭୁ ! ଯଦି ଇନ୍ଦ୍ରଜିତର ଯଜ୍ଞ ସଫଳ ହୋଇଯାଏ ତେବେ ତାକୁ ଏ ତ୍ରିଭୁବନରେ କେହି ପରାଜିତ କରିପାରିବେ ନାହିଁ । ସେ ଅମର ହୋଇଯିବ । ଇନ୍ଦ୍ରଜିତର ଯଜ୍ଞ ପ୍ରଥମେ ବିଫଳ କରାଇବାକୁ ହେବ । ତାଛଡ଼ା ଇନ୍ଦ୍ରଜିତ ବର ପାଇଛି ଯେ ଯେଉଁ ମଣିଷ ବାର ବର୍ଷକାଳ କୌଣସି ତପସ୍ୟା, ହୋମ, ଯଜ୍ଞ, ଇତ୍ୟାଦି ଧର୍ମ କର୍ମ କରିଣ ଆହାର, ବିହାର, ନିଦ୍ରା ତ୍ୟାଗ କରିଥିବ ସେ କେବଳ ତାକୁ ମାରିପାରିବ ।" ଲକ୍ଷ୍ମଣ ହିଁ ଏକ ମାତ୍ର ଲୋକ ଯେ, ଜ ବାରବର୍ଷ ବନବାସ ସମୟ ମଧ୍ୟରେ କୌଣସି ଖାଦ୍ୟ ଖାଇ ନ ଥିଲେ, ଆଦୌ ଶୋଇ ନଥିଲେ ଏବଂ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ । ରାମଙ୍କ ଅନୁମତି ନେଇ ସେ ହନୁମାନ, ବିଭୀଷଣ, ସୁଗ୍ରୀବ, ଅଙ୍ଗଦ ପ୍ରଭୃତିଙ୍କୁ ନେଇ ନିକୁମ୍ଭିଳା ମୂଳକୁ ଗଲେ । ସେଠାରେ ଇନ୍ଦ୍ରଜିତର ଯଜ୍ଞ ବାନରମାନେ ଅପବିତ୍ର କରି ଅସଫଳ କରିଦେଲେ । ଇନ୍ଦ୍ରଜିତ କ୍ରୋଧରେ ଲକ୍ଷ୍ମଣଙ୍କ ସହ ଯୁଦ୍ଧ କଲା । ମାତ୍ର ଲକ୍ଷ୍ମଣ ଇନ୍ଦ୍ରଙ୍କ ଠାରୁ ପାଇଥିବା 'ଇନ୍ଦ୍ରାସ୍ତ୍ର' ଶରରେ ଇନ୍ଦ୍ରଜିତକୁ ବଧ କଲେ ।

ବଡ଼ ପୁଅର ମୃତ୍ୟୁରେ ରାବଣ ଏକପ୍ରକାର ଭାଙ୍ଗି ପଡ଼ିଲା । ମନ୍ଦୋଦରୀ ମୂର୍ଚ୍ଛା ହୋଇପଡ଼ିଲା । ସ୍ତ୍ରୀ ଏବେ ଯୁଦ୍ଧ ବନ୍ଦକରି ରାମଚନ୍ଦ୍ରଙ୍କ ସହିତ ସନ୍ଧି କରିବା ନିମନ୍ତେ ରାବଣକୁ କେତେ କେତେ ବୁଝାଇଲେ । ମାତ୍ର ରାବଣ ନିଜର ସମ୍ମାନ ବଳି ଦେବାକୁ ଚାହୁଁ ନଥିଲା । ସେ ନିଜେ ଯୁଦ୍ଧ ଯାତ୍ରା କଲା । ତା'ର ବିଷଦୃଷ୍ଟି ପଡ଼ିଲା ପ୍ରଥମେ ପୁତ୍ରହନ୍ତା ଲକ୍ଷ୍ମଣ ଉପରେ । ମୟଦାନବ ଠାରୁ ପାଇଥିବା ଏକ ଶକ୍ତିଶାଳୀ ଅସ୍ତ୍ର 'ଏକଘ୍ନୀ ଶୂଳ'କୁ ସେ ଅଭିମନ୍ତ୍ରିତ କରି ଲକ୍ଷ୍ମଣଙ୍କୁ ପ୍ରୟୋଗ କଲା । ସେ ଦିବ୍ୟ ଅସ୍ତ୍ରଦ୍ୱାରା ଲକ୍ଷ୍ମଣ

ଚେତାହରାଇ ମଲାଭଳି ଯୁଦ୍ଧ ଭୂମିରେ ଢଳି ପଡ଼ିଲେ । ଲକ୍ଷ୍ମଣଙ୍କ ମୃତ୍ୟୁହେଲା ଭାବି ରାବଣ ଯୁଦ୍ଧ ଭୂମିରୁ ଫେରିଗଲା । ଏଣେ ଶ୍ରୀରାମଙ୍କ ଶିବିରରେ ହାହାକାର ରଡ଼ିଗଲା । ବୈଦ୍ୟ ସୁଷେଣ ଲକ୍ଷ୍ମଣଙ୍କ ଚିକିତ୍ସା ଚଳାଇଲେ । ପବନ ପୁତ୍ର ହନୁମାନ ରାତିକ ଭିତରେ ସୁଦୂର ଗନ୍ଧମାର୍ଦ୍ଦନ ପର୍ବତରୁ ଔଷଧିଗଛ ଆଣିବା ପାଇଁ ଗଲେ । ରାବଣ ଗୁପ୍ତଚରଠାରୁ ଏ ଖବର ପାଇ କାଳନେମୀ ରାକ୍ଷସକୁ ପଠାଇଲା ହନୁମାନଙ୍କୁ ହଇରାଣ କରିବା ପାଇଁ । ମାତ୍ର ହନୁମାନ ତାକୁ ମାରିଦେଲେ । ଔଷଧି ବୃକ୍ଷ ଜଣାନପଡ଼ିବାରୁ ଗୋଟାଏ ସାରା ପର୍ବତ ଉପାଡ଼ି ନେଇ ଚାଲି ଆସିଲେ । ଫେରିଲାବେଳେ ଅଯୋଧ୍ୟା ଉପରଦେଇ ଉଡ଼ି ଆସୁଥିଲେ । ଭରତ ବାଟୁଳି ମାରି ହନୁମାନଙ୍କୁ ଖସାଇ ଦେଲେ । ହନୁମାନଙ୍କ ପରିଚୟ ଓ ରାମଚନ୍ଦ୍ରଙ୍କ ବିଷୟରେ ସମ୍ବାଦ ପାଇ ଦୁଃଖିତ ହେଲେ । ହନୁମାନ ସେଠାରୁ ଆସି ଅବିଳମ୍ବେ ଲଙ୍କାରେ ପହଞ୍ଚିଲେ । ଯଥା ସମୟରେ ଔଷଧ ପ୍ରୟୋଗ କରାଗଲା ଓ ଲକ୍ଷ୍ମଣ ସୁସ୍ଥ ହୋଇ ଉଠି ବସିଲେ ।

ରାବଣ ଏ ଖବର ପାଇବା ପରେ ପାତାଳରେ ଥିବା ନିଜର ଅନ୍ୟତମ ପୁତ୍ର ମହୀରାବଣକୁ ଡକାଇ ସାହାଯ୍ୟ ମାଗିଲା । ମହୀରାବଣ ଥିଲା ଖୁବ୍ ଚତୁର ଓ ମାୟାବୀ । ସେ ନାନା କୌଶଳ ପ୍ରୟୋଗ କରି ନିଜେ ବିଭୀଷଣଙ୍କ ଛଦ୍ମବେଶରେ ଯାଇ ରାମ ଲକ୍ଷ୍ମଣଙ୍କୁ ଶିବିରରେ ଶୋଇଥିବାବେଳେ ଅଚେତ କରି ପାତାଳ ପୁରକୁ ଚାଲିଗଲା । ସେଠାରେ ପାତାଳ କାଳୀଙ୍କ ନିକଟରେ ଦୁହିଁଙ୍କୁ ବଳୀ ଚଢ଼ାଇବା ପାଇଁ ଯୋଗାଡ଼ କଲା । ମାତ୍ର ତାପୂର୍ବରୁ ହନୁମାନଜୀ ସେଠାରେ ପହଞ୍ଚି ରାମଲକ୍ଷ୍ମଣଙ୍କୁ ଉଦ୍ଧାର କଲେ । ରାମ ଓ ମହୀରାବଣ ମଧ୍ୟରେ ଘମାଘୋଟ ଯୁଦ୍ଧ ହେଲା ମହୀରାବଣ ମଲା । ପାତାଳରେ ହନୁମାନଙ୍କ ଝାଳରୁ ସମୁଦ୍ରର ମକରକନ୍ୟା ଗର୍ଭରୁ ଜାତ ମକରଧ୍ୱଜଙ୍କୁ ରାଜାକରାଇ ହନୁମାନ ରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ଲଙ୍କାକୁ ଫେରିଲେ ।

ମହୀରାବଣ ମଲାପରେ ରାବଣର ପ୍ରାୟ ସମସ୍ତ ଦମ୍ଭ ଭାଙ୍ଗିଗଲା । ସେ ଅଧିକ ଶକ୍ତି ସଞ୍ଚୟ ପାଇଁ ଏକ ଯଜ୍ଞ କରୁଥାଏ । ଅଙ୍ଗଦ ବାନର ସେନାମାନଙ୍କ ସାହାଯ୍ୟରେ ସେ ଯଜ୍ଞ ଭଙ୍ଗକଲେ । ରାବଣ କ୍ରୋଧାନ୍ଧ ହୋଇ ଯୁଦ୍ଧକ୍ଷେତ୍ରକୁ ବାହାରିଲା । ନାନା ଅମଙ୍ଗଳ ସୂଚନା ଦେଖି ରାଣୀ ମନ୍ଦୋଦରୀ ରାବଣକୁ ଯୁଦ୍ଧ ନକରି ଶ୍ରୀରାମଙ୍କ ଶରଣ ନେବା ପାଇଁ କାନ୍ଦି କାନ୍ଦି ଅନୁରୋଧ କଲା । ମାତ୍ର ରାବଣ କହିଲା—"ମୋର ଶତ୍ରୁ କେତେ ତାହା ମୁଁ ଜାଣେ । କାପୁରୁଷ ଭଳି ଶତ୍ରୁର ଶରଣ ପଶି ବଞ୍ଚିରହିବା ଅପେକ୍ଷା ଯୁଦ୍ଧକରି ବୀରଗତି ପାଇବା ପ୍ରଶଂସାର କଥା । ରାମ ଯଦି ଭଗବାନ ବିଷ୍ଣୁଙ୍କ ଅବତାର ହୋଇଥାନ୍ତି ତାଙ୍କ ଦ୍ୱାରା ମଲେ ମୋତେ ରାକ୍ଷସ ଜନ୍ମରୁ ମୁକ୍ତି ମିଳିବ । ସୀତାହରଣ ରାବଣ ମରଣ ବୋଲି ମୁଁ ବହୁ ପୂର୍ବରୁ ଜାଣିମଧ୍ୟ ଏତେ ଦିନ ପୁର ବିଜୟୀ ବୀର ଭାବରେ ଯାହା କରିଛି ତାହା ଠିକ୍ । ମୁଁ ଚାହେଁ ସମ୍ମାନ । ରାମଙ୍କୁ ଯୁଦ୍ଧରେ ମାରି ପାରିଲେ ଜଗତରେ ମୋର ସମ୍ମାନ ଖୁବ୍ ବଢ଼ିଯିବ ଆଉ ଯଦି ରାମ ଦ୍ୱାରା ମୋର ମୃତ୍ୟୁ ହୁଏ ତା ହେଲେ ଏକ ବୀର ମରଣ ପାଇ ମୁଁ ଧନ୍ୟ ହେବି ।" ଏହା କହି ରାବଣ ଯୁଦ୍ଧକୁ ଗଲା ।

ଇନ୍ଦ୍ର ସ୍ୱର୍ଗରୁ ଦେବରଥ ଓ ସାରଥୀଙ୍କୁ ରାମଙ୍କ ପାଇଁ ପଠାଇଦେଲେ । ରାମଚନ୍ଦ୍ର ସେ ଦିବ୍ୟ ରଥରେ ବସି ଯୁଦ୍ଧ କଲେ । ରାବଣ ଓ ରାମଙ୍କ ମଧ୍ୟରେ ଖୁବ୍ ଭୟଙ୍କର ଯୁଦ୍ଧ ହେଲା । ଉଭୟ ପକ୍ଷର ସୈନ୍ୟ ସାମନ୍ତ, ସ୍ୱର୍ଗରେ ଦେବତା ଗଣ ଯୁଦ୍ଧ ଦେଖିବା ପାଇଁ ସ୍ତବ୍ଧ ହୋଇ ଠିଆ ହୋଇଥା'ନ୍ତି । ରାମଚନ୍ଦ୍ର ଦିବ୍ୟ ଅସ୍ତ୍ରମାନ ମାରି ରାବଣର ମୁଣ୍ଡ ଛିଣ୍ଡାଇ ଦେଲେ ମାତ୍ର ପରକ୍ଷଣରେ ରାବଣର କାନ୍ଧରୁ ଆଉ ଗୋଟାଏ ନୂଆ ମୁଣ୍ଡ ବାହାରି ଆସୁଥାଏ । ଏଥିରେ ରାମ ଆଶ୍ଚର୍ଯ୍ୟ ହେଲେ । ବିଭୀଷଣ ରାମଙ୍କୁ ସୂଚାଇ ଦେଲେ ଯେ, ରାବଣର ନାଭିପଦ୍ମରେ ଏକ ଅମୃତ କଳସ ଅଛି । ସେଥିପାଇଁ ସେ ମରୁନାହିଁ । ରାମଚନ୍ଦ୍ର ବ୍ରହ୍ମଶରକୁ ଅଭିମନ୍ତ୍ରିତ କରି ରାବଣର ନାଭି ଉପରକୁ ବିନ୍ଧିଦେଲେ । ସେହି ଶକ୍ତିଶାଳୀ ଶରଘାତରେ ରାବଣର ମୃତ୍ୟୁ ହେଲା । ଦେବତାମାନେ ରାମଙ୍କ ଶିରରେ ପୁଷ୍ପବୃଷ୍ଟି କଲେ । ଶ୍ରୀରାମଚନ୍ଦ୍ରଙ୍କ ଜୟ ଜୟକାର ନାଦରେ ଗଗନ ପବନ ମୁଖରିତ ହୋଇ ଉଠିଲା ।

ରାମଚନ୍ଦ୍ର ବିଭୀଷଣଙ୍କୁ ଲଙ୍କାର ରାଜ ସିଂହାସନରେ ଅଭିଷିକ୍ତ କଲେ । ବିଭୀଷଣ ସମ୍ମାନର ସହିତ ସୀତାଙ୍କୁ ଅଶୋକ ବନରୁ ଆଣାଇ ରାମଙ୍କୁ ସମର୍ପଣ କଲେ । ରାମଚନ୍ଦ୍ର କିନ୍ତୁ ସୀତାଙ୍କୁ ଗ୍ରହଣ କଲେ ନାହିଁ । ଫଳତଃ ସୀତା ଅଗ୍ନିରେ ପ୍ରବେଶ କରି ନିଜର ପବିତ୍ରତାର ପ୍ରମାଣ ଦେଲେ । ଜ୍ୱଳନ୍ତ ଅଗ୍ନି ମଧ୍ୟରୁ ନିଜେ ଅଗ୍ନି ଦେବତା ଆବିର୍ଭୂତ ହୋଇ କହିଲେ—"ହେ ଅଯୋଧ୍ୟାପତି ରାମଚନ୍ଦ୍ର ! ସୀତା ମହାସତୀ ଅଟନ୍ତି । ସେ ନିଷ୍କଳଙ୍କା ଆପଣ ତାହାଙ୍କୁ ବିନା ଦ୍ୱିଧାରେ ଗ୍ରହଣ କରନ୍ତୁ ।" ସୀତାଙ୍କ ଜୟ ଜୟ ନାଦ ଶୁଣାଗଲା । ରାମଚନ୍ଦ୍ର ସୀତାଙ୍କୁ ଗ୍ରହଣ କଲେ ।

ରାମ, ଲକ୍ଷ୍ମଣ, ସୀତା, ସୁଗ୍ରୀବ, ହନୁମାନ, ବିଭୀଷଣ ଆଦି ପୁଷ୍ପକ ବିମାନରେ ବସି ଅଯୋଧ୍ୟା ଫେରି ଆସିଲେ । ଅଯୋଧ୍ୟାରେ ଭରତ ସତୃଷ୍ଣ ନୟନରେ ଭାଇଙ୍କୁ ପ୍ରତୀକ୍ଷା କରିଥିଲେ । ଦୀର୍ଘ ଚଉଦ ବର୍ଷପରେ ଦୀର୍ଘ ବିଚ୍ଛେଦର ପୁନର୍ମିଳନ ଘଟିଲା । ଅଯୋଧ୍ୟାବାସୀ ରାମଚନ୍ଦ୍ରଙ୍କୁ ଖୁବ୍ ଶ୍ରଦ୍ଧା, ସମ୍ମାନ ଓ ଆଡ଼ମ୍ବର ସହକାରେ ସ୍ୱାଗତ ଜଣାଇଲେ । ଭରତ ରାମଙ୍କ ଚରଣ ପୂଜାକରି ସିଂହାସନ ସମର୍ପଣ କଲେ । କୈକେୟୀ ଅନୁତାପ କରୁଥିଲେ ମାତ୍ର ରାମ ତାଙ୍କ ସମ୍ମାନର ସହିତ ପୂର୍ବଭଳି ଭକ୍ତି ଓ ସ୍ନେହ ପ୍ରଦର୍ଶନ କଲେ । ଅଯୋଧ୍ୟାରେ ରାମ ରାଜା ହେଲେ । ରାମ ରାଜ୍ୟରେ ପ୍ରଜାମାନେ ଆନନ୍ଦରେ ବାସ କଲେ ।

ରାମଚନ୍ଦ୍ର ଛଦ୍ମ ବେଶରେ ରାତିରେ ରାଜ୍ୟ ସାରା ବୁଲି ପ୍ରଜାଙ୍କ ଦୁଃଖ ସୁଖ ବୁଝନ୍ତି । ଥରେ ଗୋଟିଏ ଧୋବା ସହ ଧୋବଣୀର କଳି ସେ ଶୁଣିପାରିଲେ । ଧୋବଣୀ ଧୋବାର ବିନା ଅନୁମତିରେ ରାତିକ ପାଇଁ ତା' ବାପଘରେ ରହିଯାଇଥିବାରୁ ଧୋବା ତାକୁ ଗାଳିଦେଇ କହିଲା—"ତୋ ଚରିତ୍ର ଭଲ ନାହିଁ । ତୋତେ ମୁଁ ଗ୍ରହଣ କରିବି ନାହିଁ ।" ମାତ୍ର ଧୋବଣୀ କହିଲା—"ରାମ ରାଜାଙ୍କ ଠାରୁ ତୁ କ'ଣ ବଡ଼ କି ? ମହାରାଣୀ ସୀତା ଏତେ

ଦିନ ରାବଣ ଅଧୀନରେ ରହିଥିଲେ ଅଥଚ ରାମଚନ୍ଦ୍ର ତାଙ୍କୁ ଗ୍ରହଣ କଲେ । ତୁ ମୋତେ ଗ୍ରହଣ କରିବୁ ନାହିଁ କାହିଁକି ? ମୁଁ ରାଜାଙ୍କ ଆଗରେ ଏକଥା କହିବି ।"

ଏହା ଶୁଣିବା ପରେ ରାମଚନ୍ଦ୍ର ଭାବିଲେ ସୀତାଙ୍କୁ ଯେ ଗ୍ରହଣ କରିବା ଦ୍ୱାରା କେତେ ପ୍ରଜା ଅସନ୍ତୁଷ୍ଟ । ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ କୌଶଳରେ ଲକ୍ଷ୍ମଣଙ୍କ ଦ୍ୱାରା ସୀତାଙ୍କୁ ବଣରେ ତ୍ୟାଗ କରିଦେଲେ । ଲକ୍ଷ୍ମଣ ଅନିଚ୍ଛା ସତ୍ତ୍ୱେ ଭାଇଙ୍କ ଆଦେଶ ପାଳନ କଲେ । ସୀତା ସେତେବେଳକୁ ମା' ହେବାକୁ ଯାଉଥାନ୍ତି । ସେ ବଣରେ ମହର୍ଷି ବାଲ୍ମୀକିଙ୍କ ଆଶ୍ରମରେ ଆଶ୍ରୟ ନେଲେ । ଯଥା ସମୟରେ ଲବ ଓ କୁଶ ନାମରେ ତାଙ୍କର ଦୁଇଟି ଯାଆଁଳା ପୁଅ ଜନ୍ମ ହେଲେ । ମହର୍ଷି ବାଲ୍ମୀକି ଲବ ଓ କୁଶଙ୍କୁ କ୍ଷତ୍ରୀୟୋଚିତ ସବୁ ପ୍ରକାର ବିଦ୍ୟାଶିକ୍ଷା ଦେଇ ଧୂରନ୍ଧର କରିଦେଲେ । କୁମାରମାନେ ଅସ୍ତ୍ର ଓ ଯୁଦ୍ଧ ଚାଳନାରେ ଖୁବ୍ ଦକ୍ଷ ହୋଇଉଠିଲେ ।

ମହର୍ଷି ବାଲ୍ମୀକି ଭଗବାନଙ୍କ ଅବତାର ପ୍ରଭୁ ରାମଚନ୍ଦ୍ରଙ୍କ ଜୀବନୀକୁ ନେଇ ରଚନା କଲେ ମହାନ୍ ଗ୍ରନ୍ଥ ରାମାୟଣ । ଲବ ଓ କୁଶଙ୍କୁ ଏହି ରାମାୟଣ ଗାନ ଶିକ୍ଷା ମଧ୍ୟ ଦେଇଥାନ୍ତି ।

ଏଣେ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ନିଜ ପତ୍ନୀ ନିକଟରେ ନଥିବାରୁ ସେ ସୁନାରେ ସୀତାଙ୍କ ଏକ ମୂର୍ତ୍ତି ନିର୍ମାଣ କରି ଯଜ୍ଞଶାଳାରେ ନିଜ ନିକଟରେ ବସାଇବା ବ୍ୟବସ୍ଥା କଲେ । ଆଜ୍ଞାପତ୍ର ଦେଇ ଯଜ୍ଞ ଅଶ୍ୱଟିକୁ ଦେଶ ଦେଶାନ୍ତର ବୁଲିବା ପାଇଁ ଛଡ଼ା ହୋଇଗଲା । ତାକୁ ରକ୍ଷା କରିବା ପାଇଁ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ପ୍ରମୁଖ ସୈନ୍ୟ ସାମନ୍ତଙ୍କୁ ନେଇ ଯାଉଥାନ୍ତି ।

କୌତୁହଳ ବଶତଃ ଯଜ୍ଞ ଅଶ୍ୱଟିକୁ ଲବ ଓ କୁଶ ବାନ୍ଧି ଦେଲେ । ଫଳତଃ ରାମଚନ୍ଦ୍ରଙ୍କ ସୈନ୍ୟମାନଙ୍କ ସହ ସେମାନଙ୍କର ଯୁଦ୍ଧ ହେଲା । ଆଶ୍ଚର୍ଯ୍ୟର କଥା ଲବକୁଶଙ୍କ ବିଚିତ୍ର ଯୁଦ୍ଧରେ ରାମଚନ୍ଦ୍ରଙ୍କ ତିନି ଭାଇ ଏବଂ ସୈନ୍ୟ ସାମନ୍ତ ପରାସ୍ତ ହୋଇ ଜ୍ଞାନ ହରାଇ ପଡ଼ିଗଲେ ।

ଶେଷରେ ନିଜେ ରାମଚନ୍ଦ୍ର ଅଶ୍ୱମୁକ୍ତି ପାଇଁ ଅସ୍ତ୍ର ଶସ୍ତ୍ର ନେଇ ଯୁଦ୍ଧ କ୍ଷେତ୍ରକୁ ଆସିଲେ । ସେ ଲବକୁଶଙ୍କୁ ଦେଖି ମୁଗ୍ଧ ହୋଇଗଲେ । ସେମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ତାଙ୍କର ମନ ବଳିଲା ନାହିଁ । ହେଲେ ଯୁଦ୍ଧ କରିବାରୁ ଲବକୁଶଙ୍କ ଅମୋଘ ଅସ୍ତ୍ର ଦ୍ୱାରା ଆହତ ହୋଇ ଚେତା ହରାଇ ପଡ଼ିଗଲେ । ତାଙ୍କର ଧର୍ମଭକ୍ତ ହନୁମାନ ଆପେ ଆପେ ସେମାନଙ୍କ ହାତରେ ବନ୍ଦୀ ହେଲେ । ଲବକୁଶ ହନୁମାନଙ୍କୁ ନେଇ ଆଶ୍ରମକୁ ଫେରିଲେ । ସୀତାଙ୍କ ସହିତ ହନୁମାନଙ୍କ ଭେଟ ହେଲା । ତାଙ୍କ ଠାରୁ ସମସ୍ତ ଘଟଣା ଶୁଣି ସୀତା ସ୍ତବ୍ଧ ହୋଇଗଲେ । ସ୍ୱାମୀଙ୍କ ଦର୍ଶନ ପାଇଁ ଯୁଦ୍ଧ ଭୂମିକୁ ସମସ୍ତଙ୍କ ସହିତ ଦୌଡ଼ିଗଲେ । ସେଠାରେ ବାଲ୍ମୀକି ମଧ୍ୟ ଉପସ୍ଥିତ ହେଲେ । ବାଲ୍ମୀକିଙ୍କ ମନ୍ତ୍ର ଜଳ ଦ୍ୱାରା

ସମସ୍ତେ ଚେତନା ପାଇଲେ । ରାମଙ୍କ ସହ ଲବକୁଶଙ୍କ ପରିଚୟ ହେଲା । ସୀତା ଓ ପୁତ୍ର ଦୁହିଙ୍କୁ ନେଇ ରାମଚନ୍ଦ୍ର ଅଯୋଧ୍ୟା ଫେରିଲେ । ସୀତାଙ୍କ ପୁନଃଗ୍ରହଣ ପାଇଁ ରାମଚନ୍ଦ୍ରଙ୍କୁ ସମସ୍ତେ ପ୍ରାର୍ଥନା କଲାପରେ । ପୁଣି ଥରେ ଅଗ୍ନି ପରୀକ୍ଷା ପାଇଁ କେତେକ ମତ ଦେଲେ । ମାତ୍ର ସୀତାଙ୍କର ଏ ପ୍ରସ୍ତାବ ପ୍ରତି ଆଉ ଆଗ୍ରହ ନଥିଲା । ପିତା ପୁତ୍ରଙ୍କ ମିଳନ ପରେ ତାଙ୍କର କର୍ତ୍ତବ୍ୟ ଶେଷ ହୋଇଛି ବୋଲି ସେ ଧରିନେଲେ । ସେ ଆକୁଳ କଣ୍ଠରେ ନିଜ ମା'ଙ୍କୁ ପ୍ରାର୍ଥନା କଲେ "ହେ ମା ବସୁଧେ ! ମୋତେ ଗ୍ରହଣ କର ମା ।" ସହସା ଭୂମି ଦୁଇଫାଳ ହୋଇଗଲା । ନିଜେ ଧରଣୀ ମାତା ଆବିର୍ଭୂତା ହୋଇ ସୀତାଙ୍କୁ କୋଳରେ ବସାଇ ଭୂମିତଳେ ଅନ୍ତର୍ହିତ ହେଲେ । ଫଟା ଭୂମି ସମତଳ ହୋଇଗଲା । ଏ ଘଟଣାରେ—"ହା, ସୀତେ !" ବୋଲି କହି ରାମଚନ୍ଦ୍ର ମୂର୍ଚ୍ଛିତ ହେଲେ । ପ୍ରଜାମାନେ ହାହା ହାହା କରିବାକୁ ଲାଗିଲେ ।

ରାମଚନ୍ଦ୍ର ମନ ଦୁଃଖରେ ରହିଲେ । ପୁତ୍ର ଲବକୁଶଙ୍କ ମୁହଁ ଦେଖି ପତ୍ନୀଙ୍କ ଦୁଃଖ ଭୁଲିବା ପାଇଁ ଚେଷ୍ଟା କରୁଥାନ୍ତି । ପୁତ୍ର ଓ ଭ୍ରାତାମାନଙ୍କ ସହ ସେ ଅନେକ ଦିନ ସୁଶାସନ ଚଳାଇ ପ୍ରଜାଙ୍କ ଦୁଃଖ ଲାଘବ କଲେ । ପୃଥିବୀରେ ଧର୍ମର ସଂସ୍ଥାପନ କଲେ । ପ୍ରଜାମାନେ ସତ୍ୟ ଓ ନ୍ୟାୟରେ ଚାଲିଲେ । ରାମଚନ୍ଦ୍ର ଅବତାରରେ ଯାହା କରିବା ପାଇଁ ଥିଲା ସେ ସବୁ ଶେଷ ହେଲା । ମାନବ ଦେହ ତ୍ୟାଗ କରି ବୈକୁଣ୍ଠକୁ ଫେରିଯିବା ନିମନ୍ତେ ବିଷ୍ଣୁଙ୍କୁ ମନେ ପକାଇ ଦେବାକୁ ଦେବତାମାନେ 'ମହାକାଳ'ଙ୍କୁ ପଠାଇଲେ । ମହାକାଳ ଓ ରାମଚନ୍ଦ୍ର ଗୁପ୍ତରେ କଥାବାର୍ତ୍ତା କରୁଥିବା ସମୟରେ ତୃତୀୟ ବ୍ୟକ୍ତି ସେଠି ପଶିଆସେ ତାହାକୁ ମୃତ୍ୟୁ ଦଣ୍ଡ ଦିଆଯିବ ବୋଲି ମହାକାଳଙ୍କ ସର୍ତ୍ତ ଥିଲା । ଏ ସର୍ତ୍ତ ପାଳନ ପାଇଁ ଲକ୍ଷ୍ମଣ ଦ୍ୱାର ଜଗି ରହିଲେ । ମାତ୍ର ହଠାତ୍ ଦୁର୍ବାସା ଋଷି ସେଠାରେ ପହଞ୍ଚି ରାମଙ୍କୁ ଦେଖା କରିବାକୁ ଚାହିଁଲେ । ମହାକୋପୀ ଦୁର୍ବାସାଙ୍କ କଥା ଖଣ୍ଡିଲେ ଅଯୋଧ୍ୟା ଧ୍ୱଂସ ହେବା ନିଶ୍ଚିତ । ସୁତରାଂ ଲକ୍ଷ୍ମଣ ହିଁ ମହାକାଳଙ୍କ ସର୍ତ୍ତ ଭାଙ୍ଗି ରାମଙ୍କ ପାଖକୁ ଯାଇ ସମ୍ବାଦ ଜଣାଇଲେ । ସର୍ତ୍ତ ଅନୁସାରେ ସେ ରାମଙ୍କ ପାଖରୁ ବିଦାୟ ନେଇ ସରଯୂ ନଦୀରେ ଦେହ ତ୍ୟାଗ କଲେ ।

ପ୍ରଥମେ ସୀତା ଓ ପରେ ଲକ୍ଷ୍ମଣ ବିଦାୟ ନେବାରୁ ରାମଚନ୍ଦ୍ର ଆଉ ସଂସାରରେ ରହିବା ପାଇଁ ଇଚ୍ଛା କଲେ ନାହିଁ । ସେ ଲବକୁଶଙ୍କୁ ଅଯୋଧ୍ୟା ରାଜସିଂହାସନ ଭାର ଦେଇଦେଲେ । ଶ୍ରାବଣ ପୂର୍ଣ୍ଣିମାର ଚନ୍ଦ୍ରଗ୍ରହଣ ସମସ୍ତ ଶୁଭଙ୍କର । ସେ ବର୍ଷ ଠିକ୍ ଏହି ଶୁଭ ଲଗ୍ନ ପଡ଼ିଥାଏ । ଶ୍ରୀରାମ ଭରତ ଦୁଇଭାଇ ଓ ମାତାମାନଙ୍କ ସହ ସରଯୂ ନଦୀରେ ପଶି ଦେହ ତ୍ୟାଗ କଲେ । ପୂର୍ବରୁ ଲକ୍ଷ୍ମଣ ଶେଷନାଗ ରୂପେ ଏବଂ ସୀତା ମହାଲକ୍ଷ୍ମୀ ରୂପେ ରାମରୂପୀ ନାରାୟଣଙ୍କୁ ପ୍ରତୀକ୍ଷା କରିଥାନ୍ତି । ଭରତ ଓ ଶତ୍ରୁଘ୍ନ ଯଥାକ୍ରମେ ଶଙ୍ଖ, ଚକ୍ର, ରୂପ ଧାରଣ କଲେ । ରାମଚନ୍ଦ୍ର ଚତୁର୍ଭୁଜ ନାରାୟଣ ରୂପରେ ଶୋଭାପାଇ ବୈକୁଣ୍ଠରେ ପ୍ରକଟ ହେଲେ । ଏହିଭଳି ଭାବରେ ଭଗବାନ ବିଷ୍ଣୁଙ୍କ ସପ୍ତମ ଅବତାର ଶେଷହେଲା ।

—୦—




ତ୍ରେତୟା ଯୁଗ ପରେ ଦ୍ୱାପରଯୁଗ ଆରମ୍ଭ ହେଲା । ଏହି ଯୁଗରେ ଅସୁର ଓ ମନୁଷ୍ୟମାନଙ୍କ ସଂଖ୍ୟା ବଢ଼ି ଯାଇଥିଲା । ବହୁତ ଅସୁର ମନୁଷ୍ୟ ରୂପରେ ଜନ୍ମଗ୍ରହଣ କରିଥାନ୍ତି । ମନୁଷ୍ୟର ଆକାର ଥିଲେ ମଧ୍ୟ ସେମାନେ ଅସୁରମାନଙ୍କ ଭଳିବହୁ ଦୁର୍ଗୁଣରେ ପରିପୂର୍ଣ୍ଣଥାନ୍ତି । ସମସ୍ତ ପୃଥିବୀରେ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଉଥାଏ । ସେହି ଅନୁପାତରେ ବଡ଼ ବଡ଼ ନଗରୀ, ଜନପଦ, ଯାନବାହାନ, ପ୍ରାଣୀସଂଖ୍ୟା ମଧ୍ୟ ବଢ଼ି ଯାଇଥାଏ । ମା' ଧରଣୀ ଏବେ ପୃଥିବୀବାସୀଙ୍କ ଦୌରାତ୍ମ୍ୟ ସହିପାରିଲେ ନାହିଁ । ସେ ଯାଇ ବ୍ରହ୍ମାଙ୍କ ଆଗରେ ନିଜର ଦୁଃଖ ଜଣାଇଲେ । ବ୍ରହ୍ମା ମେରୁ ପର୍ବତ ଉପରେ ଏକ ଦେବସଭାର ଆୟୋଜନ କଲେ । ତାଙ୍କ ନିର୍ଦ୍ଦେଶରେ ବିଶ୍ୱକର୍ମା ଏକ ସୁନ୍ଦର ଟକମଣ୍ଡପ ସେଠାରେ ତିଆରି କରିଦେଲେ । ବ୍ରହ୍ମା ଓ ସବୁ ଦେବତା ବୈକୁଣ୍ଠପୁରକୁ ଗଲେ ଏବଂ କ୍ଷୀର ସାଗରରେ ଅନନ୍ତ ଶଯ୍ୟାରେ ବିଶ୍ରାମ ନେଉଥିବା ବିଷ୍ଣୁଙ୍କ ଦେବଦେବଙ୍କୁ ପାଖେଟି ଆଣିଲେ ।

ବ୍ରହ୍ମା ଦେବ ସ୍ୱର୍ଗରେ ଭବିଷ୍ୟତ ଘଟଣାବଳୀ ସମ୍ପର୍କରେ ସୂଚନା ଦେବାକୁ ଯାଇ ବିଷ୍ଣୁଙ୍କୁ କହିଲେ—'ପ୍ରଭୋ ! ପୃଥିବୀରେ ବର୍ତ୍ତମାନ ଭାରତ ବଂଶର ରାଜତ୍ୱ ଆରମ୍ଭ ହୋଇଛି । ଅଭିଶପ୍ତ ସାଗର ଶାନ୍ତନୁ ରୂପରେ ପୃଥିବୀରେ ଜନ୍ମ ନେବେ ଓ ଗଙ୍ଗାମାତାଙ୍କୁ ବିବାହ କରିବେ । ଅଷ୍ଟବସୁ ପୂର୍ବରୁ ଅଭିଶାପ ପାଇଥିବାରୁ ସେମାନଙ୍କୁ ମାନବ ଜନ୍ମ ଗ୍ରହଣ କରିବାକୁ ହେବ । ଗଙ୍ଗା ଦେବୀ ସେମାନଙ୍କୁ ଜନ୍ମ ଦେବା ସଙ୍ଗେ ସଙ୍ଗେ ଶାପ ମୁକ୍ତ କରିବା ପାଇଁ ଗଙ୍ଗା ନଦୀରେ ବିସର୍ଜନ କରିବେ । ମାତ୍ର ଦ୍ୟୁ ନାମକ ବସୁ ଦେବବ୍ରତ ନାମରେ ବଂଚି ରହିବେ । ପରେ ଶାନ୍ତନୁ ସତ୍ୟବତୀଙ୍କୁ ବିବାହ କରିବେ । ଶାନ୍ତନୁ ଓ ସତ୍ୟବତୀଙ୍କ ଦୁଇପୁତ୍ରଙ୍କ ଠାରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମ ନେବେ ! ଧୃତରାଷ୍ଟ୍ରଙ୍କ ଶହେପୁଅ ଓ ପାଣ୍ଡୁଙ୍କର ପାଞ୍ଚ ପୁଅ ହେବେ । ଧୃତରାଷ୍ଟ୍ରଙ୍କ ପୁଅମାନେ କୌରବ ଓ ପାଣ୍ଡୁଙ୍କ ପୁଅମାନେ ପାଣ୍ଡବ ବୋଲାଇବେ । ଏମାନଙ୍କ ଭିତରେ ଭ୍ରାତୃବିବାଦ ଲାଗିବ । ଏହି ଯୁଦ୍ଧରେ ସମସ୍ତ ପୃଥିବୀର ରାଜା ମହାରାଜାମାନେ ଦୁଇଦଳରେ ବିଭକ୍ତ ହୋଇ ମହାଯୁଦ୍ଧ କରିବେ । ଏହି ମହାଯୁଦ୍ଧରେ ବହୁ ଜନକ୍ଷୟ ଘଟି ପୃଥିବୀ ଭାର ହ୍ରାସ ହେବ ।

ଆପଣଙ୍କ ରାମ ଅବତାର ସମୟରେ ଭାଇ ଶତ୍ରୁଘ୍ନ ରାବଣର ଭଣଜା ମଧୁ ଓ ତା'ର ପୁତ୍ର ଲବଣାସୁରକୁ ମାରି ଯେଉଁ ମଧୁପୁର ରାଜ୍ୟ ପ୍ରତିଷ୍ଠା କରିଥିଲେ ତାହା ଏ ଯୁଗରେ ମଥୁରା ପୁରୀ ନାମରେ ପ୍ରତିଷ୍ଠିତ । ଏହି ମଥୁରାରେ କଂସ ନାମକ ଏକ ରାକ୍ଷସରାଜା ଶାସନ କରୁଛି । କଂସ ନିଜର ବାହୁ ବଳରେ ଦେବତାମାନଙ୍କୁ ମଧ୍ୟ ପରାସ୍ତ କରିଛି । ନିଜର ପିତା ଉଗ୍ରସେନଠାରୁ ରାଜ୍ୟ ଛଡ଼ାଇ ନେଇ ଏକଛତ୍ର ଶାସନ ଚଳାଇଛି । ତା ଅତ୍ୟାଚାର ଯୋଗୁଁ ମୁନି ଋଷିମାନେ ଯାଗ ଯଜ୍ଞ ମଧ୍ୟ କରି ପାରୁନାହାନ୍ତି । ଫଳତଃ ସେଠାରେ ଧର୍ମ କ୍ଷୟ ହୋଇ ପାପର ମାତ୍ରା ବଢ଼ିବାରେ ଲାଗିଛି ।

ସେହିଭଳି ପ୍ରାଗ୍ ଜ୍ୟୋତିଷ ପୁରରେ ନାଳକାସୁର ନାମକ ରାକ୍ଷସ ରାଜା ହୋଇ ଅତି ଅନାଚାରରେ ଶାସନ ଚଳାଇଛି । ତା ଯୋଗୁଁ ବିଧର୍ମୀ ରାକ୍ଷସମାନେ ଆଉ ଇନ୍ଦ୍ରଚନ୍ଦ୍ର ମାନୁ ନାହାନ୍ତି । ସେମାନେ ସ୍ୱେଚ୍ଛାଚାରୀ ହୋଇ ନାସ୍ତିକ ହୋଇ ଯାଉଛନ୍ତି । ପୁଣି ଆପଣଙ୍କ ଦ୍ୱାରପାଳ ଜୟ ବିଜୟ ମଧ୍ୟ ନିଜର ତୃତୀୟ ତଥା ଶେଷ ଅଭିଶାପର ଜନ୍ମ ନେଇ ଶିଶୁପାଳ ଓ ଦନ୍ତ ବକ୍ର ରୂପେ ଜନ୍ମ ନେଇ ଆପଣଙ୍କ ଦ୍ୱାରା ମରିବାପରେ ଶାପମୁକ୍ତ ହେବେ । ସେହିଭଳି ଧରା ପୃଷ୍ଠରେ ଜରାସନ୍ଧ, ଶାଲ୍ୱ, ମ୍ଳେଚ୍ଛ ରାଜା କାଳାନ୍ତକ, ଶକଟାସୁର, ଅଘାସୁର, ବକାସୁର, ଦ୍ୱିବିଦ, ମୁଷ୍ଟିକ ପ୍ରଭୃତିଙ୍କୁ ମଧ୍ୟ ବିନାଶ କରିବାକୁ ହେବ । ଏଣୁ ପୁଣି-ଥରେ ଆପଣଙ୍କୁ ମର୍ତ୍ତ୍ୟରେ ଲୀଳା ପ୍ରକଟ କରିବାକୁ ହେବ ଭଗବାନ । ”

ମହାବିଷ୍ଣୁ ଆଶ୍ୱାସନା ଦେଇ ବ୍ରହ୍ମା ଓ ଦେବତାମାନଙ୍କୁ କହିଲେ—“ଆପଣମାନେ ଯଥା ସମୟରେ ମୋତେ ଏ ସବୁ ବିଷୟ ସ୍ମରଣ କରାଇ ଥିବା ଯୋଗୁଁ ମୁଁ ଆନନ୍ଦିତ । ଚିନ୍ତାର କୌଣସି କାରଣ ନାହିଁ ।

ମୁଁ ଏହି ଦ୍ୱାପର ଯୁଗରେ କୃଷ୍ଣ ଅବତାର ଗ୍ରହଣ କରି ଧରା ଭାର ନିବାରଣ କରିବି । ଅଧର୍ମୀଙ୍କୁ ଲୋପ କରି ପୁଣି ଧର୍ମ ସଂସ୍ଥାପନ କରିବି । ତେବେ ଦେବବର ବ୍ରହ୍ମା ଆପଣ କୁହନ୍ତୁ ତେବେ ଓ କେଉଁଠାରେ ମୁଁ ନରଦେହ ଧାରଣ କରିବି ?"

ବ୍ରହ୍ମା ଯୋଡ଼ହସ୍ତ ହୋଇ କହିଲେ—"ପ୍ରଭୁ ! ଆପଣ ସ୍ୱୟଂ ଅନ୍ତର୍ଯ୍ୟାମୀ । କେଉଁ କଥା ଆପଣଙ୍କୁ ଅଜଣା ଅଛି କହନ୍ତୁ ? କେବେ ପଡ଼ିଗଲେଣି ଯେତେବେଳେ କେବଳ ମନେପକାଇ ଦେଉଛି ଶୁଣନ୍ତୁ ..ଥରେ କଶ୍ୟପ ବରୁଣଙ୍କ ଘରୁ ଧେନୁ ମାନଙ୍କୁ ହରଣ କରି ନେଇ ଯାଇଥିଲେ । ପରେ ଏକଥା ଜଣାପଡ଼ିବାରୁ ବରୁଣ ଧେନୁଗୁଡ଼ିକ ଫେରାଇ ନେବାକୁ ଇଚ୍ଛା କଲେ ମାତ୍ର ତାଙ୍କର ଦୁଇ ପତ୍ନୀ ଅଦିତି ଓ ସୁରଭି ଏଥିରେ ବାଧା ଦେଲେ । ବରୁଣ ନିରାଶ ହୋଇ ମୋ ଆଗରେ ଏକଥା ଜଣାଇବାରୁ ମୁଁ କଶ୍ୟପ ଓ ତାଙ୍କ ଦୁଇ ପତ୍ନୀଙ୍କୁ ମନୁଷ୍ୟ ଜନ୍ମ ନେଇ ସଂସାର ଦୁଃଖ କଷ୍ଟ ପାଇବା ପାଇଁ ଅଭିଶାପ ଦେଇଥିଲି । ଫଳତଃ କଶ୍ୟପ ବସୁଦେବ ରୂପେ, ଅଦିତି ଦେବକୀ ରୂପେ ଓ ସୁରଭି ରୋହିଣୀ ରୂପେ ମନୁଷ୍ୟ ଜନ୍ମ ପାଇଛନ୍ତି । ଆପଣ ନିଜ କଳାକୁ ଦୁଇ ଭାଗରେ ବିଭକ୍ତ କରି ଦୁଇ ରାଣୀଙ୍କ ଗର୍ଭରେ ଜାତ ହୁଅନ୍ତୁ । ଆପଣଙ୍କ ଏ ଅବତାର କୃଷ୍ଣ-ବଳରାମ ଅବତାର ରୂପେ ବିଦିତ ହେଉ ।"

ଭଗବାନ କହିଲେ ତଥାସ୍ତୁ । ତେବେ ଦୁଷ୍ଟ ନିବାରଣ ପାଇଁ ଦେବତାଏ ମୋତେ ସହାୟତା ପ୍ରଦାନ କରିବାକୁ ହେବ । ଦେବଗଣ ମଧ୍ୟ ଆତ ପଛ ହୋଇ ପୃଥିବୀରେ ନିଜ ନିଜ କଳାରେ ମନୁଷ୍ୟ ଜନ୍ମ ଗ୍ରହଣ କରନ୍ତୁ । ଆପଣ ଏ ଦାୟିତ୍ୱ ସ୍ୱୟଂରୂପେ ନିର୍ବାହ କରିବେ ବୋଲି ମୋର ବିଶ୍ୱାସ ।"

ବ୍ରହ୍ମା ଏଥିରେ ସମ୍ମତ ହେଲେ । ଦେବତାଏ ଭଗବାନ ବିଷ୍ଣୁଙ୍କ ଜୟ ଜୟକାର ନାଦରେ ଗଗନ ପବନ ମୁଖରିତ କଲେ ।

ମଥୁରାର ରାଜା ଥିଲେ ଶୂରସେନ । ତାଙ୍କର ଦୁଇ ପୁଅଙ୍କ ନାମ ହେଲା ଉଗ୍ରସେନ ଓ ଦେବକ । ଉଗ୍ରସେନଙ୍କ ବଡ ପୁଅ ଥିଲା କଂସ । କଂସ ରାକ୍ଷସ ରୂପେ ଜନ୍ମ ନେଇଥିଲା । ସେ ନିଜ ପିତା ଉଗ୍ରସେନଙ୍କୁ ରାଜ ସିଂହାସନରୁ ତଡ଼ି ଦେଇ ମଥୁରାର ରାଜା ହୋଇଗଲା । ଉଗ୍ରସେନ ମଥୁରା ନଗରୀର ଜଗୁଆଳି ରୂପେ କଂସ ଦ୍ୱାରା ନିଯୁକ୍ତ ହେଲେ । ନିଜର ଅପରିସୀମ ବାହୁ ବଳ ଉପରେ କଂସର ଖୁବ୍ ଭରସା ଥିଲା । ବଳବାନ ହୋଇଥିବାରୁ ସେ ଦିନକୁ ଦିନ ଉଦ୍ଧତ ହୋଇ ଉଠୁଥାଏ । ତାହାର ଦୁଷ୍ଟ ପ୍ରକୃତି ଯୋଗୁଁ ଦେବ, ଦାନବ, ମାନବ କେହିହେଲେ ତା'ର ବିରୋଧ କରିବା ପାଇଁ ସାହସ କରୁନଥାନ୍ତି । କଂସ ରାଜା ହେବାପରେ ରାକ୍ଷସ ପ୍ରକୃତିର ଯେତେକ ଯେଉଁଠି ପ୍ରଜାଥିଲେ ଆସି କଂସର ଆଶ୍ରୟରେ ବେଶ୍ ମଜ୍ଜାରେ ରହିଲେ ।

ଦେବକଙ୍କ ଝିଅର ନାମ ଦେବକୀ । ଦେବକୀଙ୍କ ସହିତ ବସୁଦେବ ନାମକ ଜଣେ ସ୍ୱେକ ବଂଶୀୟ କ୍ଷତ୍ରୀୟ ବୀରଙ୍କ ବିବାହ ହେଲା । ବିବାହଉତ୍ସବ ଶେଷ ହେବା ପରେ ବସୁଦେବ-ଦେବକୀଙ୍କ ସହିତ ରଥରେ ବସି ନିଜ ରାଜ୍ୟ ଗୋପକୁ ଯିବାକୁ ବାହାରିଲେ । ମହାରାଜ କଂସ ସେହି ରଥ ଚଲାଇ ବସୁଦେବ ଓ ଦେବକୀଙ୍କୁ ଛାଡ଼ିଦେବା ପାଇଁ ଯାଉଥାଏ । ହଠାତ୍ ନାରଦ ଆକାଶବାଣୀ ଶୁଣାଇଲେ—" ରେ କଂସ ! ଅଜ୍ଞାନ ଓ ବର୍ବର ମୂଢ଼ ଯେଉଁ ଭଉଣୀକୁ ରଥରେ ବସାଇ ଛାଡ଼ିବାକୁ ନେଉଛୁ ସେହି ଦେବକୀର ଅଷ୍ଟମ ପୁତ୍ର ଦ୍ୱାରା ତୋର ମୃତ୍ୟୁ ହେବ ।" ଏକଥା କାନରେ ପଡ଼ିବା କ୍ଷଣି କଂସ ରଥ ଉପରୁ ଡେଇଁ ପଡ଼ିଲା । ସଙ୍ଗେ ସଙ୍ଗେ ଦେବକୀଙ୍କ କେଶ ଧରି ଟାଣି ଆଣି କହିଲା " ମୂଳକୁ ମାରିଦେଲେ ଯିବ ସବୁ ଦେବକଙ୍କ ସଙ୍ଗେ କଂପା କଲା " ? ନିଜର ଖଣ୍ଡା ବାହାର କରି ଦେବକୀଙ୍କ ବେକରେ ଚୋଟ ପକାଇବା ପାଇଁ ଉଦ୍ୟତ ହେଲା । ଏକଥା ଦେଖି ବସୁଦେବ ହାତଯୋଡ଼ି କହିଲେ—"କ୍ଷମା କରନ୍ତୁ ରାଜ ଦେବ ! ଆପଣ ଏକଣ କରିବା ପାଇଁ ଯାଉଛନ୍ତି । ଆପଣଙ୍କ ଭଉଣୀର ଶୁଭ ବିବାହ ଅବସରରେ ତାକୁ ବଧ କରି ଅଯଥା ନାରୀ ହତ୍ୟା ଓ ଭଗିନୀ ହତ୍ୟା ପାପ ଅର୍ଜନ କରନ୍ତୁ ନାହିଁ । ଦେବକୀର କି ଦୋଷ କହିଲେ ? ତାହାର ଅଷ୍ଟମ ସନ୍ତାନ ଆପଣଙ୍କର ଶତ୍ରୁ ହୋଇପାରେ । ମୁଁ ଭଗବାନଙ୍କ ନାମ ନେଇ ଶପଥ କରି କହୁଛି ଯେ ଦେବକୀ ଯେତୋଟି ସନ୍ତାନ ଜନ୍ମ କରିବ ସେ ସବୁକୁ ଗୋଟି ଗୋଟି କରି ମୁଁ ଆପଣଙ୍କୁ ସଙ୍ଗେ ସଙ୍ଗେ ଅର୍ପଣ କରିବି । ମୁଁ ବିନମ୍ର ନିବେଦନ କରୁଛି ଆପଣଙ୍କ ଅଳ୍ପଅଳ ଭଉଣୀଟିର ଜୀବନ ରକ୍ଷା କରନ୍ତୁ ।"

ଏଭଳି ବହୁତ ଅନୁନୟ ହୋଇ କହିବା ପରେ କଂସ ଦେବକୀକୁ ବସାଇ ଛାଡ଼ିଦେଲା । ହେଲେ ବସୁଦେବଙ୍କୁ ଆଉ ତାଙ୍କ ନିଜ ରାଜ୍ୟକୁ ଛାଡ଼ିଦେଲା ନାହିଁ । ସେ ଉଭୟ ବସୁଦେବ ଓ ଦେବକୀଙ୍କୁ ଆଣି ବନ୍ଦୀଶାଳାରେ ରଖାଇଲା । ଦେବକୀଙ୍କ ସନ୍ତାନ ଜନ୍ମ ସମ୍ବାଦ ଯେପରି ଶୀଘ୍ର ବେଗରେ ତା ପାଖରେ ପହଞ୍ଚି ପାରିବ ସେଥିପାଇଁ କଡ଼ା ବ୍ୟବସ୍ଥା କରାଗଲା । ବନ୍ଦୀଶାଳାରେ ବସୁଦେବ ଓ ଦେବକୀ ରାଜ୍ୟ ଆଦରେ ରହିଲେ । ନାରଦ ଆସି ଭଗବାନ ବିଷ୍ଣୁଙ୍କୁ ଏ କଥା ସବୁ ଜଣାଇଦେଲେ । କଂସକୁ ସେ ଆକାଶବାଣୀ ଦ୍ୱାରା ସାବଧାନ କରାଇ ଦେବା ଫଳରେ କଂସ ଅଯଥା ଶିଶୁ ହତ୍ୟା କରି କରି ନିଜର ପାପର ମାତ୍ରା ବଢ଼ାଇବ ଏବଂ ପାପହିଁ ତାକୁ ଭବିଷ୍ୟତରେ ବିନାଶ କରିବ ଏହା ବିଧିର ବିଧାନ ଥିଲା । ନାରଦ ବିଦାୟ ନେଲେ ।

ନାରଦଙ୍କ ଯିବା ପରେ ବିଷ୍ଣୁ ମହାମାୟାଙ୍କୁ ସ୍ମରଣା କଲେ । ମହାମାୟା ପ୍ରକଟ ହେବାରୁ ବିଷ୍ଣୁଦେବ କହିଲେ—"ମା' ତୁମ ଦ୍ୱାରା ଅନେକ ଦେବକାର୍ଯ୍ୟ ସମ୍ପନ୍ନ ହେବ । ସତ୍ୟ ଯୁଗରେ କାଳନେମୀ ନାମକ ଏକ ରାକ୍ଷସ ତପସ୍ୟା ବଳରେ ବ୍ରହ୍ମାଙ୍କ ଠାରୁ ବହୁତ

ବର ପାଇ ନିଜକୁ ଶକ୍ତିଶାଳୀ କରି ପାରିଥିଲା । କାଳନେମୀ ଦେଖିବାପାଇଁ ଥିଲା ଖୁବ୍ ଭୟଙ୍କର । ତା'ର ଥିଲା ଏକ ଶହ ମୁଣ୍ଡ ଓ ଦୁଇଶହ ହାତ । ସେ ନିଜ ବାହୁ ବଳରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆଦି ତିନିପୁର ଜୟ କଲା । ଦେବତାମାନେ ତା ଭୟରେ ସ୍ୱର୍ଗଛାଡ଼ି ଅନ୍ୟ ଗୋପନ ରହିଲେ । ଶେଷରେ ସେ ମୋ ସହ ଯୁଦ୍ଧ କରିବା ପାଇଁ ମୋତେ ଆକ୍ରମଣ କଲା । ମୁଁ ସୁଦର୍ଶନ ଚକ୍ର ଦ୍ୱାରା ତାକୁ ବଧ କରିଦେଲି । ମାତ୍ର ବୈରଭାବ୍ୟୋଗୁଁ ଏଯୁଗରେ ସେ କଂସ ରୂପେ ଜନ୍ମ ନେଇଛି । କାଳନେମୀ ମରିବା ପରେ ତା'ର ଛଅ ପୁତ୍ର ଅମର ହେବା ପାଇଁ ତପସ୍ୟା କରୁଥିଲେ । ସେ ସମୟରେ ଅସୁର କୁଳର ଶ୍ରେଷ୍ଠ ଥିଲା ହିରଣ୍ୟ-କଶିପୁ । ସେ କାଳନେମୀର ପୁଅମାନଙ୍କୁ ଅଭିଶାପ ଦେଇଥିଲା—" ମୁଁ ଥାଉ ଥାଉ ତୁମ୍ଭେମାନେ ଅମର ହୋଇ ମୋ ସ୍ଥାନ ହାସଲ କରିବା ପାଇଁ ଚେଷ୍ଟା କରୁଥିବାରୁ ମୁଁ ତୁମ୍ଭମାନଙ୍କୁ ଅଭିଶାପ ଦେଉଛି ଯେ ତୁମେ ନିଜ ପିତା ହାତରେ ହିଁ ପର ଜନ୍ମରେ ପ୍ରାଣ ଦେବ ।" ସେହି ଅଭିଶାପ ସଫଳ କରାଇବା ପାଇଁ ତୁମେ କାଳନେମୀର ଛଅ ପୁଅଙ୍କୁ ଦେବକୀଙ୍କ ଗର୍ଭରୁ ଜନ୍ମ ଦିଅ । କଂସ ସେହି ପୁଅମାନଙ୍କୁ ନିଜେ ମାରି ଶାପମୁକ୍ତ କରାଇବ ।

ସପ୍ତମ ଗର୍ଭରେ ମୋର ଅଂଶ ଶେଷନାଗ ଜନ୍ମ ହେବେ । ତୁମେ ଦେବକୀଙ୍କ ଗର୍ଭରୁ ତାଙ୍କୁ ହରଣ କରି ବସୁଦେବଙ୍କ ଅନ୍ୟରାଣୀ ରୋହିଣୀଙ୍କ ଗର୍ଭରେ ସ୍ଥାପନ କରିବ । ଶେଷନାଗ ବଳରାମ ରୂପେ ଜନ୍ମ ହେବେ ଓ ଗୋପରେ ଥିବେ । ଠିକ୍ ତା'ର ଏକ ବର୍ଷ ପରେ ମୁଁ ନିଜେ ଦେବକୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିବି । ତୁମେ ଠିକ୍ ସେହି ରାତିରେ ନନ୍ଦଙ୍କ ରାଣୀ ଯଶୋଦାଙ୍କ ଝିଅରୂପେ ଜନ୍ମ ନେବ । ବସୁଦେବ ମୋତେ ନେଇ ଯଶୋଦାଙ୍କ ପାଖରେ ଛାଡ଼ିବେ ଏବଂ ତୁମକୁ ବଦଳାଇ ଆଣି ଦେବକୀଙ୍କ କୋଳରେ ଛାଡ଼ିବେ । କଂସ ତୁମକୁ ମାରିବା ବେଳେ ତୁମେ ତା ହାତରୁ ଆକାଶ ମାର୍ଗକୁ ଖସିଯାଇ ତାକୁ ଚେତାବନୀ ଶୁଣାଇ ଦେବ ଓ ବିଦାୟ ନେବ । ମୋର ଭଉଣୀ ରୂପେ ତୁମେ ସେହି ଦିନଠାରୁ ତିନି ଲୋକରେ ପୂଜିତ ହେବ ।" ମହାମାୟା ବିଷ୍ଣୁଙ୍କ କଥାରେ ସମ୍ମତ ହୋଇ ବିଦାୟ ନେଲେ ।

ବିଧିର ବିଧାନ କେ' କରିପାରେ ଆନ । ସମସ୍ତ କ୍ରମେ ଗୋଟିଏ ପରେ ଗୋଟିଏ ଘଟଣା ଘଟିବାକୁ ଲାଗିଲା । ଯଥା ସମୟରେ ଦେବକୀ ପ୍ରଥମ ପୁଅକୁ ଜନ୍ମ ଦେଲେ । ବସୁଦେବ ସଙ୍ଗେ ସଙ୍ଗେ ପୁଅକୁ ନେଇ କଂସକୁ ସମର୍ପଣ କଲେ । ଗୁଲୁ ଗୁଲିଆ ସୁନ୍ଦର ବାଳକ ଶିଶୁଟିକୁ ଦେଖି କଂସ ଭାବିଲା ଆହା ! ଏ ବାଳକ ତ ମୋର ଶତ୍ରୁ ହେବନାହିଁ ଏହାକୁ ମାରି ଲାଭ କ'ଣ ? ସେ ବସୁଦେବଙ୍କୁ କହିଲା—"ବସୁଦେବ ! ତୁମେ ତୁମର ବଚନ ରକ୍ଷା କରିଥିବାରୁ ମୁଁ ତୁମ ଉପରେ ତୁଷ୍ଟ । ଏ ପିଲାକୁ ମୁଁ କ୍ଷମାକରି ଛାଡ଼ିଦେଲି ନେଇଯାଅ ।" ବସୁଦେବ ଖୁବ୍ ଆନନ୍ଦ ହେଲେ । କଂସକୁ ବାରମ୍ବାର କୃତଜ୍ଞତା ଜ୍ଞାପନ କରି ଶିଶୁ ପୁତ୍ରକୁ ନେଇ ବନ୍ଦୀ ଶାଳାକୁ ଲେଉଟି ଗଲେ ।

ମାତ୍ର ନାରଦମୁନି ଏକଥା ଲକ୍ଷ୍ୟ କରୁଥିଲେ । ସେ ଆକାଶ ମାର୍ଗରୁ ଖସି କଂସକୁ କହିଲେ—"କଂସ ! ତୁମେ ଜାଣି ଜାଣି ଭୁଲ୍ କରୁଛ କାହିଁକି ? ଦେବକୀଙ୍କ ଅଷ୍ଟମ ଗର୍ଭର ପୁତ୍ର ତୁମର ଶତ୍ରୁ ହୋଇ ଜନ୍ମ ହେବା ପରେ ଏହି ଅନ୍ୟ ଭାଇମାନେ ତା ସହିତ ମିଶି ତୁମ ପ୍ରତି ବିପଦ ସୃଷ୍ଟି କରିବେ । ସାବଧାନ ! ନାରଦଙ୍କଠାରୁ ଏତିକି ଶୁଣିବା ପରେ କଂସର ମନ ନର୍ଦ୍ଦିସ୍ଥ ହୋଇ ଉଠିଲା । ସେ ଗର୍ଜନ କରି ବନ୍ଦୀଶାଳାକୁ ଗଲା । ଦେବକୀଙ୍କ କୋଳରୁ ନବଜାତ ଶିଶୁଟିକୁ ଛଡ଼ାଇ ଆଣିଲା ଏବଂ ପଥରରେ କଚାଡ଼ି ମାରି ପକାଇଲା । ଏହିଭଳି ଥରେ ନୁହେଁ ଦୁଇଥର ନୁହେଁ ଛଅଥର ଦେବକୀଙ୍କ ଛଅ ପୁଅକୁ ଆଣି କଂସ ହତ୍ୟାକଲା । କ୍ରମେ ଦେବକୀ ସପ୍ତମ ଥର ମାଆ ହେବାକୁ ବସିଲେ । ଭଗବାନଙ୍କ ପୂର୍ବ ସିଦ୍ଧାନ୍ତ ଅନୁସାରେ ଅନନ୍ତନାଗ ବସ୍ତ୍ରକଳା ନେଇ ସପ୍ତମ ଗର୍ଭରେ ରହିଲେ । ମହାମାୟା ସେ ଗର୍ଭକୁ ହରଣ କରି ନେଲେ ଏବଂ ଗୋପରେ ରହୁଥିବା ବସୁଦେବଙ୍କ ଅନ୍ୟ ରାଣୀ ରୋହିଣୀଙ୍କ ଶୂନ୍ୟଗର୍ଭରେ ସ୍ଥାପନ କଲେ । ଏଣେ ଦେବକୀଙ୍କ ଗର୍ଭପାତ ହୋଇ ସନ୍ତାନଟି ନଷ୍ଟ ହୋଇଗଲା ବୋଲି ପ୍ରଚାର କରାଗଲା । କଂସ ଏଥିରେ ସନ୍ତୁଷ୍ଟ ହେଲା । ଯେହେତୁ ଅଷ୍ଟମ ଗର୍ଭର ସନ୍ତାନ ତାହାର ମୂଳ ଶତ୍ରୁ ହେବ ଭାବି କଡ଼ା ଜଗିପହରା ବ୍ୟବସ୍ଥା ଜାରି କଲା ।

ଯଥା ସମୟରେ ରୋହିଣୀଙ୍କ ଗର୍ଭରୁ ଏକ ଧବଳାଙ୍ଗ ବୀର କୁମାର ଜନ୍ମନେଲେ । ଦେବକୀଙ୍କ ଗର୍ଭରୁ ରୋହିଣୀଙ୍କ ଗର୍ଭକୁ ଆକର୍ଷଣ କରାଯାଇଥିବାରୁ ତାଙ୍କର ଜାତକ ନାମ ସଂକର୍ଷଣ ହେଲା । ପୁଣି ରାମଙ୍କ ଭଳି ସୁନ୍ଦର ଏବଂ ବଳବାନ୍ ହୋଇଥିବାରୁ ତାଙ୍କର ଶ୍ରଦ୍ଧାନାମ ବଳରାମ ବା ଭଦ୍ରତାର ସହିତ ବଳଭଦ୍ର ବୋଲି ନାମିତ ହେଲା । ବଳରାମଙ୍କ ଜନ୍ମ ହେବାର ଠିକ୍ ଏକ ବର୍ଷପରେ ଦେବକୀଙ୍କ ପୁଣି ସନ୍ତାନ ପ୍ରସବ ସମୟ ଉପଗତ ହେଲା । ଏହା ଥିଲା ତାଙ୍କର ଅଷ୍ଟମ ତଥା ଶେଷ ଗର୍ଭ ଏବଂ ସ୍ୱୟଂ ଭଗବାନ ବିଷ୍ଣୁ ଗର୍ଭଗତ ଥାନ୍ତି । ଶ୍ରୀ ଭଗବାନଙ୍କୁ ଧାରଣ କରି ଦେବକୀ ଖୁବ୍ ସୁନ୍ଦର ଦେଖାଯାଉଥାନ୍ତି । ପ୍ରସବ ସମୟ ଯେତିକି ପାଖେଇ ଆସୁଥାଏ କଂସର ମନ ସେତିକି ବିଚଳିତ ହେଉଥାଏ । ଶେଷରେ ସେହି ଶୁଭଲଗ୍ନ ଉପସ୍ଥିତ ହେଲା । ଭାଦ୍ରବ ମାସ କୃଷ୍ଣ ଅଷ୍ଟମୀ ତିଥିରେ ଯେତେବେଳେ ଚନ୍ଦ୍ର ରୋହିଣୀ ନକ୍ଷତ୍ରରେ ପ୍ରବେଶକଲେ ଅର୍ଦ୍ଧରାତ୍ରି ବେଳେ ଭଗବାନ ଶ୍ରୀକୃଷ୍ଣ ମାତା ଦେବକୀଙ୍କ ଠାରୁ ଜନ୍ମ ଗ୍ରହଣ କଲେ ।

ଭଗବାନଙ୍କ ଜନ୍ମ ସମୟରେ ପ୍ରଚଣ୍ଡ ଝଡ଼ ବର୍ଷା ହେଉଥାଏ । ମେଘ ଗର୍ଜନ ଶବ୍ଦ ଶୁଣାଯାଉଥାଏ । ସମସ୍ତ ମଥୁରାନଗରୀ ଶୁନ୍ ଶାନ୍ । ବନ୍ଦୀଶାଳାରେ ପହରା ଦେଉଥିବା ପ୍ରହରୀମାନେ ଅଚେତ ହେଲାଭଳି ଶୋଇ ଯାଇଥାନ୍ତି । ଜନ୍ମ ହେବା ପରେ ପରେ ଭଗବାନଙ୍କ ସୁନ୍ଦର ରୂପ ତେଜରେ ବନ୍ଦୀଶାଳା ଆଲୋକିତ ହୋଇ ଉଠିଲା । ଦେବତାମାନେ ପୁଷ୍ପ ବୃଷ୍ଟି କଲେ । ଏକ ସ୍ୱର୍ଗୀୟ ସୁଗନ୍ଧ ଚାରିଆଡ଼େ ଖେଳିଗଲା । ଶିଶୁ କୃଷ୍ଣଙ୍କ ଦେହର ବର୍ଣ୍ଣଥିଲା ନୀଳ ମେଘବର୍ଣ୍ଣ ସଦୃଶ୍ୟ । ତାଙ୍କର କମଳ ନେତ୍ରରେ ଭରି

ରହୁଥିଲା ଦୁଃଖକଷ୍ଟ ହରଣକାରୀ ଆସିଥିଲେ। ବନ୍ଦୀଶାଳାରେ କେବଳ ବସୁଦେବ ଓ ଦେବକୀଙ୍କ ବ୍ୟତୀତ କେହି ନଥିଲେ। ସୁନ୍ଦର ଅପରୂପ ସୌନ୍ଦର୍ଯ୍ୟରେ ସେମାନେ ମୁଗ୍ଧ ହୋଇ ଯାଇଥିଲେ। ଆନନ୍ଦରେ ଦୁଇଜଣଙ୍କ ଚକ୍ଷୁରୁ ଲୋତକ ଗଡ଼ି ଆସୁଥାଏ। ଏଭଳି ଦୁର୍ଲଭ ଶିଶୁଟିକୁ କଂସଠାରୁ ସେ କୌଣସି ଉପାୟରେ ରକ୍ଷା କରିବାକୁ ହେବ। କ'ଣ କରାଯାଇପାରେ ବସୁଦେବ ଚିନ୍ତା କରିପାରୁନଥାନ୍ତି।

ହଠାତ୍ ଶୂନ୍ୟବାଣୀ ହେଲା—"ବସୁଦେବ ! ତୁମେ କାଳବିଳମ୍ବ ନକରି ଏହି ଦିବ୍ୟ ଶିଶୁଟିକୁ ଗୋପପୁରକୁ ନେଇ ଯାଅ। ଗୋପରେ ନନ୍ଦରାଣୀ ଜନ୍ମ କରିଥିବା ଶିଶୁକନ୍ୟାଟିକୁ ବଦଳାଇ ବନ୍ଦୀ ଶାଳାକୁ ନେଇ ଆସ ଏବଂ ଶିଶୁପୁତ୍ରଟିକୁ ଯଶୋଦାଙ୍କ କୋଳରେ ରଖିଦେଇ ଆସ। ଏଥିରେ ନିଜେ ଭଗବାନ ତୁମର ସହାୟ ହେବେ।"

ବସୁଦେବ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ। ସେ ଦିବ୍ୟ ଶିଶୁଟିକୁ ଧରି ଆଗକୁ ପାଦ ବଢ଼ାଇଲେ। ଆଶ୍ଚର୍ଯ୍ୟର କଥା ଆପେ ଆପେ ବନ୍ଦୀଶାଳାର ରୁଦ୍ଧ କବାଟ ଗୁଡ଼ାକ ଖୋଲିଗଲା। ପ୍ରହରୀମାନେ ଅଚେତ ହୋଇ ପଡ଼ିଥିଲେ। ବସୁଦେବଙ୍କୁ କୌଣସି ଅସୁବିଧା ହେଲା ନାହିଁ। ସେ ଖୁବ୍ ଶୀଘ୍ର ଗତିରେ ଗୋପ ଆଡ଼କୁ ପାଦ ବଢ଼ାଇଲେ। ମୁଣ୍ଡ ଉପରେ ଗୋଟାଏ ଟୋକେଇରେ ଭଗବାନଙ୍କୁ ସେ ଧାରଣ କରିଥାନ୍ତି। ମୁହଁକୁ ମୁହଁ ଦେଖାଯାଉ ନଥାଏ। ଘୋର ଅନ୍ଧାର। ବିଜୁଳି ଆଲୋକରେ ସେ ରାସ୍ତା ବାରି ଚାଲିଥାନ୍ତି। ମଥୁରା ନଗରୀ ସୀମା ପାରହେବାକୁ ଚାଲିଥିଲେ କଂସର ପିତା ଉଗ୍ରସେନ ବସୁଦେବଙ୍କୁ ଦେଖିଦେଲେ। ସେ ପ୍ରହରୀ କାର୍ଯ୍ୟ କରୁଥିଲେ। ସେ ବସୁଦେବଙ୍କୁ ଅଟକାଇ ସବୁ କଥା ଜାଣିଦେଲେ। କଂସ ଏକଥା ଜାଣିବା ପରେ ନିଜର ମୁଣ୍ଡକାଟ ହୋଇପାରେ ତେଣୁ ସେ ବସୁଦେବଙ୍କୁ ଫେରିଯିବା ପାଇଁ କହିଲେ। ମାତ୍ର ବସୁଦେବ କହିଲେ ସେ ସ୍ୱୟଂ ଭଗବାନଙ୍କ ନିର୍ଦ୍ଦେଶରେ ଏହା କରୁଛନ୍ତି, ତେଣୁ ଭୟର କାରଣ ନାହିଁ। ଉଗ୍ରସେନ ଦିବ୍ୟ ଶିଶୁଟିକୁ ଦେଖିବାକୁ ଚାହିଁଲେ। ବସୁଦେବ ଟୋକେଇଟି ତଳକୁ ଓହ୍ଲାଇ ଦେଖାଇଲେ। ଉଗ୍ରସେନ ଜାଣୁ ଟୋକେଇ ଭିତରେ "ଶଙ୍ଖ ଚକ୍ର ଗଦା ପଦ୍ମ" ଧାରୀ ସ୍ୱୟଂ ବିଷ୍ଣୁଙ୍କ ସ୍ୱରୂପ ଦେଖି ଭକ୍ତି ଗଦ୍ ଗଦ୍ ହୋଇଗଲେ। ଆକାଶବାଣୀ ଶୁଣାଗଲା—"ଉଗ୍ରସେନ ! ତୁମେ ଏକଥା ପ୍ରକଟ କରିବ ନାହିଁ। ଭଗବାନ ଶ୍ରୀକୃଷ୍ଣ ଗୋପରେ ବଢ଼ିବେ ଏବଂ ଯଥା ସମୟରେ କଂସକୁ ବଧ କରି ତୁମକୁ ମଥୁରା ରାଜ ସିଂହାସନରେ ଅଭିଷିକ୍ତ କରିବେ। ରାସ୍ତା ଛାଡ଼ିଦିଅ।" ଉଗ୍ରସେନ ବାରମ୍ବାର ପ୍ରଣାମ ଜଣାଇ ବସୁଦେବଙ୍କୁ ରାସ୍ତା ଛାଡ଼ିଦେଲେ।

ବସୁଦେବ ଆସି ଯମୁନା ନଦୀ କୂଳରେ ପହଞ୍ଚିଥିଲେ। ଉଚ୍ଛୁଳା ଯମୁନା। ବନ୍ୟା ଜଳରେ ନଦୀର ଅଲ କୂଳ ଦେଖାଯାଉନଥାଏ। ପାଣିରେ ଲହରୀ ଓ ଜଳ ଭଉଁରୀ ଦେଖିଲେ ଖୁବ୍ ଭୟ ଲାଗୁଥାଏ। ଯମୁନା ଆରକୂଳରେ ଗୋପପୁର। ବସୁଦେବ କିପରି ପାରିହେବେ। ଶେଷରେ ଶ୍ରୀହରିଙ୍କୁ ସ୍ମରଣ କରି ସେ ଯମୁନାରେ ପଶିଗଲେ।

ଆଶ୍ଚର୍ଯ୍ୟର କଥା ଯମୁନା ନଦୀରେ ଏକ ରାସ୍ତା ଖୋଲିଗଲା । ବସୁଦେବ ସେ ରାସ୍ତାରେ ସ୍ୱାଭାବିକ ଭାବେ ଝୁଲି ଝୁଲି ନଦୀ ପାର ହୋଇଗଲେ । ଏଣେ ଭଗବାନଙ୍କୁ ବର୍ଷା ଦାଉରୁ ରକ୍ଷା କରିବା ପାଇଁ ବାସୁକୀ ନାଗ ନିଜର ଫଣା ଦ୍ୱାରା ଶିଶୁ କୃଷ୍ଣଙ୍କୁ ଘୋଡ଼ାଇ ରଖି ବସୁଦେବଙ୍କ ଅଲକ୍ଷ୍ୟରେ ନଦୀରେ ଯାଉଥାନ୍ତି ।

ବସୁଦେବ ଯଥାଶିଘ୍ର ଗୋପରେ ପହଞ୍ଚିଗଲେ । ସେଠାରେ ମଧ୍ୟ ସବୁ ଶୁନ୍‌ଶାନ୍ । ରାଜପ୍ରାସାଦର ଦ୍ୱାର ଖୋଲା । ପ୍ରହରୀମାନେ ଅଚେତ ହୋଇ ପଡ଼ିରହିଥାନ୍ତି । ବସୁଦେବ ସିଧା ଯାଇ ରାଣୀ ହଂସପୁରରେ ପହଞ୍ଚିଲେ ।

ଯଶୋଦା ରାଣୀ ସଦ୍ୟଜାତ କନ୍ୟା ସନ୍ତାନଟିଏ ପ୍ରସବ କରି ମୂର୍ଚ୍ଛା ହୋଇ ପଡ଼ିଥାନ୍ତି । ଦାସୀ ବା ପୋଇଲି ପରିଧାରେ କେହି ନଥାନ୍ତି । କେବଳ ପ୍ରଦୀପଟିଏ ଜଳୁଥାଏ । ସେହି ମିଞ୍ଜି ମିଞ୍ଜି ଆଲୁଅ ଭିତରେ ବସୁଦେବ ଯଶୋଦାଙ୍କ କୋଳରେ କୃଷ୍ଣଙ୍କୁ ରଖି ଦେଲେ ଏବଂ ଶିଶୁ କନ୍ୟାଟିକୁ ଧରି ଲେଉଟି ଆସିଲେ । ଏକଥା କେହି ଜାଣିପାରିଲେ ନାହିଁ ।

ବସୁଦେବ ବନ୍ଦୀଶାଳାକୁ ଫେରିବା ପରେ ଶିଶୁକନ୍ୟା କାନ୍ଦି ଉଠିଲା । କୁଆଁ କୁଆଁ ରାବ ଶୁଣିବା ପରେ ସମସ୍ତଙ୍କ ନିଦ ଭାଙ୍ଗିଗଲା । ପ୍ରହରୀମାନେ ଯାଇ କଂସକୁ ସନ୍ତାନ ପ୍ରସବ ହେବା ଖବର ଦେଲେ । ନିଦ ମଳ ମଳ ଆଖିରେ କଂସ ବନ୍ଦୀଶାଳାକୁ ଦୌଡ଼ିଗଲା । ସେ ଦେବକୀ ଠାରୁ ଶିଶୁକନ୍ୟାଟିକୁ ମୁବଂଥର ଭଳି ଛଡ଼ାଇ ଆଣିଲା । ଦେବକୀ ବିକଳ ହୋଇ କହିଲେ—"ଭାଇନା ! ଏଇଟା ପୁଅନୁହେ ଝିଅଟା । ସାମାନ୍ୟ ଝିଅଟା ତୁମର କି ଶତ୍ରୁତା କରିବ । ତୁମ ଗୋଡ଼ତଳେ ପଡ଼ୁଛି । ସବୁ ପୁଅଗୁଡ଼ାକୁତ ମାରିଛ, ଅନ୍ତତଃ ଏଇଟିକୁ ଛାଡ଼ିଦିଅ । ନେହୁରା ହେଉଛି । ଭିକ୍ଷା ମାଗୁଛି ।"

କଂସ କଳୁ ଅଟ୍ଟହାସ କରି କହିଲା—"ଦେବକୀ ! ମନେହୁଏ ତୁ ମୋର ମୃତ୍ୟୁ କାମନା କରୁଛୁ । ତୋର ଅଷ୍ଟମ ଗର୍ଭର ସନ୍ତାନ ମୋର ମୃତ୍ୟୁର କାରଣ ହେବ ବୋଲି ଶୂନ୍ୟବାଣୀ ଶୁଣିଛି । ପୁଅ ହେଉ କି କନ୍ୟା ହେଉ ଜାଣି ଜାଣି ଏହାକୁ ବଞ୍ଚାଇ ରଖିବା ମୂର୍ଖ ମୁଁ ନୁହେ । ତା' ଛଡ଼ା ଭଗବାନ ନାରୀ ରୂପରେ ଦୁର୍ଗାସାଜି ସତ୍ୟଯୁଗରେ ମହିଷାସୁରକୁ ବଧ କରିଥିବା କଥା ମୁଁ ଭଲଭାବେ ଜାଣେ । ମାୟାବୀ ବସ୍ତୁକୁ ଚିହ୍ନିବା କଷ୍ଟକର । ତେଣୁ ଏହାକୁ ପ୍ରଥମରୁ ମାରିଦେଲେ ଭଲ ।" ଏହାପରେ କଂସ ଶିଶୁ କନ୍ୟାଟିର ଗୋଡ଼ଧରି ବୁଲାଇ ବୁଲାଇ ପଥର ଉପରେ କଚାଡ଼ି ଦେଲା । ମାତ୍ର ଏକ ଅଲୌକିକ ଘଟଣା ଘଟିଲା । ଶିଶୁଟି ବିଜୁଳି ବେଗରେ କଂସ ହାତରୁ ଖସିଯାଇ ଆକାଶକୁ ଉଠିଗଲା ଏବଂ ଆକାଶବାଣୀ ଶୁଣାଗଲା—"ରେ ଦୁଷ୍ଟ କଂସ ! ଶିଶୁ ହତ୍ୟା କରି କରି ତୁ ମହାପାପ ଅର୍ଜନ କରିଛୁ । ତୋର ମୃତ୍ୟୁ ଦିନ ଖୁବ୍ ଶିଘ୍ର ଆସି ଉପସ୍ଥିତ ହେବ । ତୋର ଶତ୍ରୁ ଜନ୍ମ ହୋଇସାରି ଗୋପରେ ବଢ଼ୁଛନ୍ତି ଯଥା ସମୟରେ ସେ ମଥୁରା ଆସି ତୋତେ ବଧ କରିବେ । ସାବଧାନ ! ମହାମାୟା ରୂପି ଶିଶୁ ଶୂନ୍ୟରେ ମିଳାଇଗଲେ ।

କଂସର ମୁଣ୍ଡ ଘୂରିଗଲା । ସେ ଭୟଭୀତ ହୋଇପଡ଼ିଲା । ଭୟ ଓ କ୍ରୋଧରେ ସେ ଦେବକୀ ଓ ବସୁଦେବଙ୍କ ପ୍ରତି ଅତ୍ୟାଚାର ଆରମ୍ଭ କରିଦେଲା । କେବଳ ଶ୍ରୀକୃଷ୍ଣଙ୍କ ମଧୁର ସ୍ମୃତି ଯୋଗୁଁ ସେ ଦୁହେଁ ହସି ହସି ସବୁ ଅପମାନ ସହି ନେଉଥାନ୍ତି ।

ଗୋପରେ କୃଷ୍ଣଙ୍କର ଜନ୍ମ ଉତ୍ସବ ଖୁବ୍ ଧୁମ୍ ଧାମ୍ ରେ ପାଳନ କରାଗଲା । ନନ୍ଦରାଜା, ଯଶୋଦା, ଗୋପାଳ ଓ ଗୋପୀମାନେ କୃଷ୍ଣ ଓ ବଳରାମଙ୍କୁ ଦେଖି ଖୁବ୍ ଆନନ୍ଦିତ ହେଉଥାନ୍ତି । କ୍ରମେ କୃଷ୍ଣ ବଳରାମ ଚନ୍ଦ୍ରକଳା ଭଳି ଗୋପରେ ବଢ଼ିବାକୁ ଲାଗିଲେ ।

ଏଣେ କଂସର ମନ ଦିନକୁ ଦିନ ବିଚଳିତ ହେବାକୁ ଲାଗିଲା । ଦିନେ ନାରଦ ମୁନିଙ୍କ ସହ ତା'ର ଭେଟ ହେଲା । ନାରଦ କଂସକୁ ତାହାର ଜନ୍ମବୃତ୍ତାନ୍ତ ଓ ମୃତ୍ୟୁ କିପରି ହେବ ଜଣାଇ ଦେଲେ । ନାରଦ ଯିବାପରେ କଂସ ନିଜର ବିଶ୍ୱସ୍ତ ରାକ୍ଷସ ରାକ୍ଷସୀ ମାନଙ୍କ ସହ ମନ୍ତ୍ରଣା କଲା । ପୂତନା, ତୃଣାବର୍ତ୍ତ, ଶକଟାସୁର, ବକାସୁର, ଅଘାସୁର ପ୍ରଭୃତିଙ୍କ ପରାମର୍ଶ ଅନୁସାରେ ଶତ୍ରୁକୁ ଶିଶୁକାଳରୁ ମାରିଦେବା ପାଇଁ ଯୋଜନା କରାଗଲା । ପୂତନା ରାକ୍ଷସୀଥିଲା ଖୁବ୍ ନିର୍ଦ୍ଦୟ ଓ କୌଶଳୀ । ଛୋଟ ଛୋଟ ଶିଶୁମାନଙ୍କୁ ନିଜର ବିଷବୋଳା ସ୍ତନ ଖୁଆଇ ସେ ମାରିଦେବା ପାଇଁ କଂସକୁ ପ୍ରତିଶ୍ରୁତି ଦେଲା । ଗୋପରେ କୃଷ୍ଣ ବଳରାମଙ୍କ ଆବିର୍ଭାବ ଓ ଉତ୍ସବ କଥା ମଥୁରା ସାରା ବ୍ୟାପି ଯାଇଥିଲା । ପୂତନା ଗୋପପୁରକୁ ଗଲା । ସେଠି ସେ ନିଜର ଭୟଙ୍କର ରାକ୍ଷସୀ ରୂପ ଛାଡ଼ି ମାୟା ବଳରେ ସୁନ୍ଦରୀ ମାଆଟିଏ ହୋଇଗଲା । କୃଷ୍ଣ ଜନ୍ମହେବାର ଏଗାରଦିନ ହୋଇଥାଏ । ତାଙ୍କର ଅପରୂପ ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଆକର୍ଷିତ କରୁଥାଏ । ଯିଏ ସୁଯୋଗ ପାଇଲା ସିଏ କୋଳ ନେଇ କୃଷ୍ଣଙ୍କୁ ଗେଲ୍ କରୁଥାନ୍ତି । ନନ୍ଦ ରାଜାଙ୍କ ଘରେ ସବୁବେଳେ ଗୋପାଙ୍ଗନାମାନେ ଭିଡ଼ ଜମାଇଥାନ୍ତି । ପୂତନା ମଧ୍ୟ ନନ୍ଦରାଣୀ ଯଶୋଦାଙ୍କ ଘରକୁ ଗଲା । କୃଷ୍ଣଙ୍କୁ ଦେଖିବା କ୍ଷଣି ତାଙ୍କ ରୂପରେ ତା' ଆଖି ଲାଖି ରହିଲା । ମନେ ମନେ ଭାବିଲା ସମସ୍ତଙ୍କ ଠାରୁ ଭିନ୍ନ ଦେଖାଯାଉଥିବା ଏହି ଶିଶୁଟି ନିଶ୍ଚୟ କଂସର ଶତ୍ରୁ, ତେଣୁ ଏହାକୁ ମାରି ପାରିଲେ କଂସରାଜା ଠାରୁ ପ୍ରଶଂସା ପାଇବ । ସେ ଯଶୋଦାଙ୍କୁ କହିଲା—"ରାଣୀ ମା' ! ମୋର ବହୁତ କ୍ଷୀର ପଡ଼ୁଛି । ମୋ ପୁଅ ଏକାକ ଏତେ କ୍ଷୀର ଖାଇ ପାରୁନାହିଁ । ତମ ପୁଅଟି ଦୁର୍ବଳ ଦିଶୁଛି । ତାକୁ ଥରଟିଏ ମୋ' କୋଳକୁ ଦିଅ । ମୁଁ କ୍ଷୀର ପିଆଇ ଦେବି । ସରଳା ଯଶୋଦା ଆଗ-ପଛ କିଛି ନ ଭାବି କୃଷ୍ଣଙ୍କୁ ପୂତନା ହାତରେ ଦେଲେ । ପୂତନା ଅନ୍ତୁଆଳକୁ ଯାଇ କୃଷ୍ଣଙ୍କୁ ବିଷବୋଳା ନିଜର କ୍ଷୀର ଖୁଆଇବାକୁ ଲାଗିଲା । ମାତ୍ର କ୍ଷଣକ ମଧ୍ୟରେ ତା'ର ସବୁ ଆନନ୍ଦ ସନ୍ତାପରେ ପରିବର୍ତ୍ତିତ ହେଲା । ଭଗବାନ କୃଷ୍ଣ ରାକ୍ଷସୀର ସ୍ତନରୁ କ୍ଷୀର ପିଇବା ଛଳରେ ତା'ର ପଞ୍ଚପ୍ରାଣ ଶୋଷଣ କଲେ । ପୂତନା ଛଟପଟ ହୋଇ ଗର୍ଜନ କଲା ଓ ପ୍ରାଣତ୍ୟାଗ କଲା । ଘଟଣା ସ୍ଥଳରେ ସମସ୍ତେ ଜମା ହୋଇ ଦେଖିଲେ ନିଜର ଅସଲ ରାକ୍ଷସୀ

ରୂପ ନେଇ ପୂତନା ମରିପଡ଼ିଛି ଓ ଶିଶୁକୃଷ୍ଣ ତା' ଛାତି ଉପରେ ବସି ହସୁଛନ୍ତି । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଯଶୋଦା କୃଷ୍ଣଙ୍କୁ କୋଳନେଇ ଉତ୍ସବରେ ଛାତିରେ ଜାକି ଧରିଲେ । କୃଷ୍ଣ ଯେ ଅଲୌକିକ ଶକ୍ତିଧର ସେକଥା କେହି ବୁଝିପାରି ନଥିଲେ ।

କଂସ ଯେତେବେଳେ ଶୁଣିଲା ଗୋଟାଏ ଶିଶୁ ଦ୍ୱାରା ପୂତନା ଗୋପପୁରରେ ମରିଗଲା ସେ ପ୍ରମାଦ ଗଣିଲା । ଏ ଶିଶୁଟି ନିଶ୍ଚୟ ତାହାର ଶତ୍ରୁ ଏକଥାରେ ସେ ନିଶ୍ଚିତ ହୋଇଗଲା । ଶିଶୁଟିକୁ ମାରିବା ନିମନ୍ତେ ସଙ୍କଳ୍ପବଦ୍ଧ ହେଲା । ସେ ପ୍ରଥମେ ଶକଟାସୁରକୁ ପଠାଇଲା । ଶକଟାସୁର ଗୋପରେ ପହଞ୍ଚି ନନ୍ଦଙ୍କ ଘରକୁ ଗଲା । ଦେଖିଲା କୃଷ୍ଣଙ୍କୁ ଯଶୋଦା ଗୋଟାଏ ଶଗଡ଼ ତଳେ ଶୁଆଇ ଦେଇଛନ୍ତି ଓ କାର୍ଯ୍ୟବ୍ୟସ୍ତ ଅଛନ୍ତି । ସେ ମାୟାରେ ଯାଇ ଶଗଡ଼ ଦେହରେ ରହିଲା । ଅସୁରର ଶକ୍ତି ବଳରେ ଶଗଡ଼ଟି କୃଷ୍ଣଙ୍କ ଉପରକୁ ଗଡ଼ି ଆସିଲା । ସାଧାରଣ ଶିଶୁ ହୋଇଥିଲେ, ଶଗଡ଼ ଚକ ତଳେ ଚେପି ହୋଇ ଯାଇଥାନ୍ତା । ମାତ୍ର କୃଷ୍ଣ ଯେ ସ୍ୱୟଂ ଭଗବାନ । ଶକଟାସୁରର ଉଦ୍ଦେଶ୍ୟ ତାଙ୍କୁ ଅଜଣା ନଥିଲା । ସେ ଗଡ଼ିଆସୁଥିବା ଶଗଡଟି ଦେଖି ଆନନ୍ଦରେ ଗୋଡ଼ ହାତ ହଲାଇ ଖେଳିବାକୁ ଲାଗିଲେ । କୃଷ୍ଣଙ୍କ କୋମଳ ଗୋଡ଼ଟି ଶଗଡ଼ ଚକରେ ବାଜିଯିବା କ୍ଷଣି ଶକଟାସୁରକୁ ବଜ୍ରଆଘାତ ଭଳି ଆଘାତ ହେଲା । ଶଗଡ଼ଟି ଓଲଟି ପଡ଼ି ସେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ତାସହେ ଅସୁରଟା ମଧ୍ୟ ଗର୍ଜନ କରି ମରିପଡ଼ିଲା । ଶବ୍ଦ ଶୁଣି ସମସ୍ତେ ଘରଆଡ଼ୁ ଘଟଣା ସ୍ଥଳକୁ ଦୌଡ଼ି ଆସିଲେ । ଯଶୋଦା ପୁଅକୁ କୋଳକୁ ନେଲେ । ତା'ର ମଙ୍ଗଳ ପାଇଁ ମନେ ମନେ ଦେବ ଦେବୀଙ୍କୁ ପ୍ରାର୍ଥନା କଲେ । ନନ୍ଦ ବାହାରକୁ ଯାଇଥାନ୍ତି । ସେ ଫେରିବା ପରେ ଘଟଣା ଶୁଣି ଚକିତ ହୋଇଗଲେ । ବିପଦ ପରେ ବିପଦ ମାଡ଼ିଆସୁଥିବା ଯୋଗୁଁ ସତର୍କ ରହିବା ପାଇଁ ସମସ୍ତଙ୍କୁ ସତର୍କ କରାଇ ଦେଲେ । ଥରେ ତୃଣାବର୍ତ୍ତ ନାମକ ରାକ୍ଷସ କୃଷ୍ଣଙ୍କୁ ଆକାଶକୁ ଉଡ଼ାଇ ନେଲା ମାତ୍ର କୃଷ୍ଣ ତାକୁ ମଧ୍ୟ ମାରିଦେଲେ ।

ଏହିଭଳି ନାନା ପ୍ରକାର ଆପଦ ବିପଦ ଭଞ୍ଜନ କରି ବାଳକୃଷ୍ଣ ବଢ଼ିବାକୁ ଲାଗିଲେ । ତାଙ୍କର ବାଲ୍ୟଲୀଳାର ପଟାନ୍ତର ନାହିଁ । ମଥାରେ ଘନକେଶ ଗୁଚ୍ଛ ଗୋଲ ଗୋଲ ହୋଇ ମୋଡ଼ିହୋଇ ଖୁବ୍ ସୁନ୍ଦର ଦେଖାଯାଉଥାଏ । ମା' ଯଶୋଦା ଲମ୍ବାକେଶ ଗୁଚ୍ଛକୁ ଏକାଠି କରି ଗୋଟାଏ ଚୂଳ ବାନ୍ଧି ଦେଇଥାନ୍ତି । ସେଥିରେ ମୟୂର ଚନ୍ଦ୍ରକାଟିଏ ଖୋସା ହୋଇଥାଏ । ପାଦରେ ନୂପୁର, ଗଳାରେ ନାନା ପ୍ରକାର ରତ୍ନ ଅଳଙ୍କାର, ବାଜୁବନ୍ଧ, ହିରାକଙ୍କଣ, ଅଣ୍ଟାରେ ଅଣ୍ଟା ସୂତା କାନରେ ଶ୍ୱେତ ଶ୍ୱେତ କୁଣ୍ଡଳ ମଣ୍ଡି ହୋଇ ବାଳକୃଷ୍ଣଙ୍କ ମଧୁର ମୋହନ ମୂର୍ତ୍ତି ସମସ୍ତଙ୍କୁ ମୁଗ୍‌ଧ କରୁଥାଏ । ସେ ଲାବଣ୍ୟ ପ୍ରତିମାକୁ ଶତ୍ରୁ ହେଲେ ମଧ୍ୟ ଘଡ଼ିଏ ନଚାହିଁ ରହିପାରିବେନାହିଁ । କୃଷ୍ଣଙ୍କ ଦଶେଟି କଥା, ମୁହଁରେ ମିଠାହସ, ଚଳ ଚଂଚଳ ବିଶାଳ ନେତ୍ରର ଚାହାଣୀ, ହାତୀ ଭଳି ଟୁଲୁବୁଲୁ, ଶରୀର ଭଙ୍ଗିମା ଆଉ ଅଧରର ରଙ୍ଗୀମା ଯୋଗୁଁ କେବଳ ନନ୍ଦ ଆଉ ଯଶୋଦା କାହିଁକି ସମସ୍ତ

ଗୋପପୁରର ଗୋପାଳ, ଗୋପୀ ଆବାଳ ବୃଦ୍ଧ ବନିତାଙ୍କର ସେ ହୋଇଉଠିଲେ ପ୍ରିୟ କୃଷ୍ଣ, ଆଦରର କହ୍ନେଇ । ବଂଶୀ ବଜାଇବା ପାଇଁ ବାଲ୍ୟକାଳରୁ ତାଙ୍କର ଆଗ୍ରହ । କେଣ୍ଡେ ସବୁବେଳେ ବଂଶୀଟିଏ ଅଣ୍ଟାରେ ଖୋସିଥାନ୍ତି ସେ । ସେ ବଂଶୀରେ ଏତେ ସୁନ୍ଦର ମୂର୍ଚ୍ଛନା ଯିଏ ଶୁଣେ—ମଣିଷ, ପଶୁ, ପକ୍ଷୀ, ନଦୀ, ଝରଣା, ବୃକ୍ଷଲତା, କୀଟ, ପତଙ୍ଗ ସମସ୍ତେ ମନ୍ତ୍ରମୁଗ୍ଧ ହୋଇଯାଆନ୍ତି । କୃଷ୍ଣ ଥିଲେ ଲବଣୀ ପ୍ରିୟ । ମାତା ଯଶୋଦା ଅଧାମ, ଘର ପୁଲି, ଗୋଟିତା, କ୍ଷୀର, ସର ପ୍ରଭୃତି କୃଷ୍ଣଙ୍କୁ ଖୁଆଇବା ପାଇଁ ଚେଷ୍ଟା କରନ୍ତି ମାତ୍ର କୃଷ୍ଣ ଲବଣୀ ଖାଇବା ନିମନ୍ତେ ହଠ ଲଗାନ୍ତି । ଗୋପୀମାନେ ଲବଣୀ ନଦେଲେ ସେମାନଙ୍କ ଶାଢ଼ୀ ଅଂଚଳ ଧରି ଅଟକ କରନ୍ତି । କ୍ରମେ ବାଳକୃଷ୍ଣ ବଡ଼ ହେଲେ । ଗୋପାଳ ପିଲାମାନଙ୍କ ସହ ଧୂଳି ଖେଳଠାରୁ ଆରମ୍ଭ କରି ସବୁପ୍ରକାର ଖେଳରେ ମାତିଗଲେ । ଏଣେ ଲବଣୀ ଖାଇବା ଓ ସମସ୍ତଙ୍କୁ ଖୁଆଇବାରେ ତାଙ୍କର ଶ୍ରଦ୍ଧା ଖୁବ୍ ବଢ଼ି ଯାଇଥାଏ । ଲବଣୀ ଯଥେଷ୍ଟ ପରିମାଣରେ ସଂଗ୍ରହ ପାଇଁ ସେ ନିଜ ଘରୁ କେବଳ ନୁହେଁ ଗୋପାଳ ପୁଅମାନଙ୍କ ସହ ଏକାଠି ହୋଇ ସେମାନଙ୍କ ଘରୁ ମଧ୍ୟ ଚୋରି କଲେ । ସମସ୍ତେ ତାଙ୍କୁ ଏଣିକି 'ଲବଣୀ ଚୋର' ବୋଲି ଡାକିଲେ । ଏଇ ଚୋରି ପାଇଁ ସେ ମା' ଯଶୋଦାଙ୍କ ଠାରୁ କାନମୋଡ଼ା, ଚମୁଲ ଗୁଣ୍ଡର ପାହାର, ଡେଙ୍ଗି ବନ୍ଧା ଇତ୍ୟାଦି ନାନା ଦଣ୍ଡ ମଧ୍ୟ ପାଉଥିଲେ । ମାତ୍ର ମାଆଙ୍କର ଏ କଡ଼ା ଶାସନର ପ୍ରଭାବ ତାଙ୍କ ଉପରେ ଜମା ପଡ଼ୁ ନଥିଲା । ଥରେ ଯଶୋଦା କୃଷ୍ଣଙ୍କ କାନ ମୋଡ଼ିଦେଇ କହିଲେ—"କାହ୍ନା ! ତୁ ମାଟି ଖାଇଲୁ କାହିଁକି ? କୃଷ୍ଣ କହିଲେ—"ନା...ନା.. ମା' ମୁଁ ତ ଜମା ମାଟି ଖାଇନି । ମତେ ଗାଳିଦଣ୍ଡ ଦେଉଛ କାହିଁକି ?" ଯଶୋଦା କହିଲେ—ମିଛ କହୁଛୁ ! ତୁ ମାଟି ନିଶ୍ଚୟ ଖାଇଛୁ । କାହିଁ ପାଟିଟାକୁ ଆଁ କରି ଦେଖାଇ ତୋ ହିଡିଆ ଦେଖ କଣ ଦେଖିବ ।" କୃଷ୍ଣ ହସି ହସି ଆଁ କରି ପାଟି ଦେଖାଇଲେ । ମାତ୍ର ଏ କ'ଣ ? କୃଷ୍ଣଙ୍କ ଏତିକି ଛୋଟ ପାଟି ଭିତରେ ସପ୍ତ ବ୍ରହ୍ମାଣ୍ଡର ରୂପ, ସୂର୍ଯ୍ୟ, ନକ୍ଷତ୍ର, ଚନ୍ଦ୍ର, ନଦୀ, ଜୀବ, ଜଡ଼ ସାଗର ସବୁର ଦୃଶ୍ୟ ଦେଖାଗଲା । ମା' ଯଶୋଦାଙ୍କ ମୁଣ୍ଡ ଘୂରିଗଲା । ଇଏ କିଏ ? ଏ କ'ଣ ମୋର ଆଦରର କୃଷ୍ଣ ! ନା ସ୍ୱୟଂ ପରଂବ୍ରହ୍ମ ଭଗବାନ ବିଷ୍ଣୁ ? ନା ନା ହୋଇପାରନ୍ତି ସେ ଭଗବାନ । କିନ୍ତୁ ମା' ଯଶୋଦାଙ୍କର ସ୍ନେହ ଅଟଳ ମୋହନ । ସ୍ନେହ କଳାମାଣିକ, ଆଦରରେ କୋଳେଇ ନେଲେ ଯଶୋଦା ମାଆଙ୍କ ଗଳାଧରି ଜଡ଼ି ଗଲେ କୃଷ୍ଣ; ମାଆଙ୍କ ଛାତିରେ । ଅଜସ୍ର ଚୁମ୍ବନ ଢାଳିଦେଲେ ମା' ।

କୃଷ୍ଣ ଯେତିକି ଯେତିକି ବଡ ହେଲେ ସେତିକି ତାଙ୍କର ଦୁଷ୍ଟାମୀ ବଢ଼ିଲା । ସାଧାରଣ ବାଳକ ଭଳି ସେ ହସ, କାନ୍ଦ, ଅଟକ ପରି ଆଉ ଲୀଳା ପ୍ରଦର୍ଶନ କରୁଥିଲେ ମଧ୍ୟ ତାଙ୍କର ଅନେକ କାର୍ଯ୍ୟ ଥିଲା ଅସାଧାରଣ, ଅଲୌକିକ ! ତାଙ୍କର ତେଜୋମୟ ରୂପ ବୈଭବ, ଅପରିମିତ ବଳ ଆଉ ଦିବ୍ୟ ଲୀଳା ସାରା ଗୋପପୁରକୁ ଆଚ୍ଛନ୍ନ କରି ରଖିଥାଏ । ଏତେ ଦୁଷ୍ଟାମି ସତ୍ତ୍ୱେ କ୍ଷଣେ ମାତ୍ର କୃଷ୍ଣଙ୍କ ସାନ୍ନିଧ୍ୟ ନପାଇଲେ ସାରା ଗୋପପୁର ପାଗଳ ହୋଇ ଉଠୁଥିଲା । ସେ ଥିଲେ ସମସ୍ତଙ୍କର ଆଉ ସମସ୍ତେ ଥିଲେ କୃଷ୍ଣଙ୍କର ।

କୃଷ୍ଣଙ୍କ ଲୀଳାର ଅନ୍ତ ନାହିଁ । ଦିନେ ଯଶୋଦାଙ୍କ ପାଖରେ ଗୋପାଙ୍ଗନାମାନେ ଆସି ଫେରାଦ ହେଲେ । କୃଷ୍ଣଙ୍କ ନାମରେ ଅଜସ୍ର ଅଭିଯୋଗ । କାହାଘରେ କୃଷ୍ଣ ଦହି ଶିକାରୁ ଲହଣୀ ସର ସବୁ ଚୋରି କରିଛନ୍ତି ତ କାହାର ବାଛୁରୀ ସବା ଫିଟାଇ ଗାଈର କ୍ଷୀର ପିଆଇ ଦେଇଛନ୍ତି । କେହି ଯମୁନାକୁ ପାଣି ଆଣିବାକୁ ଯାଉଥିବାବେଳେ କୃଷ୍ଣ ଢେଲା ମାରି ମାଠିଆ ଭାଙ୍ଗି ଦେଲେଣି ତ କାହାପୁଅକୁ ମାରଧର କଲେଣି । ଏମିତି କେତେ କ'ଣ । ସମସ୍ତଙ୍କ ଆକୁଳ ଗୁହାରି—"ନନ୍ଦରାଣୀ ! ତୁମ ଚେଙ୍ଗ୍ରା ପୁଅକୁ ସମ୍ଭାଳ । ସେ କ'ଣ ଆମକୁ ଆଉ ଗୋପରେ ରଖାଇ ଦେବ ନାହିଁକି ?" ଯଶୋଦା କ'ଣ କରିବେ ? ସମସ୍ତଙ୍କୁ କଥା ଦେଲେ ଏଥର ସେ କୃଷ୍ଣଙ୍କୁ ଜବତ୍ କରିବେ । ବାନ୍ଧି ରଖିବେ । ଗୋପୀମାନେ ଫେରିଯିବା ପରେ ଯଶୋଦା କୃଷ୍ଣଙ୍କୁ ଗାଳି ଦେଲେ । ତାଙ୍କ ଘର ଆଗରେ ଦୁଇଟି ଅର୍ଜୁନ ଗଛ ଲଟା ଲଟି ହୋଇ ରହୁଥାଏ । ଏହାକୁ ଲୋକେ ଯାମଳାର୍ଜ୍ଜୁନ ଗଛ ବୋଲି କହୁଥାନ୍ତି । ଯଶୋଦା ପ୍ରଥମେ ଦଉଡ଼ିରେ ବାନ୍ଧିଦେଲେ କୃଷ୍ଣଙ୍କ ଅଣ୍ଟାକୁ । ଗୋଟାଏ ଡମ୍ବରୁ ଆକୃତିର ବଡ଼ କାଠ ଅଣ୍ଖଳକୁ ଦଉଡ଼ିରେ ବାନ୍ଧି ଗଛ ଆରପଟେ ଖସିଦେଲେ । ଏଥର କୃଷ୍ଣ ଅଳ୍ପ ସ୍ଥାନରେ ଏପଟ ସେପଟ ଯିବା ହୋଇପାରିବେ, ବାହାରକୁ ଯାଇପାରିବେ ନାହିଁ ବୋଲି ଯଶୋଦା ମନେ ମନେ ନିଶ୍ଚିନ୍ତ ହେଲେ ।

ଯଶୋଦା ଚାଲିଯିବାପରେ କୃଷ୍ଣ ଦୁଇ ଗଛ ଫାଙ୍କ ମଧ୍ୟରେ ଗୁରୁଣ୍ଡି ଗୁରୁଣ୍ଡି ଗଲେ । ଫଳତଃ କାଠ ଅଣ୍ଖଳଟି ବାଜି ମଡ଼ ମଡ଼ ଶବ୍ଦ କରି ଦୁଇଟି ଯାକ ଗଛ ଏକାବେଳେକେ ଉପୁଡ଼ି ପଡ଼ିଲେ । ଗଛ ଦୁଇଟି ଥିଲେ ଦୁଇ ଜଣ ଅଭିଶାପ ପାଇଥିବା ଗନ୍ଧର୍ବ । ସେମାନେ କୃଷ୍ଣଙ୍କ ସ୍ପର୍ଶରେ ଆସି ନିଜ ରୂପ ଫେରି ପାଇଲେ । କୃଷ୍ଣଙ୍କୁ ପ୍ରଣାମ ଜଣାଇ ଆକାଶ ମାର୍ଗକୁ ଉଡ଼ିଗଲେ । ଗଛ ଭାଙ୍ଗିବା ଶବ୍ଦରେ ସମସ୍ତେ ଘଟଣା ସ୍ଥଳକୁ ଦୌଡ଼ି ଆସିଲେ । ମେଘମାଳା ଭିତରେ ଚନ୍ଦ୍ରମା ହସିଲାଭଳି କୃଷ୍ଣ ହସୁଥିବା ଦେଖି ଚକିତ ହେଲେ । ଗୋପୀମାନେ ଭାବିଲେ—"ଆମେ କୃଷ୍ଣଙ୍କ ଦୁଷ୍ଟାମି କଥା ନନ୍ଦରାଣୀଙ୍କୁ ଅଭିଯୋଗ କଲରୁ ସିନା କୃଷ୍ଣଙ୍କୁ ବନ୍ଧାଗଲା । ଭାଗ୍ୟ ଭଲ । କୃଷ୍ଣଉପରେ ଗଛ ପଡ଼ିନାହିଁ ନଚେତ୍ କଥା ସରିଥାନ୍ତା ।" ସେମାନେ କୃଷ୍ଣଙ୍କୁ ବନ୍ଧନମୁକ୍ତ କଲେ ଓ ଯଶୋଦାଙ୍କୁ କୋହଳ ହୋଇ କହିଲେ କାହ୍ନା ଯାହା କରିବ କରୁପଛେ ଆମେ ଆଉ ଅଭିଯୋଗ କରିବୁ ନାହିଁ କି ତୁମେ ତାକୁ ବାନ୍ଧିବ ନାହିଁ । ଏଭଳି କୃଷ୍ଣଙ୍କ ମଧୁର ବାଳଲୀଳା ଚାଲିଥାଏ ।

କ୍ରମେ କୃଷ୍ଣ ଓ ବଳରାମ ବଡ଼ ହୋଇଗଲେ । ଗୋପାଳ ବାଳକମାନଙ୍କ ସହିତ ସାଙ୍ଗ ହୋଇ ସେମାନେ ବାଛୁରୀ ଚରାଇବା, ନାନାପ୍ରକାର ଖେଳ ଖେଳିବା, ନଦୀ ପହଁରିବା ଇତ୍ୟାଦିରେ ମାତିଥାନ୍ତି । ଗୋକୁଳ ଗ୍ରାମର ଅଦୂରରେ ଥାଏ ଗୋବର୍ଦ୍ଧନ ପର୍ବତ । ଦୂର ଦିଗରେ ଘନ ଜଙ୍ଗଲ ଯମୁନା ନଦୀ କୁଳୁ କୁଳୁ ନାଦରେ ବହି ଯାଉଥାଏ । ଗୋପପୁରରେ

କ୍ରମଶଃ ଜନସଂଖ୍ୟା ବୃଦ୍ଧି ତଥା ଗୋରୁଗାଈ ମାନଙ୍କ ପାଇଁ ଚାରଣ ଭୂମି ଅଭାବ ହେବାରୁ ଏକ ନୂତନ ସ୍ଥାନରେ ବସତି ସ୍ଥାପନର ଆବଶ୍ୟକତା ଥିଲା । ସୁତରାଂ ଗିରିଗୋବର୍ଦ୍ଧନର ନିକଟବର୍ତ୍ତି ସବୁଜ ବର୍ଣ୍ଣ ସମତଳ ଅଞ୍ଚଳ ବୃନ୍ଦାବନରେ ନୂତନ ବସତି ସ୍ଥାପନ ପାଇଁ କୃଷ୍ଣ ବଳରାମ ପ୍ରସ୍ତାବ ଦେଲେ । ବହୁ ଆଲୋଚନା ପରେ ନନ୍ଦରାଜା ନୂତନ ସ୍ଥାନରେ ବସତି ସ୍ଥାପନ ପାଇଁ ଆଦେଶ ଦେଲେ । ଯଥା ସମୟରେ ଗୋକୁଳବାସୀ ବୃନ୍ଦାବନରେ ଯାଇ ବସବାସ ଆରମ୍ଭ କଲେ । ନୂତନ ସ୍ଥାନର ଚମତ୍କାର ପରିବେଶ ସମସ୍ତଙ୍କୁ ମୁଗ୍ଧ କଲା । ମାତ୍ର କିଛିଦିନ ପରେ ଦେଖାଗଲା ବୃନ୍ଦାବନରେ ଗାଈଗୋରୁ ଗୁଡ଼ିକ କ୍ରମଶଃ ଦୁର୍ବଳ ହୋଇ ଯାଉଛନ୍ତି । ଏହାର କାରଣ ଅନୁସନ୍ଧାନ କରିବାରୁ ଜଣାଗଲା ଯେ ବୃନ୍ଦାବନର ଏକ ନିଘଞ୍ଚ ଜଙ୍ଗଲ ସ୍ଥାନରେ ବୃଷରୂପୀ ରାକ୍ଷସଟିଏ ଅଛି । ସେ ବୃକ୍ଷ ବିଷଫଳରେ ପରିପୂର୍ଣ୍ଣ । ବୃକ୍ଷ ମୂଳ-ପଟେ ବଡ ବଡ ଘାସ ସବୁ ରହିଛି । ସେ ଘାସଗୁଡ଼ିକ ମଧ୍ୟ ରାକ୍ଷସର ଅନୁଚର । ସେମାନେ ବିଷବାୟୁ ତ୍ୟାଗ କରି ବୃନ୍ଦାବନର ପ୍ରାଣୀମାନଙ୍କୁ ଅସୁସ୍ଥ କରି ପକାଉଛନ୍ତି । କୃଷ୍ଣ ବଳରାମ ସଙ୍ଗେ ସଙ୍ଗେ ବଳୁଆ ଯୁବକମାନଙ୍କୁ ନେଇ ସେ ସ୍ଥାନକୁ ଗଲେ । ବୃଷ ରାକ୍ଷସକୁ ଦେଖି ହାଣି ମାରି ତାକୁ ପଦା କରିଦେଲେ । ଅପେ ଅପେ ସେ ଗଛ ଓ ଘାସ ଗୁଡ଼ିକ ଜଳି ଭସ୍ମ ହୋଇଗଲା ।

ଯଶୋଦାଙ୍କ ଭାଇ କୁମ୍ଭକ ଥିଲେ ମିଥିଳା ରାଜ୍ୟର ରାଜା । ଥରେ କୃଷ୍ଣ ମାମୁଁ ଘରକୁ ବୁଲିଯାଇ ଶୁଣିଲେ ଯେ ସେ ରାଜ୍ୟରେ ସାତଟି ବିରାଟକାୟ ଷଣ୍ଢ ଅଛନ୍ତି । ସେମାନେ ଏତେ ଉଦ୍ଧତ ହୋଇ ପଡ଼ିଛନ୍ତି ଯେ ନିଜର ଶିଙ୍ଗରେ ଭୁଷି ଲୋକମାନଙ୍କୁ ମାରି ଦେଉଛନ୍ତି ଏବଂ ବଗିଚା, ଫସଲ ଇତ୍ୟାଦି ଉଜାଡ଼ି ଛାରଖାର କରି ଦେଉଛନ୍ତି । ଗୋ ବଧ ହେବା ଭୟରେ ସେମାନଙ୍କୁ ମାରି ହେଉନାହିଁ । ତା ଛଡା ମାରିବାକୁ ଯଦ କେହୁ ଚେଷ୍ଟାକରେ ସେ ଆପେ ମରିବାଟା ଧି ମାର ହେଉଛି । କୃଷ୍ଣ ଏ ସବୁ ଷଣ୍ଢ ଗୁଡ଼ିକ ମାୟାବୀ ରାକ୍ଷସ ବୋଲି ଜାଣି-ଗଲେ । ରାଜା କୁମ୍ଭକଙ୍କ ଉଦ୍ୟାନ ଧ୍ୱଂସ କରୁଥିବା ସମୟରେ କୃଷ୍ଣ ସେ ଷଣ୍ଢଗୁଡ଼ିକୁ ଆକ୍ରମଣ କଲେ । କୃଷ୍ଣଙ୍କଠାରୁ ଆଘାତ ପାଇ ଷଣ୍ଢଗୁଡ଼ିକ ପ୍ରାଣ ଭୟରେ ଅଦୃଶ୍ୟ ହୋଇଗଲେ । ସେହିଦିନ ଠାରୁ ମିଥିଳାରେ ଆଉ ଷଣ୍ଢମାନଙ୍କର ପ୍ରକୋପ ଦେଖାଗଲା ନାହିଁ । ସମସ୍ତେ କୃଷ୍ଣଙ୍କୁ ଧନ୍ୟ ଧନ୍ୟ କହିଲେ ।

ବୃନ୍ଦାବନରେ ଯମୁନା ନଦୀ କୂଳରେ ଥାଏ ଏକ ହ୍ରଦ । ଏହାକୁ କାଳିନ୍ଦୀ ହ୍ରଦ ବୋଲି କୁହାଯାଉଥିଲା । ଥରେ କୃଷ୍ଣ, ଗୋପାଳ ସ୍ୱଅମାନଙ୍କ ସହ ବୁଲିଯାଇଥିବା ବେଳେ ଏହି ହ୍ରଦକୂଳରେ ପହଞ୍ଚିଲେ । ଆଶ୍ଚର୍ଯ୍ୟର କଥା ହ୍ରଦ ଚାରିଦଗରେ ବୃକ୍ଷଲତା, ଘାସ ସବୁର ଚିହ୍ନ ବର୍ଣ୍ଣ ନଥାଏ । କୂଳରେ ଥିବା କଦମ୍ବ ଗଛରେ ପକ୍ଷୀଟିଏ ମଧ୍ୟ ନଥାଏ । ସେ ହ୍ରଦରେ ରହୁଥାଏ ଏକ ବିରାଟକାୟ କଳାନାଗ । ତା'ର ବିଷ ଜ୍ୱାଳାରେ ଏଭଳି ହୋଇଥାଏ । ହ୍ରଦର ଜଳ ମଧ୍ୟ କଳା ଓ ବିଷାକ୍ତ ହୋଇଥାଏ । କୃଷ୍ଣ ସମସ୍ତଙ୍କ ବାରଣ ସତ୍ତ୍ୱେ ହ୍ରଦ ଭିତରକୁ ଡେଇଁ ପଡ଼ିଲେ । ଏ କଥା ଜାଣିବା ପରେ ବୃନ୍ଦାବନବାସୀମାନେ ଭୟରେ ଥରୁଥାନ୍ତି ।

ଯଶୋଦା ଓ ନନ୍ଦଙ୍କ ଅବସ୍ଥା କହିଲେ ନସରେ । ସମସ୍ତେ ଆସି ହ୍ରଦ କୂଳରେ ଜମା ହେଲେ । ବଳରାମ ସମସ୍ତଙ୍କୁ ଧୈର୍ଯ୍ୟ ଦେଉଥାନ୍ତି । କ୍ରମେ ହ୍ରଦର ଜଳରେ ଭୀଷଣ ଆଲୋଡନ ଦେଖାଗଲା । କୃଷ୍ଣ ଓ କାଳୀୟନାଗ ମଧ୍ୟରେ ପ୍ରବଳ ଯୁଦ୍ଧ ଚାଲିଥାଏ । ଶେଷରେ ଦେଖାଗଲା କୃଷ୍ଣ କାଳୀୟ ପାଞ୍ଚମୁଣ୍ଡିଆ ଫେଣ ଉପରେ ନଟବର ସାଜି ନୃତ୍ୟ କରୁଛନ୍ତି ଏବଂ ନାଗର ମୁହଁରୁ ରକ୍ତବାନ୍ତି ହେଉଛି । ନାଗ ଓ ତା ପରିବାର ଲୋକେ ହେ କୃଷ୍ଣ ଶରଣ ଗଲୁ, କ୍ଷମା-କର କ୍ଷମାକର ବୋଲି ଚିତ୍କାର କରୁଥାନ୍ତି । ଦୟାସାଗର କୃଷ୍ଣ କାଳୀୟକୁ କ୍ଷମାଦେଲେ ଏବଂ ନିର୍ଦ୍ଦେଶ ଦେଲେ—"କାଳୀୟ । ତମ ଭୟରେ ଏ ଅଞ୍ଚଳକୁ କେହି ଆସି ପାରୁ ନାହାନ୍ତି । ଯମୁନା ନଦୀ ସହ ଏ ହ୍ରଦଟି ସଂଲଗ୍ନ ଥିବାରୁ ତୁମ ଦ୍ୱାରା ଏ ହ୍ରଦ ଓ ଯମୁନା ନଦୀର ଜଳ ମଧ୍ୟ ବିଷାକ୍ତ ହେଉଛି । ତୁମେ ତୁରନ୍ତ ସମୁଦ୍ରରେ ଯାଇ ବସବାସ କର ।" କାଳୀୟ କୃଷ୍ଣଙ୍କୁ ପ୍ରଣାମ ଜଣାଇ ବୃନ୍ଦାବନ ଛାଡି ଚାଲିଗଲା । କୃଷ୍ଣଙ୍କ ଅଲୌକିକ ସାହସ ଦେଖି ସମସ୍ତେ ଧନ୍ୟ ଧନ୍ୟ କହୁଥାନ୍ତି ।

କିଶୋର କୃଷ୍ଣଙ୍କର ଲୀଳା ଏଭଳି ନାନା ବୈଚିତ୍ର୍ୟମୟ ଘଟଣା ଦେଇ ପ୍ରକଟିତ ହେଉଥାଏ । ଗୋପୀମାନେ ବାସ୍ତବ ତାଙ୍କୁ କୃଷ୍ଣଙ୍କୁ ପ୍ରାଣ ଠାରୁ ଭଲ ପାଉଥିଲେ । କୃଷ୍ଣଙ୍କ କିଶୋର ରୂପ ସେମାନଙ୍କୁ ଅଧିକ ଆକୃଷ୍ଟ କଲା । କୃଷ୍ଣଙ୍କ ସୁମଧୁର ବଂଶୀ ତାନରେ ବିଭୋର ହୋଇ ସେମାନେ ସ୍ଥାନକାଳ ପାତ୍ର ଭୁଲି କୃଷ୍ଣଙ୍କ ସହ ନାନା କେଳିକୌତୁକରେ ମାତି ରହୁଥିଲେ । ସମସ୍ତେ କୃଷ୍ଣ ପ୍ରେମରେ ନିଜକୁ ମଜ୍ଜାଇ ଦେଉଥିଲେ । ଗୋପୀ ମାନଙ୍କ ମଧ୍ୟରେ ସବୁଠାରୁ ସୁନ୍ଦରୀ ଥିଲେ ରାଧା । ରାଧା ଥିଲେ ଲକ୍ଷ୍ମୀଙ୍କ ଅଂଶ । ସେ ଚନ୍ଦ୍ରସେଣାଙ୍କ ପତ୍ନୀ ଥିଲେ ସତ ହେଲେ ତାଙ୍କର ମନପ୍ରାଣ ସବୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ଦେଇଥିଲେ । କୃଷ୍ଣଙ୍କ ଠାରୁ ସେ ବୟସରେ ବଡ଼ଥିଲେ ଏବଂ ସମ୍ପର୍କରେ ମାଇଁ ମାତ୍ର କୃଷ୍ଣ ପ୍ରେମରେ ସେ ପାଗଳିନୀ ହୋଇ ଉଠୁଥିଲେ । ରାଧାଙ୍କ ନିର୍ମଳ ଭକ୍ତିରେ କୃଷ୍ଣ ମୁଗ୍ଧ ହୋଇ ଯାଇଥିଲେ । ଅନ୍ୟ ଗୋପୀମାନଙ୍କ ସହ ରାଧା କୃଷ୍ଣଙ୍କ ବିଭିନ୍ନ କ୍ରୀଡ଼ା, ରାସ ପ୍ରଭୃତିର ଅନ୍ତ ନଥିଲା । ମାନ ଅଭିମାନ ଏବଂ ନାନା ଉପାୟରେ ମାନଭଂଜନ ହିଁ ଥିଲା ରାଧାକୃଷ୍ଣଙ୍କର ଅପୂର୍ବ ଲୀଳା । ରାଧାଙ୍କ ସଖୀ ଓ କୃଷ୍ଣଙ୍କ ସଖା ମାନେ ଏହି ଲୀଳାକୁ ଜୀବନ୍ତ କରି ଗଢ଼ି ତୋଳୁଥିଲେ । ସେ ରାଧାକୃଷ୍ଣ ଲୀଳାମୃତର ତୁଳନା ନାହିଁ ।

କିଶୋର କୃଷ୍ଣ, ବଳରାମ, ସୁଦାମା ପ୍ରଭୃତି ଖେଳୁଥିବା ସମୟରେ କୃଷ୍ଣ ଗୋପାଳ ନାମକ ଏକ ବ୍ରାହ୍ମଣ ବାଳକକୁ ଧୂଳି ଫିଙ୍ଗି ମାଡ଼ ଦେଲେ । ସେ ଫେରି ଯାଇ ତା ବାପାଙ୍କୁ ଡାକି ଆଣିଲା । ବ୍ରାହ୍ମଣ ଥିଲା ଜନ୍ମରୁ ଅନ୍ଧ । ସେ କୃଷ୍ଣଙ୍କୁ ଗାଳି ଦେଇ ନିଜ ପୁଅକୁ କାହିଁକି ଧୂଳି ଫିଙ୍ଗିଲେ ବୋଲି ପଚାରିଲା । କୃଷ୍ଣ କହିଲେ—"ଚାହିଁ ଦେଖ । ତୁମ ପୁଅ ମୋତେ ଧୂଳି ଫିଙ୍ଗିଛି ନା ମୁଁ ତାକୁ ଧୂଳି ଫିଙ୍ଗିଛି ?" ବାସ୍ ! ଏତିକିରେ ଅନ୍ଧ ବ୍ରାହ୍ମଣ ଚକ୍ଷୁ ଫେରି ପାଇଗଲେ । କୃଷ୍ଣଙ୍କୁ ଭଗବାନଙ୍କ ଅବତାର ବୋଲି ଚିହ୍ନି ପାରି ସେ ସ୍ତୁତି କରିବାକୁ ଲାଗିଲେ । ଏଭଳି ଦୟା ଓ କରୁଣାର ମୂର୍ତ୍ତିମନ୍ତ ସ୍ୱରୂପ ଭଗବାନ କୃଷ୍ଣ କେତେ

ସେ ଅଲୌକିକ କାର୍ଯ୍ୟ କରିଚାଲେ ତାହା କଳନା କରାଯାଇ ନପାରେ । କୃଷ୍ଣଙ୍କ ଭଳି ବଳରାମ ମଧ୍ୟ କେତେକ ରାକ୍ଷସଙ୍କୁ ବଧ କରିଥିଲେ । ଗୋପାଳ ବାଳକମାନଙ୍କ ସହିତ ଖେଳୁଥିବା ସମୟରେ ଥରେ ଗୋଟାଏ ଅସୁର ବାଳକ ରୂପ ଧରି ଖେଳରେ ମିଶିଗଲା । ଖେଳର ସର୍ତ୍ତ ଥିଲା ହାରିବା ପିଲା ଜିତିବା ପିଲାକୁ କାନ୍ଧରେ ବସାଇ କିଛି ସମୟ ବୁଲାଇ ଆଣିବ । ଖେଳରେ ବଳରାମ ଜିତିବାରୁ ବାଳକରୂପୀ ରାକ୍ଷସଟି ବଳରାମଙ୍କୁ କାନ୍ଧରେ ଧରି ଦୌଡ଼ିଲା । ଦୌଡ଼ୁ ଦୌଡ଼ୁ ସେ ନିଜରୂପ ଧରିନେଲା । ଏକଥା ଜାଣି ବଳରାମ ବଜ୍ର ଭଳି ମୁଥମାରି ତାହାକୁ ହତ୍ୟା କଲେ । ସେହିଭଳି ଆଉ ଥରେ ଗଧରୂପ ଧରି ଆସିଥିବା ଅସୁରଟିକୁ ବଧ କଲେ ।

ଗୋକୁଳର ଲୋକେ ପ୍ରତିବର୍ଷ ଇନ୍ଦ୍ରପୂଜା କରୁଥାନ୍ତି । ସେ କାଳରେ ଲୋକମାନଙ୍କ ମଧ୍ୟରେ ଦେବତା, ଉପଦେବତା, ଭୂତ ପ୍ରେତ ପୂଜା ଆଦି ପ୍ରଚଳିତ ଥିଲା । ପୂଜା ଦ୍ୱାରା ଏମାନଙ୍କୁ ସନ୍ତୁଷ୍ଟ କରି ନିଜର ଆଶା ଅନୁସାରେ ଫଳ ପାଇବା ନିମନ୍ତେ ଏଭଳି କରାଯାଉଥିଲା । ମାତ୍ର ଶ୍ରୀକୃଷ୍ଣ ଏଭଳି ପୂଜା ଓ ଅସ୍ଥାୟୀ ଫଳ ଲାଭକୁ ପସନ୍ଦ କରୁନଥିଲେ । ଗୋପାଳମାନେ ଗୋଧନ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଗୋ ସମ୍ପଦ ସୁରକ୍ଷା ପାଇଁ ପ୍ରକୃତି ହିଁ ଏକମାତ୍ର ବରଦାନ ଥିଲା । ସୁତରାଂ ଶ୍ରୀକୃଷ୍ଣ ପ୍ରକୃତି ମାଆର ପୂଜା ପାଇଁ ଲୋକଙ୍କୁ ପ୍ରସ୍ତାବିତ କଲେ । ବାସନା ପୂରଣ ପାଇଁ ନାନା ଦେବ ଦେବୀଙ୍କୁ ପୂଜା ନକରି ସକଳ ଶକ୍ତିର ଉତ୍ସ ପରଂବ୍ରହ୍ମଙ୍କୁ ପୂଜା କରିବା ପାଇଁ ସେ ପରାମର୍ଶ ଦେଲେ । ଗୋ ସମ୍ପଦର ବର୍ଦ୍ଧନ ପାଇଁ ସେ ଗୋବର୍ଦ୍ଧନ ପୂଜା ଚଳାଇଲେ । ବୃନ୍ଦାବନବାସୀ ଗୋବର୍ଦ୍ଧନ ପର୍ବତ ନିକଟରେ ଜମାହୋଇ ପର୍ବତର ପୂଜା ଅର୍ଚ୍ଚନା ଦ୍ୱାରା ପରଂବ୍ରହ୍ମଙ୍କୁ ଆରାଧନା କଲେ । ଦେବରାଜ ଇନ୍ଦ୍ର ଏଥିରେ ଅସନ୍ତୁଷ୍ଟ ହେଲେ । ସେ ଗୋକୁଳ ବାସୀଙ୍କ ପ୍ରତିଶୋଧ ନେବା ପାଇଁ ନିଜର ଆଜ୍ଞାବହ ବଜ୍ରମେଘକୁ ଡାକି ପ୍ରବଳ ବର୍ଷା ଝଡ଼ ପାଇଁ ଆଦେଶ ଦେଲେ । ଦେଖୁ ଦେଖୁ ସମସ୍ତ ଆକାଶ କଳାହାଣ୍ଡିଆ ମେଘରେ ଘୋଟି ହୋଇଗଲା । ପ୍ରବଳ ଝଡ଼ ବତାସ ବଜ୍ରପାତ, ଘଡ଼ ଘଡ଼ ସାଙ୍ଗକୁ ମୂଷଳ ଧାରାରେ ବର୍ଷା । ଅଦିନ ମେଘର ଏଭଳି ବର୍ଷାତ କ୍ଷଣସ୍ଥାୟୀ ହୋଇଥାଏ । ମାତ୍ର ଦେବତାକୃତ ଏହି ବର୍ଷାତ ବାରି ଘୋର ବିପର୍ଯ୍ୟୟ ସୃଷ୍ଟି କଲା । ରାସ୍ତାଘାଟ ଜଳପୂର୍ଣ୍ଣ ହୋଇଗଲା । ଯମୁନା ନଦୀ ବର୍ଷାଜଳରେ ଉଛୁଳି ଉଠିଲା । ଗାଈଗୋରୁଙ୍କ ସହ ଗୋକୁଳବାସୀ ବର୍ଷାମାଡ଼ରେ ବ୍ୟତିବ୍ୟସ୍ତ ହୋଇଉଠିଲେ । ସମସ୍ତେ ଭାବିଲେ ଇନ୍ଦ୍ରଙ୍କ କୋପରୁ ଏପରି ହେଉଛି ସୁତରାଂ ପୁଣି ଇନ୍ଦ୍ରପୂଜା କରାଯିବା ଉଚିତ । ମାତ୍ର ଶ୍ରୀକୃଷ୍ଣ କହିଲେ— "ଦେବ ଦେବୀଙ୍କ ସନ୍ତୋଷ ଅସନ୍ତୋଷ ଭିତରେ ମଣିଷ ମାତ୍ରାଧିକ ହୋଇ ରହିବା ଉଚିତ ନୁହେଁ । ଅହଂଭାବ ଓ ଗର୍ବ ଅସନ୍ତୋଷ ଓ ପ୍ରତିଶୋଧ ପରାୟଣ ଗୁଣ କୌଣସି ଦେବ ଦେବୀଙ୍କ ରହିବା ଅନୁଚିତ । ଯଦି ରହେ ସେମାନେ ଆଉ ମଣିଷଙ୍କଠାରୁ ଶ୍ରେଷ୍ଠ କାହିଁକି ? ଇନ୍ଦ୍ରଙ୍କ ଗର୍ବଗଞ୍ଜନ ବ୍ୟବସ୍ଥା ମୁଁ କରୁଛି ।" ଏହା କହି କୃଷ୍ଣ ନିଜ କନିଷ୍ଠ ଅଙ୍ଗୁଳି

ଦ୍ୱାରା ବରିଷ୍ଠକାୟ ଗୋବର୍ଦ୍ଧନ ପର୍ବତକୁ ଟେକି ଧରିଲେ । ସେହି ପର୍ବତ ରୂପକ ଛତ୍ର ତଳେ ଗୋକୁଳବାସୀ ଓ ଗୋ ସଂପଦ ଆଶ୍ରୟ ନେଲେ । ସେଠାରେ ପୂଜାର୍ଚ୍ଚନା ଉପାସନା ଓ ଖାଦ୍ୟପେୟର ବ୍ୟବସ୍ଥା କରାଗଲା । କାହାର କୌଣସି ଅସୁବିଧା ରହିଲା ନାହିଁ ।

ଦିନେ ନୁହେଁ ଦୁଇଦିନ ନୁହେଁ ପୂର୍ଣ୍ଣ ସପ୍ତାହେ ପର୍ଯ୍ୟନ୍ତ ଇନ୍ଦ୍ର ବୃଷ୍ଟି କରାଇଲେ । ମାତ୍ର ଗୋକୁଳବାସୀଙ୍କର କୌଣସି କ୍ଷତି କରିପାରିଲେ ନାହିଁ । କୌଣସି ବୃହତ୍ ଶକ୍ତି ଗୋକୁଳବାସୀଙ୍କ ସହାୟତା କରୁଥିବା କଥା ସେ ଅନୁଧ୍ୟାନ କରି ଧ୍ୟାନରେ ବସିଲେ । ସ୍ୱୟଂ ନାରାୟଣଙ୍କ ଅବତାର ଶ୍ରୀକୃଷ୍ଣ ଯେ ଇନ୍ଦ୍ରଙ୍କ ଗର୍ବଗଞ୍ଜନ ପାଇଁ ଏଭଳି ଲୀଳା ପ୍ରକଟ କରିଛନ୍ତି ତାଙ୍କର ଆଉ ଜାଣିବା ପାଇଁ ବାକି ରହିଲା ନାହିଁ । ସେ ମନେ ମନେ ଲଜ୍ଜିତ ହେଲେ । ସଙ୍ଗେ ସଙ୍ଗେ ମେଘ ବର୍ଷଣ ବନ୍ଦ କରାଇଦେଲେ । ନିର୍ମଳ ଆକାଶରେ ପୁଣି ସୂର୍ଯ୍ୟ କିରଣ ଝଟକି ଉଠିଲା । କୃଷ୍ଣ ଗୋକୁଳବାସୀଙ୍କ ଗୋଧନ ନେଇ ଘରକୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଲେ ଏବଂ ଗୋବର୍ଦ୍ଧନ ପର୍ବତକୁ ଯଥା ସ୍ଥାନରେ ସ୍ଥାପନ କଲେ । ନିକାଞ୍ଚନ ହେବାରୁ ଇନ୍ଦ୍ର ଆସି କୃଷ୍ଣଙ୍କୁ ଦର୍ଶନ କଲେ ଏବଂ ନିଜର କୃତକର୍ମ ପାଇଁ କ୍ଷମା ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ଦରହାସ ମୁଖରେ ଇନ୍ଦ୍ରଙ୍କୁ କ୍ଷମା କରି କହିଲେ—"ଦେବରାଜ ଇନ୍ଦ୍ର ! ଗର୍ବ ଓ ଅହଂକାର କଦାପି ଦେବତାମାନଙ୍କୁ ସ୍ପର୍ଶ କରିବା ଅନୁଚିତ । ସମସ୍ତ ଦେବ ଦେବୀ ପରଂବ୍ରହ୍ମଙ୍କ ଅଂଶ ସମ୍ଭୂତ । ସମସ୍ତଙ୍କୁ ଅଲଗା ଅଲଗା ପୂଜା କରି ମଣିଷ ସମାଜ କ'ଣ ସମସ୍ତଙ୍କୁ ସନ୍ତୋଷ କରିପାରିବେ ? ସେଇ ପରଂବ୍ରହ୍ମଙ୍କୁ ଯେ କୌଣସି ଗୋଷ୍ଠୀଏ ମାଧ୍ୟମରେ ପୂଜା ଅର୍ଚ୍ଚନା କଲେ ସମସ୍ତେ ସନ୍ତୁଷ୍ଟ ହୋଇ ଜନମଙ୍ଗଳ କରିବା ହିଁ ପ୍ରକୃତ ଦେବତ୍ୱ । ଯାଆନ୍ତୁ ସମସ୍ତ ଦେବ ଦେବୀଙ୍କୁ ମୋର ଏହି ବାଣୀ ପ୍ରଦାନ କରାଇ କାର୍ଯ୍ୟକାରୀ କରାନ୍ତୁ ।" ଇନ୍ଦ୍ର ପ୍ରଣାମ ଜଣାଇ ଫେରିଗଲେ ।

ଏଭଳି ଶ୍ରୀକୃଷ୍ଣଙ୍କ ଚମତ୍କାର କାର୍ଯ୍ୟକଳାପ ସମ୍ବାଦ ପାଇ କଂସ ବିସ୍ମିତ ଓ ଭୟଭୀତ ହେବାରେ ଲାଗିଥାଏ । ନିଜେ ଜଗତର ଏକମାତ୍ର ପରାକ୍ରମୀ ବୋଲି ତା'ର ଆତ୍ମାଭିମାନ ଥିଲା । ସତେ କ'ଣ ଗୋପ-ବୃନ୍ଦାବନର ସେ ବାଳକ କଂସ ଠାରୁ ବଳିଯିବ ? କଂସ ନିଶ୍ଚିନ୍ତ ହୋଇ ରହିପାରିଲା ନାହିଁ । ସେ ନିଜର ଅନୁଚରମାନଙ୍କୁ ଡକାଇ ପଠାଇଲା । ନିଜର ଭୟ କଥା ମଧ୍ୟ ପ୍ରକାଶ କଲା । ଅରିଷ୍ଟ ଷଣ୍ଢାସୁର ନାମକ ଏକ ଅସୁର କୃଷ୍ଣଙ୍କୁ ମାରି କଂସକୁ ଚିନ୍ତାଶୂନ୍ୟ କରିପାରିବ ବୋଲି ନିଜର ଟାଣପଣ ଦେଖାଇ ହେଲା । କଂସ ତାକୁ କୃଷ୍ଣ ନିଧନ ପାଇଁ ପଠାଇଲା ।

ଷଣ୍ଢାସୁର ଏକ ବିଶାଳକାୟ ଷଣ୍ଢରୂପ ନେଇ ଦିନେ ସନ୍ଧ୍ୟାରେ ଯାଇ ଯମୁନା କୂଳରେ ସ୍ନାନ ସାରି ଫେରୁଥିବା ଗୋପୀମାନଙ୍କୁ ଆକ୍ରମଣ କଲା । ସେମାନଙ୍କ ଚିତ୍କାର ଶୁଣି ସହସା ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ହେଲେ । ସେ ଷଣ୍ଢର ଦୁଇ ବିଶାଳ ଶିଙ୍ଗକୁ ଧରି କାବୁ କରିଦେଲେ । ଷଣ୍ଢ ବହୁତ ଛଟପିଟ ହେଲା ମାତ୍ର କୃଷ୍ଣଙ୍କ କବଳରୁ ମୁକୁଳି ପାରିଲା

ନାହିଁ । କୃଷ୍ଣ ତାଙ୍କୁ ଠେଲି ଠେଲି ନେଇ ଗୋଷ୍ଠାଏ ଗାଈ ଭିତରେ ପକାଇଦେଲେ । ଅତୁଳ ବଳର ଅସଲ ରୂପରେ ଚାଣୂରଙ୍କ ମଲ୍ଲ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । କଂସ ଏ ଖବର ପାଇବା ପରେ ଖୁବ୍ ଭୟ ପାଇଗଲା । କୃଷ୍ଣଙ୍କୁ କପଟ ମାରିଦେଇ 'ହେବ ସେ ଚକ୍ରାରେ ତାଙ୍କୁ ଆଉ ବଧ ହେଲନାହିଁ । ଗୋକୁଳ ବାସୀଙ୍କୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ଠାରୁ ମୁକୁଳାଇ ଏକ ଆଦର୍ଶ ମାନବ ସମାଜରେ ପରିଣତ କରିବା ପାଇଁ କୃଷ୍ଣ ଅନେକ ପ୍ରକାର ଲୀଳା ପ୍ରକଟ କଲେ । ପୂର୍ବେ ଗୋପୀମାନେ କୌଣସି ଲୁଗାପଟା ନପିନ୍ଧି ନଦୀରେ ପଶି ସ୍ନାନ କରୁଥିଲେ । ସେମାନଙ୍କୁ ସମୁଚିତ ଶିକ୍ଷା ଦେବାଲାଗି କିଶୋର କୃଷ୍ଣ ଥରେ ଏକ ବିଚିତ୍ର କାଣ୍ଡ ଭିଆଇଲେ । ଗୋପୀମାନେ ନିଜ ଲୁଗାପଟା ନଦୀ କୂଳରେ ରଖି ଜଳରେ ସ୍ନାନ କରୁଥାନ୍ତି । ଶ୍ରୀକୃଷ୍ଣ ସବୁ ଲୁଗାପଟା ଗୁଡ଼ିକ ହରଣ କରି ଗଛ ଡାଳରେ ଝୁଲାଇ ଦେଲେ ଓ ଗଛରେ ଚଢ଼ି ବଂଶୀ ବଜାଇଲେ । ବଂଶୀ ଶବ୍ଦ ଶୁଣି ଗୋପୀମାନେ ଛନକା ଗଲେ । ତା' ଉପରେ ହୋଇ ଲୁଗା ପିନ୍ଧିବା ନିମନ୍ତେ କୂଳକୁ ଆସିଲା ବେଳକୁ ସେ-ମାନଙ୍କ ବସ୍ତ୍ର ନାହିଁ । ଫଳରେ ଲଜ୍ଜାରେ ସେମାନେ ଆଉ ବାହାରକୁ ବାହାରି ପାରିଲେ ନାହିଁ । ଲୁଗାଗୁଡ଼ିକ ଜଳ ଭିତରକୁ ପକାଇ ଦେବାପାଇଁ କୃଷ୍ଣଙ୍କୁ କାକୁତି ମିନତି କଲେ । କୃଷ୍ଣଙ୍କ ସର୍ତ୍ତ ଅନୁସାରେ ଆଉ କେବେହେଲେ ଲୁଗା ନପିନ୍ଧି ଜଳରେ ସ୍ନାନ କରିବେ ନାହିଁ ବୋଲି ଗୋପାଙ୍ଗନାମାନେ ପ୍ରତିଜ୍ଞା କରିବାରୁ କୃଷ୍ଣ ସେମାନଙ୍କ ଉପରକୁ ଶାଢ଼ୀ ଓ ଅଙ୍ଗବସ୍ତ୍ର ପକାଇ ସେଠାରୁ ଚାଲିଗଲେ ।

କଂସ ନାରଦଙ୍କ କଥା ମନେ ପକାଇଲା । ନାରଦ ଥରେ କଂସକୁ କହିଥିଲେ ତାଙ୍କୁ ଯିଏ ବଧ କରିବ ସେ ଅନ୍ୟତ୍ର ବଢ଼ୁଛି । ତେବେ ଏହି କୃଷ୍ଣ କ'ଣ ସେହି ବାଳକ ? କଂସ ବନ୍ଦୀ ଘରୁ ଦେବକୀ ଓ ବସୁଦେବଙ୍କୁ ଡକାଇ ନାନାଧରଣ ଧମକ ଦେଇ ପଚାରିଲା—"ବସୁଦେବ । ସତ କୁହ ! ନନ୍ଦ ଘରେ ଥିବା କୃଷ୍ଣ ନାମକ ବାଳକଟି କିଏ ? ସେ କ'ଣ ତୁମର ସନ୍ତାନ ? ତୁମେ କ'ଣ ଗୁପ୍ତରେ ମୋ ଅଜାଣତରେ ତାଙ୍କୁ ଗୋପରେ ଛାଡ଼ିଆସିଥିଲ'?

ବସୁଦେବ ବା ଦେବକୀ କିଛି ନକହି ନୀରବ ରହିଲେ ? କଂସ କହିଲା—ଜାଣେ ତୁମେ କିଛି କହିବ ନାହିଁ । ମନେରଖ ସେ ଗାଈଜଗା କୃଷ୍ଣକୁ ମୁଁ ଏଠିକି ଡକାଇ ତା'ର କେତେ ବଳ ପରୀକ୍ଷା କରିବି ?"

ବସୁଦେବ କହିଲେ—"କଂସ ! ତୁମେ କାହିଁକି ମନେ କରୁଛ ଯେ କୃଷ୍ଣ ତୁମର ଶତ୍ରୁ ବୋଲି ? ତୁମେ ଏତେ ବଡ଼ ବୀର ! ସାମାନ୍ୟ ବାଳକଟା ସେ ତୁମର କ'ଣ କରିବ ? ସେ ଯିଏ ହେଉନା କାହିଁକି ତୁମର ଚିନ୍ତା କରିବାରେ କ'ଣ ଅଛି ?

କଂସ ଏଥିରେ ରାଗିଯାଇ କହିଲା—"ତୁମଠାରୁ ଉପଦେଶ ଶୁଣିବା ପାଇଁ ମୁଁ ଏଠିକୁ ଡକାଇ ନଥିଲି । ଯାଅ ! କାରାଗାର ହିଁ ତୁମପାଇଁ ଉପଯୁକ୍ତ ସ୍ଥାନ ।" ବସୁଦେବ ଓ ଦେବକୀଙ୍କୁ କାରାଗାରରେ ପୁଣି ରଖାଗଲା ।

ତାପରେ କଂସ ମଥୁରାରେ ଏକ ଧନୁଯାତ୍ରାର ଆୟୋଜନ କଲା । ଧନୁଯାତ୍ରା ଉପଲକ୍ଷେ ପ୍ରତିବର୍ଷ ମଥୁରାରେ କ୍ରୀଡ଼ା, କସରତ, ମଲ୍ଲଯୁଦ୍ଧ ଇତ୍ୟାଦି ବ୍ୟବସ୍ଥା ହେଉଥାଏ । କୃଷ୍ଣ ଓ ବଳରାମଙ୍କୁ ମଥୁରାକୁ ଡ଼କାଇ କ୍ରୀଡା କସରତ ମାଧ୍ୟମରେ ସେମାନଙ୍କୁ ମାରିଦେବା ପାଇଁ କଂସର ଯୋଜନା ଥିଲା । କଂସ ଅକ୍ରୂର ନାମକ ଜଣେ ବିଶିଷ୍ଟ ନାଗରିକଙ୍କୁ ଡ଼ାକି କହିଲା—"ଅକ୍ରୂର ତୁମେ ଯାଅ ଗୋକୁଳର ରାଜାନନ୍ଦଙ୍କୁ କହିବ ଧନୁଯାତ୍ରା ପାଇଁ ମୁଁ ତାଙ୍କୁ ସପରିବାରେ ନିମନ୍ତ୍ରଣ ଜଣାଉଛି । ବିଶେଷତଃ ତାଙ୍କ ପୁଅପୁଣି କୃଷ୍ଣ ବଳରାମ ଆଦୌ ଧନୁଯାତ୍ରା ଦେଖିନଥିବାରୁ ତାଙ୍କୁ ବିଶେଷ ଭାବେ ଆମନ୍ତ୍ରିତ କରୁଛି । ଯାତ୍ରାପାଇଁ ବିପୁଳ ପରିମାଣର କ୍ଷୀର ଓ କ୍ଷୀର ଜାତ ଦ୍ରବ୍ୟ ନନ୍ଦ ମଥୁରା ଯେପରି ପଠାନ୍ତି ତାହା ମଧ୍ୟ ଜଣାଇ ଦେବ ।"

ଅକ୍ରୂର ସମ୍ମତି ଜଣାଇ ମଥୁରା ଗଲେ । ହେଲେ କଂସର ଶ୍ରୀକୃଷ୍ଣ ବଳରାମଙ୍କ ଆସିବା ପର୍ଯ୍ୟନ୍ତ ଧୈର୍ଯ୍ୟନଥିଲା । ସେ କେଶୀ ନାମକ ଏକ ରାକ୍ଷସକୁ ପଠାଇ କୃଷ୍ଣଙ୍କୁ ମାରିଦେବା ପାଇଁ ନିର୍ଦ୍ଦେଶ ଦେଲା । କେଶୀ ଗୋଟାଏ ବିରାଟକାୟ ଘୋଡ଼ା ରୂପଧରି ବୃନ୍ଦାବନରେ ପହଞ୍ଚିଗଲା । ସେ ପ୍ରଥମରୁ ଗାଈ ଗୋରୁ ମଣିଷ ଯାହାକୁ ପାଇଲା ଦଳି ଚକଟି ମାରି ପକାଇଲା । ସାମାନ୍ୟ ଘୋଡ଼ାଟିର ଏଭଳି ଉନ୍ମତ୍ତ କାଣ୍ଡ ଦେଖି କୃଷ୍ଣ ସବୁ ଅନୁମାନ କରିନେଲେ । ସେ ଘୋଡ଼ାକୁ ପ୍ରତି ଆକ୍ରମଣ କଲେ । ଘୋଡ଼ା ରୂପି ରାକ୍ଷସ ପାଟି ମେଲାକରି କୃଷ୍ଣଙ୍କ ଆଡ଼କୁ ମାଡ଼ିଆସିଲା । କୃଷ୍ଣ ତା' ପାଟିରେ ହାତ ପୂରାଇ ତା' ଜିଭଟିକୁ ଧରିନେଲେ କେଶୀ ଆଉ ଯାଏ କୁଆଡ଼େ ? ହଲଚଲ ହେବାର ମଧ୍ୟ ଯୁ ନାହିଁ । କୃଷ୍ଣ ବଜ୍ରଭଳି କର୍ପାତ ବିଧାର ଗୋଟାଏ ମାରି କେଶୀକୁ ହତ୍ୟାକଲେ । ସମସ୍ତେ କୃଷ୍ଣଙ୍କ ଜୟ ଜୟକାର ନାଦ କଲେ ।

ଯଥା ସମୟରେ ଅକ୍ରୂର ଆସି ଗୋକୁଳରେ ପହଞ୍ଚିଲେ । ନନ୍ଦ ତାଙ୍କୁ ଅଭିନନ୍ଦନ ଜଣାଇଲେ । ଅକ୍ରୂରଙ୍କ ପ୍ରତି ଗୋକୁଳବାସୀଙ୍କ ଅକୁଣ୍ଠ ଶ୍ରଦ୍ଧା ଥିଲା । ଅକ୍ରୂର କଂସର ନିମନ୍ତ୍ରଣ ଜଣାଇ କୃଷ୍ଣ ବଳରାମଙ୍କ ସହ ନନ୍ଦ ସପରିବାର ମଥୁରା ଯିବେ ବୋଲି ଅନୁରୋଧ କଲେ । ନନ୍ଦ ଏଥିରେ ସମ୍ମତ ହେଲେ । ଅକ୍ରୂର ଆଣିଥିବା ରଥରେ କୃଷ୍ଣ ବଳରାମ ତା' ପରଦିନ ମଥୁରା ଯିବା ସ୍ଥିର ହେଲା ।

ଏ ଖବର ପାଇବା ପରେ ସମସ୍ତ ଗୋକୁଳରେ ଦୁଃଖର ସ୍ରୋତ ବହିଗଲା । କୃଷ୍ଣଙ୍କୁ ଛାଡ଼ିବା ପାଇଁ କେହି ରାଜିନଥିଲେ । ସମସ୍ତଙ୍କ ନୟନ ମଣି, ଆପଦ ବିପଦର କାଣ୍ଡାରୀ କୃଷ୍ଣ ଗୋପ ଛାଡ଼ି ମଥୁରାକୁ ଯାଉଛନ୍ତି ଆଉ ଫେରିବେ କି ନାହିଁ ସନ୍ଦେହ ଥିଲା । ଯଥା ସମୟରେ ସମସ୍ତଙ୍କ ଠାରୁ ବିଦାୟ ନେଇ କୃଷ୍ଣ ବଳରାମ ମଥୁରା ଅଭିମୁଖେ ଚାଲିଲେ । କୃଷ୍ଣ ବିହୀନ ଗୋକୁଳ ଶ୍ରୀହୀନ ଦେଖାଗଲା । ସବୁଆଡ଼େ ବିଷାଦ ପରିବେଶ । ଗୋକୁଳ ବାସୀ, ପଶୁପକ୍ଷୀ, ବନଲତା, ନଦନଦୀ କୃଷ୍ଣଙ୍କୁ ଝୁରି ଝୁରି କାନ୍ଦୁଥିଲେ ।

ଅକ୍ରୂରଙ୍କ ରଥରେ କୃଷ୍ଣ-ବଳରାମ ମଥୁରା ଯାଉଥାନ୍ତି । ରାସ୍ତାରେ ଯମୁନା ନଦୀ । ଅକ୍ରୂର କୃଷ୍ଣ ବଳରାମଙ୍କୁ ରଥ ଉପରେ ବିଶ୍ରାମ ନେବାକୁ ଅନୁରୋଧ କରି ଯମୁନାରେ ସ୍ନାନ କରିବା ନିମନ୍ତେ ଗଲେ । ସେ ଯମୁନା ଜଳରେ ବୁଡ଼ିବା ପରେ ଶ୍ରୀକୃଷ୍ଣଙ୍କ ଲୀଳା ବିଭବ ଦେଖିବାକୁ ପାଇଲେ । କୃଷ୍ଣ ଯେ ସ୍ୱୟଂ ନାରାୟଣ ଏଥିରେ ଆଉ ତାଙ୍କର ସନ୍ଦେହ ରହିଲା ନାହିଁ । ସେ ସ୍ନାନ ପରେ ଆସି ପ୍ରଭୁଙ୍କ କୃପା ପାଇ ପାରିଥିବାରୁ ତାଙ୍କୁ ବନ୍ଦନା କଲେ । କ୍ରମେ ସେମାନେ ଆସି ମଥୁରା ପୁରୀରେ ପହଞ୍ଚିଲେ । କୃଷ୍ଣ ଓ ବଳରାମ ମଥୁରା ନଗରୀକୁ ଭଲ-ଭାବେ ଦେଖିବା ପାଇଁ ଇଚ୍ଛା କରି ରଥରୁ ଓହ୍ଲାଇପଡ଼ିଲେ ଓ ପାଦରେ ଚାଲି ଚାଲି ଗଲେ ।

ଧନୁ ଉତ୍ସବର ଆୟୋଜନ ଯୋଗୁଁ ମଥୁରା ନଗରୀକୁ ଖୁବ୍ ସୁନ୍ଦର ଓ ଆକର୍ଷଣୀୟ ଭାବେ ସଜା ଯାଇଥାଏ । ନାନା ସ୍ଥାନରେ ତୋରଣମାନ ନିର୍ମିତ ହୋଇଥାଏ । କଂସର ରାଜଧାନୀ ମଥୁରା ନଗରୀର ଉଚ୍ଚ ଉଚ୍ଚ କୋଠାବାଡ଼ି, ପ୍ରଶସ୍ତ ରାଜପଥ, ଉଦ୍ୟାନ, ପୁଷ୍କରିଣୀ ଲୋଭନୀୟ ରୂପ ଦେଖି ଦୁଇଭାଇ କଂସକୁ ମନେ ମନେ ପ୍ରଶଂସା କରୁଥାନ୍ତି । ଏଣେ କୃଷ୍ଣ ଓ ବଳରାମଙ୍କୁ ଦେଖି ନଗରବାସୀଙ୍କ ମଧ୍ୟରେ ଚହଳ ପଡ଼ିଗଲା । ରାମ କୃଷ୍ଣଙ୍କ ଲାବଣ୍ୟ-ମୟ କାନ୍ତି କମନୀୟ ରୂପ ସମସ୍ତଙ୍କୁ ଭୋଳ କରିଦେଉଥାଏ । ତାଙ୍କ ଦର୍ଶନ ପାଇଁ ନରନାରୀ ମାନଙ୍କ ଗହଳ ଚହଳ ବଢ଼ିଗଲା । ମଥୁରା ରାଜଦାଣ୍ଡରେ ଚାଲି ଚାଲି ଆସିବା ବେଳେ କୃଷ୍ଣ ଓ ବଳରାମ କଂସର ରଜକକୁ ଦେଖିଲେ । ସେ ରଜକ ସୁନ୍ଦର ସୁନ୍ଦର ମୂଲ୍ୟବାନ ପୋଷାକ ଧରି ରାଜାଙ୍କ ପାଇଁ ନେଇ ଯାଉଥାଏ । ତାକୁ ଅଟକାଇ କୃଷ୍ଣ କହିଲେ—"କହୋ ରଜକ ଭାଇ ! ଏ ସୁନ୍ଦର ପୋଷାକପତ୍ର ଗୁଡିକ କାହା ପାଖକୁ ନେଇ ଯାଉଛ" ?

ରଜକ କହିଲା—"କହୋ ! ତମର କ'ଣ ଗଲା ? ଖୋଦ୍ କଂସ ରାଜାଙ୍କ ରଜକ ମୁଁ । ମହାରାଜଙ୍କ ଅଙ୍ଗବସ୍ତ୍ର ନେଇଯାଉଛି । ରାସ୍ତାଛାଡ଼ । ଏକଥା ପଚାରିବା ଜାଣିଲେ ତୁମର ମୁଣ୍ଡକାଟ ହେବ । ଯାଅ...ଯାଅ ।"

କୃଷ୍ଣ କହିଲେ —"ଆହେ ଆମେ ପରା ଖୋଦ୍ କଂସରାଜାଙ୍କ ଭଣଜା ହୁଉ । ସେ ପରା ଆମକୁ ଧନୁଯାତ୍ରା ଦେଖିବା ପାଇଁ ଡକାଇ ଆଣିଛନ୍ତି । ଆମକୁ ଖାଲି ଭଲ ଦୁଇଟା ରାଜପୋଷାକ ଦିଅ । ଆମେ ପିନ୍ଧି ମାମୁଁଙ୍କ ପାଖକୁ ଯିବୁ । ତୁମେ ଏକଥା ତାଙ୍କୁ କହିଲେ ଖୁବ୍ ଖୁସୀ ହୋଇ ସେ ତୁମକୁ ପୁରସ୍କାର ଦେବେ ।"

ରଜକ ଏଥିରେ ରାଗିଯାଇ କହିଲା—"କ'ଣ ହେଲା ? ମହାରାଜଙ୍କ ରାଜ ପୋଷାକ ତମେ ଦୁହେଁ ପିନ୍ଧିବ ? ଭାରି ସାହସତ । କରେ ବଣୁଆ ଟୋକା ଦୁଇଟା କୁଆଡ଼ୁ ନାହିଁ କୁଆଡ଼ୁ ଆସି କହୁଛ କ'ଣ ନା ରାଜାଙ୍କ ଭଣଜା !! ଯା. ଯା.. ଠକ ..ଭଣ୍ଡ... କୁଅଡ଼ିଆର ।"

କୃଷ୍ଣ ଏଥିରେ ରାଗିଯାଇ ରଜକ ଗାଲରେ କଷିଦେଲେ ଗୋଟାଏ ଚାପୁଡ଼ା । ଅହଂକାରୀ ରଜକଟା ରକ୍ତବାନ୍ତି କରି ସେଠି ପଡ଼ିଗଲା । ଚାରିଆଡ଼େ କୋଳାହଳ ରହିଗଲା । କୃଷ୍ଣ ବଳରାମ ବାଛି ବାଛି ନୀଳାମ୍ବର ଓ ପୀତାମ୍ବର ପାଟ ଓ ରାଜପୋଷାକ କେତେଟି ବାହାର କରି ପିନ୍ଧିଲେ । ଅନ୍ୟ ସବୁ ରାଜପୋଷାକ ସେଠାକାର ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେଲେ ।

ସେଠୁ ଦୂର କିଛି ଯାଇ ପହଞ୍ଚିଲେ ଗୋଟାଏ ଫୁଲହାର ଦୋକାନୀ ପାଖରେ । କୃଷ୍ଣ ହାରବାଲାକୁ କହିଲେ—"ଭାଇ ! ଆମକୁ କିଛି ସୁବାସିତ ଫୁଲମାଳ ପିନ୍ଧାଇ ଦିଅ ତ । ମାଳାକାର ଏ ଦୁହିଁଙ୍କ ରୂପ ଦେଖି ଏମିତି ଭୋଳ ହୋଇଗଲା ଯେ ସଙ୍ଗେ ସଙ୍ଗେ ତା ଦୋକାନରେ ଥିବା ସବୁଠାରୁ ମୂଲ୍ୟବାନ ଫୁଲମାଳ ଦୁଇଟା ଦୁଇଭାଇଙ୍କ ଗଳାରେ ଲମ୍ବାଇ ଦେଲା । କହିଲା—"ଏ ମାଳ ଦୁଇଟା ମହାରାଜ କଂସଙ୍କ ପାଇଁ ତିଆରି କରିଥିଲି ମାତ୍ର ତୁମ ଗଳାରେ ଏହା ତାହାଠୁ ବଳି ଶୋଭାପାଉଛି ।" ତା ହାର ବ୍ୟବହାରରେ ମୁଗ୍ଧ ହୋଇ କୃଷ୍ଣ ତାହାକୁ ଧନ ସମ୍ପଦ ଓ ସୁଖ ପ୍ରାପ୍ତି ପାଇଁ ବର ପ୍ରଦାନ କରି ଆଗକୁ ଗଲେ ।

କିଛି ଦୂର ଗଲାପରେ ଗୋଟାଏ କୁବୁଜା ଦାସୀକୁ ସେମାନେ ଭେଟିଲେ । ରୂପଟି ତା'ର ଅତି ଅସୁନ୍ଦର । ପିଠିରେ ଉଠୋଇଛି କୁଜ ରହିଛି ତେଣୁ ସେ ଝଙ୍କାକୁଡ଼ ଓ ଦଣ୍ଡି ନଇଁ ଚାଲୁଛି । ହାତରେ ଅଗୁରୁ, କସ୍ତୁରୀ ମିଶ୍ରିତ ବାସଚନ୍ଦନ ପାତ୍ର । ଚାରିଆଡ଼ ସୁଗନ୍ଧରେ ମହକି ଯାଉଥାଏ । କୃଷ୍ଣ ତାକୁ ପଚାରିଲେ "ଏସବୁ ତୁ କାହାପାଇଁ ନେଉଛୁ" ? କୁବୁଜା କହିଲା—"ଏ ଚନ୍ଦନ ସବୁ ମହାରାଜ କଂସଙ୍କ ଅଙ୍ଗଲାଗି ପାଇଁ ନେଉଛି । ସ୍ନାନ ପରେ ସେ ତିଳକ ଧାରଣ କରି ସର୍ବାଙ୍ଗରେ ବୋଳିହେବେ ।"

କୃଷ୍ଣ କହିଲେ "ଆଜି ଏ ସବୁରେ ଆମ ଦୁହିଁଙ୍କୁ ବେଶ କରିଦେ । ଆମେ ରାଜାଙ୍କ ଭଣଜା" କୁବୁଜା ଆନନ୍ଦରେ କିଛି ନ କହି ଶ୍ରଦ୍ଧାରେ ଦୁଇଭାଇଙ୍କୁ ବେଶ କରିଦେଲା । କୃଷ୍ଣ ତାହାର ବ୍ୟବହାରରେ ମୁଗ୍ଧ ହୋଇଗଲେ । କୃଷ୍ଣଙ୍କ କପାଳରେ ଟିକା ଲଗାଇ ଦେବା ପାଇଁ ତା କୁବ୍ଜତାରେ ଚନ୍ଦନ ଟିପା ଦେବାପାଇଁ କୁବୁଜାର ହାତ ପାଉନ ନାହିଁ । ଶ୍ରୀକୃଷ୍ଣ କୁବୁଜାକୁ ହାତରେ ଧରି ନଜର ମୁଖମଣ୍ଡଳ ପର୍ଯ୍ୟନ୍ତ ଉଠାଇ ଆଣିଲେ । ଏକ ଅଦ୍ଭୁତ ଘଟଣା ଘଟିଗଲା । ଶ୍ରୀକୃଷ୍ଣଙ୍କ ହାତ ବାଜିବା କ୍ଷଣି କୁବୁଜାର ଅସୁନ୍ଦର ରୂପ କେଉଁଆଡ଼େ ହଜିଗଲା ଏବଂ ସେ ଏକ ସୁନ୍ଦରୀ ମହିଳାରେ ପରିଣତ ହେଲା । ଦେଖଣାହାରିମାନେ ଏଭଳି ଅଲୌକିକ ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲେ । ସୁନ୍ଦରୀ କୁବୁଜା କୃଷ୍ଣଙ୍କ ହାତ ଧରିପକାଇ କହିଲା—"ହେ ପ୍ରଭୁ ! ଆପଣଙ୍କ କୃପାରୁ ମୁଁ ଏଭଳି ସୁନ୍ଦରୀ ଯୁବତୀ ହୋଇପାରିଛି । ମୋର ଅସୁନ୍ଦର ରୂପ ଯୋଗୁଁ ମୋତେ କେହି ବିବାହ କରିନଥିଲେ । ମୁଁ ଚରଣଦାସୀ ହୋଇ ରହିବି ମୋତେ ବିବାହ କରନ୍ତୁ ।" କୃଷ୍ଣ ଅଳ୍ପ ହସି

କହିଲେ—" ପ୍ରିୟବର ବର୍ତ୍ତମାନ ମୁଁ ବ୍ୟସ୍ତ ଅଛି । ଧନୁ ଯାଗପରେ ମୋତେ ସମସ୍ତ ମିଳିବ । ତୁମେ ମୋତେ ନିଜ ଘରେ ଅପେକ୍ଷା କରୁଥାଅ ମୁଁ ନିଶ୍ଚୟ ତୁମର ଇଚ୍ଛା ପୂରଣ କରିବି ।"

ମଥୁରା ନଗରୀର ରୂପ-ବିଭବ ଦେଖି ଦେଖି ରାମ-କୃଷ୍ଣ ବୁଲିବୁଲି କଂସର ରାଜପ୍ରାସାଦରେ ପହଞ୍ଚିଲେ । ଧନୁ ଉତ୍ସବ ପାଇଁ ଏକ ବିରାଟକାୟ ଧନୁର ପ୍ରଦର୍ଶନୀ ବ୍ୟବସ୍ଥା କରାଯାଇଥାଏ । ତାଛଡ଼ା ସେହି ପ୍ରଦର୍ଶନୀ ଗୃହରେ କଂସ ଦ୍ୱାରା ନିମନ୍ତ୍ରିତ ବହୁରାଜା ମହାରାଜା ସେମାନଙ୍କର ବହୁମୂଲ୍ୟ ଭେଟି ଦ୍ରବ୍ୟ ଜମା କରିଥାନ୍ତି । ଲୋକମାନେ ସେ ସବୁ ଦେଖିବା ପାଇଁ ଭିଡ଼ ଜମାଇଥାନ୍ତି । ଶ୍ରୀକୃଷ୍ଣ ଓ ବଳରାମ ସେହି ପ୍ରଦର୍ଶନୀ ଗୃହ ବୁଲି ବୁଲି ଦେଖିଲେ ଏବଂ ଶେଷରେ ଅତିକାୟ ଧନୁ ନିକଟରେ ପହଞ୍ଚିଲେ । ସେ ଧନୁର ଆକାର ଏତେ ପ୍ରକାଣ୍ଡଥିଲା ଯେ କେହି ଏକାକୀ ତାହା ଉଠାଇବା ସମ୍ଭବ ନଥିଲା । ମାତ୍ର କୃଷ୍ଣ ଫୁଲ ଭଳି ବାମ ହାତରେ ସେହିଟିକୁ ଉଠାଇ ନେଲେ ଏବଂ ଗୁଣ ଚଢ଼ାଇଲେ । ଧନୁର ଟଙ୍କାର ଶବ୍ଦରେ ସାରା ମଥୁରା କମ୍ପି ଉଠିଲା ଏବଂ ଧନୁଟି ଦୁଇଖଣ୍ଡ ହୋଇଗଲା । ଏଭଳି ଏକ ଆକସ୍ମିକ ଘଟଣା ପାଇଁ କେହି ପ୍ରସ୍ତୁତ ନଥିଲେ । କଂସର ପ୍ରହରୀମାନେ ଅସ୍ତ୍ର ଶସ୍ତ୍ର ନେଇ ରାମକୃଷ୍ଣଙ୍କୁ ଆକ୍ରମଣ କଲେ । କୃଷ୍ଣଙ୍କୁ ପଛରେ ପକାଇ ବଳଭଦ୍ର ଆଗକୁ ଗଲେ ଏବଂ ଭଙ୍ଗା ଧନୁକୁ ବାଡ଼ି ଭଳି ବୁଲାଇ ସବୁ ପ୍ରହରୀଙ୍କୁ ମାରିଦେଲେ । ଏ ଘଟଣା ଯୋଗୁଁ ଜମା ହୋଇଥିବା ଲୋକେ ଛନ୍ନଛତ୍ର ହୋଇ ପଳାଇଗଲେ । ସବୁଆଡ଼େ ରାମକୃଷ୍ଣଙ୍କ ପ୍ରଶଂସା । ପରେ ଦୁଇଭାଇ ବିଶ୍ରାମ ପାଇଁ ଗଲେ ।

ଧନୁର ପ୍ରଚଣ୍ଡ ଟଙ୍କାର ଶବ୍ଦରେ କଂସ ଖୁବ୍ ଭୟ ପାଇଗଲା । ଏଣେ ଦୂତ ମୁଖରୁ ଦୁଇ ବାଳକଙ୍କର ଅଲୌକିକ କାର୍ଯ୍ୟକଳାପ, ରଜକ ଓ ପ୍ରହରୀମାନଙ୍କ ହତ୍ୟା ସମ୍ବାଦରେ ବିଚଳିତ ହୋଇଉଠିଲା । ସେଦିନ ରାତିରେ କଂସ ବହୁତ ଅଶୁଭ ସ୍ୱପ୍ନ ଦେଖିଲା । ନିଜ ଲୋକମାନଙ୍କୁ ଡକାଇ ଗୁପ୍ତମନ୍ତ୍ରଣା କଲା । ରାମକୃଷ୍ଣଙ୍କୁ କିପରି ହତ୍ୟା କରାଯାଇ ପାରିବ ଏକ ଯୋଜନା କରାଗଲା । ପ୍ରଥମେ ସେ ମହାମାତ୍ର ନାମକ ହାତୀ-ମାହୁନ୍ତକୁ ଡକାଇ ଆଦେଶ ଦେଲା ଯେ ଅହଲ୍ୟା କାଲି 'ରାଜପ୍ରାସାଦର ସିଂହଦ୍ୱାର ନିକଟରେ କୁବଳୟା ନାମକ ପାଟହାତୀକୁ ରଖାଯିବ । ରାମକୃଷ୍ଣ ଆସିବା କ୍ଷଣି କୁବଳୟା ଚଲାଇ ତା' ପାଦତଳେ ଦୁଇଭାଇଙ୍କୁ ପେଷିଦେବାକୁ ହେବ । ମହାମାତ୍ର ଯଥା ଆଜ୍ଞା ମହାରାଜ କହି ଆନନ୍ଦରେ ଗଲା । ଯଦି କୃଷ୍ଣ ବଳରାମ ହାତୀ କବଳରୁ ଦୈବାତ୍ ଖସିଯାଆନ୍ତି ତେବେ ଆୟୋଜିତ ରଙ୍ଗସଭାରେ ସେମାନଙ୍କ ବଳପରୀକ୍ଷା ଛଳରେ ଚାଣୂର, ମୁଷ୍ଟିକ ପ୍ରଭୃତି ଅଠଜଣ ରାକ୍ଷସ ମଲ୍ଲ ଯୋଦ୍ଧାଙ୍କ ଦ୍ୱାରା ମାରି ଦିଆଯିବା ସ୍ଥିର ହେଲା । ମଲ୍ଲ ଯୋଦ୍ଧାମାନେ ଯଦି ରାମକୃଷ୍ଣଙ୍କୁ ମାରିବାରେ ବିଫଳ ହୁଅନ୍ତି ତେବେ କଂସ ନିଜେ ସେମାନଙ୍କୁ ଖଡ୍ଗାଘାତରେ ବଧ କରିବ ବୋଲି ପ୍ରତିଜ୍ଞା କଲା ।

ଦେଖୁ ଦେଖୁ ରାତି ପାହି ସକାଳ ହେଲା । ଧନୁଯାତ୍ରାର ସବୁଠାରୁ ଆକର୍ଷଣୀୟ ରଙ୍ଗସଭାର ପ୍ରସ୍ତୁତି ସରିଲା । ଏଣେ ପୂର୍ବ ରାତିରେ ଦହି କ୍ଷୀର ଇତ୍ୟାଦି ଭେଟି ନେବାପାଇଁ

ନନ୍ଦ, ଯଶୋଦା ଓ ଗୋକୁଳର ଗୋପାଳମାନେ ଆସି ମଥୁରାରେ ପହଞ୍ଚି ସାରିଥାନ୍ତି । କୃଷ୍ଣ ବଳରାମ ସେମାନଙ୍କ ସହିତ ରଙ୍ଗସ୍ଥଳରେ ଯୋଗ ଦେବାପାଇଁ ଆସିଲେ । କିନ୍ତୁ ହଠାତ୍ ସେମାନଙ୍କ ଉପରକୁ କୁବଳୟା ହାତୀ ମାଡ଼ି ଆସିଲା । ଭୟରେ ନନ୍ଦ ଓ ଗୋପାଳମାନେ ଘୁଞ୍ଚିଗଲେ କିନ୍ତୁ ରାମକୃଷ୍ଣ ବୀର ଦର୍ପରେ ହାତୀ ଆଡ଼କୁ ଆଗେଇ ଚଲେ । କୃଷ୍ଣ ହାତୀର ପେଟତଳେ ରହିଗଲେ । ହାତୀ ଶୁଣ୍ଢ ବୁଲାଇ ତାଙ୍କୁ ଖୋଜୁଥାଏ ଓ ଏପଟ ସେପଟ ଦୌଡ଼ୁଥାଏ । କୃଷ୍ଣ ହଠାତ୍ ହାତୀ ପେଟତଳୁ ବାହାରି ଆସି ତା' ଲାଞ୍ଜ ଧରି ଟଣା ଟଣି କଲେ । ହାତୀ ରାଗିଗଲା ଏବଂ କୃଷ୍ଣଙ୍କୁ ଶୁଣ୍ଢରେ ଉଠାଇ ନେଲା । କୃଷ୍ଣ ହାତୀକୁ ଗୋଟାଏ ବ୍ରହ୍ମଚାପୁଡ଼ା କଷି ଦେଲେ ଏବଂ ବଳରାମ ହାତୀର ପଛପଟକୁ ଗୋଟାଏ ବଜ୍ରଭଳି ଲାତ ମାରିଲେ । ହାତୀ କୃଷ୍ଣଙ୍କୁ ତଳେ ପକାଇ ଦେଲା ଓ ନିଜର ବଡ଼ବଡ଼ ଦାନ୍ତରେ ଭୁଷି ଦେବାକୁ ଚେଷ୍ଟାକଲା । ସମସ୍ତେ ହାୟ ହାୟ କରୁଥାନ୍ତି । ମାତ୍ର କୃଷ୍ଣ ହାତୀର ଦାନ୍ତଧରି ଏଭଳି ପ୍ରଚଣ୍ଡ ଝପଦେଲେ ଯେ ଦାନ୍ତଟି ଉପୁଡ଼ି ଗଲା । ବଳଭଦ୍ର ମଧ୍ୟ ଦୌଡ଼ିଆସି ତାହାର ଆଉ ଗୋଟାଏ ଦାନ୍ତ ଉପାଡ଼ି ଦେଲେ । ସେ ଦାନ୍ତରେ ହାତୀର ମର୍ମସ୍ଥାନକୁ ଚିରି ଦେବାରୁ ହାତୀଟା ମରି ତଳେ ଗଡ଼ିଗଲା । ସେହି ଦାନ୍ତ ମାଡ଼ରେ ମାହୁନ୍ତକୁ ମଧ୍ୟ ରାମକୃଷ୍ଣ ବଧ କଲେ । ଚତୁର୍ଦ୍ଦିଗରେ ଦୁଇଭାଇଙ୍କର ଜୟ ଜୟକାର ଶୁଣାଗଲା । ସେ ଶବ୍ଦ କଂସର କାନରେ ପଡ଼ିବା କ୍ଷଣି ସେ ଭ୍ରାନ୍ତ ହତବାକ୍ ହୋଇଗଲା ।

ହାତୀ ରକ୍ତ ଜୁଡ଼ୁବୁଡ଼ୁ ହୋଇ ହାତୀଦାନ୍ତ ଦୁଇଟା କାନ୍ଧରେ ପକାଇ କୃଷ୍ଣ ବଳରାମ ରଙ୍ଗସ୍ଥଳରେ ପ୍ରବେଶ କଲେ । କଂସ ସେମାନଙ୍କୁ ଦେଖି ଛାନିଆ ହୋଇଗଲା । ଅଷ୍ଟମଲ୍ଲଙ୍କୁ ଇସାରା ଦେଲା ଦୁଇଭାଇଙ୍କୁ ଖତମ୍ କରିଦେବା ପାଇଁ ।

ଚାଣୁର ଯାଇ କୃଷ୍ଣଙ୍କୁ କହିଲା—"ତୁମେ ଜଣେ ବୀର ଭଳି ଜଣା ପଡ଼ୁଛ । ଏ ରଙ୍ଗ ସ୍ଥଳରେ ମୋ ସହିତ ମଲ୍ଲଯୁଦ୍ଧ କର । ରାଜା କଂସ ଆନନ୍ଦିତ ହେବେ ଓ ତୁମକୁ ପୁରସ୍କାର ଦେବେ ।"

କୃଷ୍ଣ କହିଲେ—"ତୁମେ ଏତେବଡ଼ ମଲ୍ଲବୀର । ତୁମର ଆକାର ଯେଭଳି ବିରାଟ ବଳ ମଧ୍ୟ ଅନୁରୂପ । ମୁଁ ସାମାନ୍ୟ ବାଳକଟାଏ । ତୁମ ସହିତ ମଲ୍ଲଯୁଦ୍ଧ କରିବା ପାଇଁ ମୋର ବଳ ନାହିଁ ? ଅନ୍ତତଃ ତୁମ ସମାସ୍କନ୍ଧ ହେଲାଭଳି ମୋର ବୟସ ହେଲେ ତୁମସହ ମଲ୍ଲଯୁଦ୍ଧ କଲେ ନ୍ୟାୟସଙ୍ଗତ ହେବ ।"

ଚାଣୁର କହିଲା—"ତୁମେ ନିଜକୁ ବାଳକ ବୋଲି କହି ଏଡ଼ାଇବାକୁ ଚେଷ୍ଟା କଲେ ମଧ୍ୟ ମୁଁ ତୁମକୁ ଛାଡ଼ିବି ନାହିଁ । ତୁମେ ଆମର ବହୁ ରାକ୍ଷସ ବୀରଙ୍କୁ ମାରିଛ । କୁବଳୟା ଭଳି ବିରାଟ ହାତୀକୁ ମାରିଛ । ତୁମକୁ ହତ୍ୟାକଲେ ମହାରାଜ କଂସ ଶାନ୍ତି ପାଇବେ । ଆସିଲ ଦେଖି ତୁମର କେତେବଳ ?" ଚାଣୁର କୃଷ୍ଣଙ୍କୁ ଆକ୍ରମଣ କଲା । ଏଣେ ଅନ୍ୟ ମଲ୍ଲ ମୁଷ୍ଟିକ ମଧ୍ୟ ବଳରାମଙ୍କୁ ଆକ୍ରମଣ କଲା । ଭୀଷଣ ତୁମୁଳ ସଂଗ୍ରାମ । ବିରାଟକାୟ ମଲ୍ଲବୀର ମାନଙ୍କ ସହିତ ଦୁଇଟି କିଶୋରଙ୍କ ଯୁଦ୍ଧ ଯେଭଳି ଅସଙ୍ଗତ ସେହିଭଳି ଅନ୍ୟାୟ ମଧ୍ୟ । ଲୋକେ ପ୍ରତିବାଦ କଲେ ମଧ୍ୟ ତାହା କଂସ କର୍ଣ୍ଣପାତ କଲନାହିଁ । ସମସ୍ତେ ଭଗବାନଙ୍କୁ

ଡ଼ାକୁଥାନ୍ତି ବାଳକ ଦ୍ୱୟଙ୍କର ସୁରକ୍ଷା ପାଇଁ। ମାତ୍ର ସ୍ୱୟଂ ଭଗବାନ ଯେଉଁଠି ରାକ୍ଷସ ଧ୍ୱଂସ ପାଇଁ ଅବତାର ଗ୍ରହଣ କରିଛନ୍ତି ସେଠି ଆଶଙ୍କାର ସ୍ଥାନ କାହିଁ ? ଅତି ଅଳ୍ପ ସମୟ ମଧ୍ୟରେ କୁସ୍ତି ଓ ମୁଷ୍ଟି ଆଘାତରେ କୃଷ୍ଣ ବଳରାମ ଚାଣୁର ଓ ମୁଷ୍ଟିକକୁ ମାରିଦେଲେ। ତାପରେ କୂଟ, ଶଳ, ତୋଷଳ ପ୍ରଭୃତି ରାମକୃଷ୍ଣଙ୍କୁ ଆକ୍ରମଣ କଲେ ମାତ୍ର କ୍ଷଣକ ମଧ୍ୟରେ ପ୍ରାଣ ହରାଇଲେ। ଅନ୍ୟ ମଲ୍ଲମାନେ ପ୍ରାଣଭୟରେ ରଙ୍ଗସଭା ଛାଡ଼ି ପଳାଇ-ଗଲେ।

କଂସ ଏ ଦୃଶ୍ୟରେ ସ୍ତବ୍ଧ ହୋଇଗଲା। କ୍ରୋଧ ଓ ଭୟରେ ସେ ଥରିବାକୁ ଲାଗିଲା। ନିଜର [illegible] ଅନୁଚରଙ୍କୁ ଆଦେଶ ଦେଲା—"କୃଷ୍ଣ ଓ ବଳରାମ ମଥୁରାକୁ ଆସି ବହୁତ ଅତ୍ୟାଚାର କଲେଣି। ତୁମ୍ଭେମାନେ ସେ ଦୁହିଁଙ୍କୁ ହତ୍ୟାକର। ତା ସଙ୍ଗେ ସଙ୍ଗେ ନନ୍ଦ, ସମସ୍ତ ଗୋପାଳ, ଦେବକୀ, ବସୁଦେବ, ଉଗ୍ରସେନ ସମସ୍ତଙ୍କ ମୁଣ୍ଡ ହାଣି ମାରି-ପକାଅ।

ମାତ୍ର ଅନୁଚରମାନେ ଆସିବା ପୂର୍ବରୁ କୃଷ୍ଣ କଂସର ସିଂହାସନ ଉପରକୁ ଉଠିଗଲେ। ସେପର୍ଯ୍ୟନ୍ତ କଂସର ସାମନା କରିବା ପାଇଁ କେହି ସାହସ କରିନଥିଲେ। କଂସ ଏଥିରେ ଆଶ୍ଚର୍ଯ୍ୟ ହେଲା। ଶତ୍ରୁ କୃଷ୍ଣକୁ ହତ୍ୟାକରିବା ପାଇଁ ହୁଂକାର ନାଦ କରି ଖଣ୍ଡା ଉଠାଇ ଆସନରୁ ଉଠିପଡ଼ିଲା। ମାତ୍ର କୃଷ୍ଣ କଂସର କେଶଗୁଚ୍ଛ ଧରି ପକାଇଲେ। କଂସ ଆଖିତରାଟି କୃଷ୍ଣଙ୍କ ମୁହଁକୁ ଚାହିଁଦେବାରୁ ତା'ର ସମସ୍ତ ଶକ୍ତି ଲୋପପାଇଲା। ସେ କୃଷ୍ଣଙ୍କୁ ଠେଲିଦେବା ପାଇଁ ଶେଷ ଚେଷ୍ଟା କଲା ମାତ୍ର କୃଷ୍ଣ ତାହାକୁ ଠେଲିଦେଲେ। କଂସ ମଞ୍ଚ ଉପରୁ ତଳକୁ ଖସିପଡ଼ିଲା। କୃଷ୍ଣ ମଧ୍ୟ ମଞ୍ଚରୁ ଡେଇଁ କଂସର ଛାତି ଉପରେ ବସି-ଗଲେ। କୃଷ୍ଣଙ୍କ କମଳ ନୟନକୁ ଚାହିଁବା ସମୟରେ କଂସର ପ୍ରାଣବାୟୁ ଚକ୍ଷୁ ଦେଇ ଚାଲିଗଲା। କଂସ ମରିବା ଦେଖି ଅନ୍ୟାନ୍ୟ ରାକ୍ଷସ ରାଜାମାନେ ପଳାଇଗଲେ। କଂସର ଅନ୍ୟ ଭାଇ କଙ୍କ, ନ୍ୟଗ୍ରୋଧ ପ୍ରଭୃତି ରାମକୃଷ୍ଣଙ୍କୁ ଆକ୍ରମଣକଲେ ମାତ୍ର ପ୍ରାଣବିସର୍ଜନ କଲେ।

ରାମ-କୃଷ୍ଣ ପିତା ମାତା ବସୁଦେବ ଓ ଦେବକୀଙ୍କ ସହ ସାକ୍ଷାତ କଲେ। ଦୀର୍ଘଦିନ ପରେ ମମତାମୟ ଏହି ପାରିବାରିକ ମିଳନର ଆନନ୍ଦ ଅବର୍ଣ୍ଣନୀୟ। ସନ୍ତାନର ସହିତ ବସୁଦେବ ଓ ଦେବକୀଙ୍କୁ ବନ୍ଦୀମୁକ୍ତ କରାଗଲା। ଭୋଜବଂଶର ରାଜାରୂପେ ଉଗ୍ରସେନଙ୍କୁ ଶ୍ରୀକୃଷ୍ଣ ଅଭିଷିକ୍ତ କଲେ। କଂସର ବିନାଶ ଯୋଗୁଁ ସର୍ବତ୍ର ଶାନ୍ତି ଫେରିଆସିଲା।

କୃଷ୍ଣ ବଳରାମଙ୍କ ବାଲ୍ୟକାଳ କ୍ରମଶଃ ଶେଷହୋଇ ଆସୁଥିଲା। ଗୁରୁଜନମାନଙ୍କ ପରାମର୍ଶ କ୍ରମେ ସେମାନେ ଉଚ୍ଚଶିକ୍ଷା ପାଇଁ ମନବଳାଇଲେ। ସେତେବେଳେ ଅବନ୍ତୀପୁର ନିବାସୀ ଶାନ୍ତିଦେବ ବା ସନ୍ଦୀପନ ନାମକ ଜଣେ ବ୍ରାହ୍ମଣ ବିଦ୍ୟାଗୁରୁ ରୂପେ ଖ୍ୟାତି ଅର୍ଜନ କରିଥିଲେ। କୃଷ୍ଣ ବଳରାମ ତାଙ୍କ ନିକଟକୁ ଯାଇ ଶିଷ୍ୟତ୍ୱ ଗ୍ରହଣ କଲେ। ଗୁରୁ ବିଦ୍ୟା-

ଦାନ କଲେ । ମାତ୍ର ଚଉଷଠି ଦିନରେ ଚାରି ବେଦ, ବାରଦିନ ମଧ୍ୟରେ ଧର୍ମ ଶାସ୍ତ୍ର, ତର୍କ, ନ୍ୟାୟ, ଗଣିତ , ଗାନ୍ଧର୍ବ୍ୟ, ପନ୍ଦର ଦିନ ମଧ୍ୟରେ ଅସ୍ତ୍ର ଶସ୍ତ୍ର ଚାଳନା ଶିକ୍ଷାରେ ଧୁରନ୍ଧର ହୋଇଗଲେ । ଶିକ୍ଷା ଶେଷ ହେବାପରେ 'ଆଶ୍ରମରୁ ସେମାନଙ୍କ ବିଦାୟବେଳା ଆସିଗଲା । ଦୁହେଁ ଗୁରୁଙ୍କୁ ବିନମ୍ର ସ୍ୱରରେ ଗୁରୁଦକ୍ଷିଣା ମାଗିବା ପାଇଁ ଅନୁରୋଧ କଲେ । ଗୁରୁ ଜାଣି-ଥିଲେ ତାଙ୍କର ଏହି ଶିଷ୍ୟଦ୍ୱୟ ସ୍ୱୟଂ ଭଗବାନଙ୍କ କଳା ନେଇ ଅବତରିଛନ୍ତି । ସେ କହିଲେ—" ବତ୍ସ ! ତୁମ୍ଭଙ୍କ କୃପାରୁ ମୋର ସବୁ ଅଛି ହେଲେ ପୁତ୍ର ଶୋକରେ ମୁଁ ଅଧୀର ହୋଇପଡ଼ିଛି । ମୋର ପୁତ୍ର ସମୁଦ୍ରରେ ସ୍ନାନ କରିବା ସମୟରେ ନିଖୋଜ ହୋଇ-ଗଲା । ସେ ମୃତ କି ଜୀବିତ ଏପର୍ଯ୍ୟନ୍ତ ମୁଁ ଜାଣିପାରି ନାହିଁ । ଯଦି ମୋତେ ଗୁରୁଦକ୍ଷିଣା ଦେବାପାଇଁ ତୁମେ ଏକାନ୍ତ ଇଚ୍ଛୁକ ତେବେ ମୋର ହଜିଲା ପୁତ୍ରକୁ ମୋ ପାଇଁ ଆଣି ଦିଅ ।"

କୃଷ୍ଣ ଶପଥକରି କହିଲେ—"ଗୁରୁଦେବ ! ଆପଣଙ୍କ ଇଚ୍ଛା ମୁଁ ନିଶ୍ଚୟ ପୂରଣ କରିବି ।" ସେଠୁ କୃଷ୍ଣ ପ୍ରଥମେ ସମୁଦ୍ର ରାଜା ବରୁଣଙ୍କ ପାଖକୁ ଗଲେ ଏବଂ ନିଜର ଉଦ୍ଦେଶ୍ୟ ପ୍ରକାଶ କଲେ । ବରୁଣ ଦେବତା ହାତଯୋଡ଼ି କହିଲେ ପ୍ରଭୁ ଆପଣଙ୍କ ଗୁରୁପୁତ୍ରକୁ ଶଙ୍ଖାସୁରର ପୁତ୍ର ପଞ୍ଚଜନ୍ୟ ଅସୁର ଗିଳିଦେବାରୁ ତା'ର ମୃତ୍ୟୁ ହୋଇଛି । ଏଥିରେ ମୁଁ ଆଉ କିଛି କରିବା ଉପାୟନାହିଁ । କୃଷ୍ଣ ସଙ୍ଗେ ସଙ୍ଗେ ପଞ୍ଚଜନ୍ୟ ଅସୁରର ସନ୍ଧାନ ନେଲେ । ବିସ୍ତୃତକାୟ ଶଙ୍ଖ ଆକାର ଦେହରେ ସେ ଅସୁର ସମୁଦ୍ରତଳେ ରହିଥାଏ । କୃଷ୍ଣ ତାହାକୁ ଠାବ କରି କହିଲେ—"ରେ ଅସୁର ପଞ୍ଚଜନ୍ୟ ! ଗୁରୁ ସନ୍ଦୀ-ପନଙ୍କ ପୁତ୍ରକୁ ତୁ ଗିଳି ଦେଇଥିବା କଥା ମୁଁ ଜାଣିପାରିଛି । ତୁରନ୍ତ ସେ ପୁତ୍ରକୁ ସମର୍ପଣ କର ନଚେତ୍ ଚକ୍ର ଦ୍ୱାରା ତୋତେ ଖଣ୍ଡ ଖଣ୍ଡ କରି ପକାଇବି ।

କୃଷ୍ଣଙ୍କର କୋପମୂର୍ତ୍ତି ଦେଖି ଅସୁର ଡରିଗଲା । ହାତଯୋଡ଼ି କହିଲା—"ପ୍ରଭୁ ! ଖାଦ୍ୟ ପାଇଁ ପ୍ରାଣୀ ପ୍ରାଣୀକୁ ମାରି ଖାଇବାଟା ଆପଣଙ୍କ ସୃଷ୍ଟିର ନିୟମ । ମୋ ଖାଦ୍ୟ ଭାବି ମଣିଷ ପିଲାଟିକୁ ଖାଇଯାଇଛି । ସେଇଟି ଆପଣଙ୍କ ଗୁରୁଙ୍କ ପୁଅ ବୋଲି ମୁଁ ବା କାହିଁକି ଜାଣନ୍ତି ? କେଉଁ ଦିନରୁ ସେ ବାଳକ ମୋ ପେଟରେ ଜୀର୍ଣ୍ଣ ହୋଇଗଲାଣି । ତାକୁ ଯମ ଦେବତା ମୃତ୍ୟୁପୁରୀକୁ ନେଇ ଯାଇଛନ୍ତି । ମୋତେ କ୍ଷମା କରନ୍ତୁ । ଆପଣ ଯମଙ୍କଠାରୁ ସେ ବାଳକକୁ ଫେରି ପାଇବେ ।"

ପଞ୍ଚଜନ୍ୟର ବିନମ୍ର ବଚନରେ କୃଷ୍ଣ ସନ୍ତୋଷ ହେଲେ ଏବଂ ଗୋଟିଏ ବର ମାଗିନେବାକୁ କହିଲେ । ପଞ୍ଚଜନ୍ୟ କହିଲା—"ପ୍ରଭୁ ! ମୋର ଶଙ୍ଖାକୃତି ଏହି ଦେହରୁ ପାଞ୍ଚପ୍ରକାର ବିଜୟ ଓ ମଙ୍ଗଳ ସୂଚକ ଶବ୍ଦ ବାହାରେ । ମୋତେ ଆପଣ ସଦାସର୍ବଦା ଆପଣଙ୍କ କର କମଳରେ ସ୍ଥାନ ଦିଅନ୍ତୁ । କୃଷ୍ଣ କହିଲେ ତଥାସ୍ତୁ ! କୃଷ୍ଣଙ୍କ ବର ମହିମାରେ ପଞ୍ଚଜନ୍ୟ ଅସୁରର ବିସ୍ତୃତକାୟ ଦେହଟି ଗୋଟିଏ ସୁନ୍ଦର ଶ୍ରେଷ୍ଠ ଶଙ୍ଖରେ ପରିଣତ ହେଲା ଓ ଶ୍ରୀକୃଷ୍ଣ ସେ ଶଙ୍ଖଟି ସେହିଦିନଠାରୁ ଧାରଣ କଲେ ।

ତା ପରେ କୃଷ୍ଣ ଯାଇ ଯମପୁରରେ ପହଞ୍ଚିଲେ । ଯିବା ସମୟରେ ପାଞ୍ଚଜନ୍ୟ ଶଙ୍ଖରୁ ସୁମଧୁର ଧ୍ୱନି କଲେ । ସେ ପବିତ୍ର ଶଙ୍ଖଧ୍ୱନି ଯାହାକାନରେ ବାଜିଲା ଯମପୁରୀର ସେ ମୁକ୍ତ ହୋଇ ବୈକୁଣ୍ଠକୁ ଗଲା । ଯମଦେବତା ସଦଳବଳେ କୃଷ୍ଣଙ୍କୁ ଦର୍ଶନ କଲେ ଏବଂ ଆଗମନ ଉଦ୍ଦେଶ୍ୟ ପଚାରିଲେ । କୃଷ୍ଣ ତାଙ୍କ ଗୁରୁପୁତ୍ରଙ୍କୁ ଫେରାଇଦେବା ପାଇଁ କହିଲେ । ଭଗବାନଙ୍କ ଆଦେଶ ଅବମାନନା କରିବା ସମ୍ଭବ ନୁହେଁ । ଯମଦେବତା ଗୁରୁପୁତ୍ରଙ୍କୁ ଫେରାଇ ଦେଲେ । କୃଷ୍ଣ ଗୁରୁଙ୍କୁ ଆଣି ଗୁରୁପୁତ୍ରଙ୍କୁ ସମର୍ପଣ କଲେ । ଗୁରୁ ସନ୍ତୋଷ ହୋଇ କୃଷ୍ଣ ଓ ବଳରାମଙ୍କୁ ଅଜସ୍ର ଆଶୀର୍ବାଦ ଢାଳିଦେଲେ । ସେମାନେ ବିଦ୍ୟାବାନ୍ ହୋଇ ଯଥାସମୟରେ ମଥୁରା ଫେରିଲେ ।

କଂସର ଶ୍ୱଶୁର ଥିଲା ମହାବୀର ଜରାସନ୍ଧ । କଂସର ମୃତ୍ୟୁ ପରେ ତା'ର ଦୁଇଝିଅ ହେଡ ଓ ପ୍ରହେଡ ବିଧବା ହୋଇ ବାପଘରକୁ ଚାଲିଗଲେ । ଜରାସନ୍ଧ କୃଷ୍ଣଙ୍କ ପ୍ରତିଶୋଧ ନେବାପାଇଁ ମଥୁରା ନଗରୀ ଆକ୍ରମଣ କଲା । ଭୀଷଣ ଯୁଦ୍ଧ ହେଲା । ଜରାସନ୍ଧ ହାରିଯାଇ ପଳାୟନ କଲା । ଥରେ ନୁହେଁ ଦୁଇଥର ନୁହେଁ ସତର ଥର ମଥୁରା ଆକ୍ରମଣ କରି କୃଷ୍ଣଙ୍କୁ ମାରିବା ପାଇଁ ଜରାସନ୍ଧ ଉଦ୍ୟମ କଲା । ମାତ୍ର କୃଷ୍ଣଙ୍କ ହାତରେ ଜରାସନ୍ଧର ମୃତ୍ୟୁ ହେବା ବିଧିର ବିଧାନ ନଥିବାରୁ କୃଷ୍ଣ ତାହାକୁ ନମାରି ଛାଡ଼ିଦେଉଥାନ୍ତି । ମାତ୍ର ଏହି ଯୁଦ୍ଧ ଫଳରେ ଜରାସନ୍ଧର ଅନେକ ସେନାବାହିନୀର ଲକ୍ଷ ଲକ୍ଷ ଦୁଷ୍ଟ ରାକ୍ଷସ ବୀରଙ୍କୁ କୃଷ୍ଣ ନିପାତ କରି ମେଦିନୀ ଭାର ଉଶ୍ୱାସ କରିବାରେ ଲାଗିଥାନ୍ତି ।

କାଳଯବନ ନାମକ ଆଉ ଜଣେ ପରାକ୍ରମୀ ରାକ୍ଷସ ଥାଏ । ଜରାସନ୍ଧ ସହ ତାହାର ବନ୍ଧୁତା ଥିଲା । ଦେବକାର୍ଯ୍ୟ କରିବାପାଇଁ ନାରଦ ଜରାସନ୍ଧ ଓ କାଳଯବନ ଭିତରେ ମଧ୍ୟସ୍ଥତା କରି କୃଷ୍ଣଙ୍କୁ ମାରିବା ପାଇଁ କାଳଯବନକୁ ପଠାଇଦେଲେ । କୃଷ୍ଣ କାଳଯବନକୁ ନିଜେ ମାରିବା ତଥା ବିଧି ନିର୍ଦ୍ଦେଶ ନଥିବାରୁ ମରାଇବା ପାଇଁ କୌଶଳ ପ୍ରୟୋଗ କଲେ । ସେ ଯୁଦ୍ଧ କ୍ଷେତ୍ରରେ କୌଣସି ଅସ୍ତ୍ର ଶସ୍ତ୍ର ନ ଧରି କେବଳ ବଂଶୀ ଓ ପାଞ୍ଚଜନ୍ୟ ଶଙ୍ଖଟି ଧରି ଛିଡ଼ା ହେଲେ । କାଳଯବନ କୃଷ୍ଣଙ୍କୁ ନିରସ୍ତ୍ର ଦେଖି ଅସ୍ତ୍ରତ୍ୟାଗକଲା ଓ ତାହାଙ୍କୁ ମଲ୍ଲଯୁଦ୍ଧରେ ପରାସ୍ତ କରିବ ବୋଲି ଆଗେଇ ଆସିଲା । କୃଷ୍ଣ ଡରିଯାଇ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବା ଛଳନା କଲେ । ରାକ୍ଷସ ବା କୃଷ୍ଣଙ୍କ କପଟ ଜାଣିବ କୁଆଡ଼ୁ ? ସେ ତାଙ୍କ ପଛେ ପଛେ ଗୋଡ଼ାଇଲା । କୃଷ୍ଣ ଦୌଡ଼ିଯାଇ ଏକ ପର୍ବତ ମଧ୍ୟରେ ଲୁଚିଗଲେ । କାଳଯବନ ମଧ୍ୟ ଗୁମ୍ଫା ମଧ୍ୟରେ ପଶିଗଲା । ଅନ୍ଧାର ମଧ୍ୟରେ ଏକ ମନୁଷ୍ୟ ମୂର୍ତ୍ତି ବସିଥିବା ଭାବି କୃଷ୍ଣଙ୍କୁ ପଦାଘାତ କଲା । ମାତ୍ର ସେ ଥିଲେ ରାଜର୍ଷି ମୁଚୁକୁନ୍ଦ । ଯୋଗନିଦ୍ରାରେ ସେ ଭଗବାନଙ୍କୁ ଧ୍ୟାନ କରୁଥିଲେ । ଅତର୍କିତ ପଦାଘାତରେ ତାଙ୍କର ଧ୍ୟାନ ଭାଙ୍ଗିଗଲା । ସେ କ୍ରୋଧରେ ଯେମିତି ଆଖିଖୋଲି ଚାହିଁଦେଲେ ସେ କ୍ରୋଧାଗ୍ନିରେ କାଳଯବନ ପୋଡ଼ି ଭସ୍ମ ହୋଇଗଲା ।

ମୁଚୁକୁନ୍ଦ ଥିଲେ ସତ୍ୟଯୁଗର ରାଜା ମାନଧାତାଙ୍କ ପୁତ୍ର । ଦେବତା ଓ ଅସୁର ମାନଙ୍କ ମଧ୍ୟରେ ସେ ଯୁଗରେ ଯେଉଁ ଭୟଙ୍କର ଯୁଦ୍ଧ ହୋଇଥିଲା ମୁଚୁକୁନ୍ଦ ଦେବତାମାନଙ୍କୁ ସାହାଯ୍ୟ କରିଥିଲେ । ଦେବତାମାନେ ତାଙ୍କଉପରେ ସନ୍ତୁଷ୍ଟ ହୋଇ ଏକ ବର ମାଗିବାରୁ ମୁଚୁକୁନ୍ଦ ପରମାତ୍ମାଙ୍କ ଦେହରେ ଲୀନ ହୋଇଯିବା ପାଇଁ ବର ପ୍ରାର୍ଥନା କଲେ । ମାତ୍ର ଏହା ଦେବତାମାନଙ୍କ ଶକ୍ତିର ବାହାରେ । ସେମାନେ ଦ୍ୱାପରଯୁଗ ପର୍ଯ୍ୟନ୍ତ ମୁଚୁକୁନ୍ଦଙ୍କୁ ଅପେକ୍ଷା କରିବାକୁ କହିଲେ । ସ୍ୱୟଂପରଂବ୍ରହ୍ମ ନାରାୟଣ କୃଷ୍ଣଅବତାର ବେଳେ ମୁଚୁକୁନ୍ଦଙ୍କୁ ଦର୍ଶନ ଦେଲେ ସେ କୈବଲ୍ୟ ମୁକ୍ତି ପାଇପାରିବେ ବୋଲି ପରାମର୍ଶ ଦେଲେ । ମୁଚୁକୁନ୍ଦ ଏକ ଗୁମ୍ଫା ଭିତରେ ଯୋଗନିଦ୍ରାରେ ବିଷ୍ଣୁ ସ୍ମରଣ କରି ଏତେ ଦୀର୍ଘକାଳ ରହିବେ ବୋଲି ଇଚ୍ଛା ପ୍ରକଟ କରିବାରୁ ଦେବତାମାନେ ତାଙ୍କୁ ସେହି ବର ଦେଇଥିଲେ । ଯଦି ତାଙ୍କର ଯୋଗନିଦ୍ରା କେହି ଭଙ୍ଗକରେ ତେବେ ତାଙ୍କ କ୍ରୋଧାଗ୍ନିରେ ସେ ଜଳି ଭସ୍ମ ହୋଇଯିବ ବୋଲି ଦେବତାମାନେ କହିଥିଲେ । ଏତେ କାଳପରେ ଯେପରି ଘଟଣା ଘଟି କାଳଯବନ ଭସ୍ମ ହେଲା । କୃଷ୍ଣ ମୁଚୁକୁନ୍ଦଙ୍କୁ ଦର୍ଶନ ଦେଲେ ଓ ମୁଚୁକୁନ୍ଦ ପରମମୁକ୍ତି ପାଇ କୃଷ୍ଣଙ୍କ ଶରୀରରେ ଲୀନ ହୋଇଗଲେ ।

ବୈକୁଣ୍ଠର ଦ୍ୱାରପାଳ ଜୟ ବିଜୟ ସେମାନଙ୍କ ଅଭିଶପ୍ତ ଜୀବନର ତୃତୀୟ ଜନ୍ମ ପାଇଲେ ଚେଦି ଦେଶର ରାଜା ଦମଘୋଷଙ୍କ ପୁତ୍ର ରୂପେ । ସେମାନଙ୍କର ନାମ ଥିଲା ଶିଶୁ-ପାଳ ଓ ଦନ୍ତବକ୍ର । ଶିଶୁପାଳର ଜନ୍ମ ସମୟରେ ତାହାର ଦୁଇଟି ହାତ ଓ ମୁହଁରେ ତିନୋଟି ଆଖିଥାଏ । ଜନ୍ମ ବେଳାରେ ଆକାଶବାଣୀ ହୋଇଥିଲା ଯେ ଏହି ଶିଶୁଟିକୁ ଯିଏ ସ୍ପର୍ଶ କରିବା ମାତ୍ରେ ଏହାର ରୂପ ସ୍ୱାଭାବିକ ହେବ ସେହି ଲୋକହାତରେ ହିଁ ଶିଶୁପାଳର ମୃତ୍ୟୁ ହେବ । ଶିଶୁପାଳର ମା' କୃଷ୍ଣ ବଳରାମଙ୍କର ଲେଖାରେ ପିଉସୀ । କୃଷ୍ଣ ଏକଦା ପିଉସୀ ଘରକୁ ବୁଲି ଯାଇଥିବା ବେଳେ ଶିଶୁପାଳର ଅଦ୍ଭୁତ ଚେହେରା ଦେଖି କୌତୁହଳରେ ତାକୁ କୋଳ କରିପକାଇଲେ । କୃଷ୍ଣଙ୍କ ହାତ ବାଜିବା କ୍ଷଣି ଶିଶୁପାଳର ତୃତୀୟ ଚକ୍ଷୁ ଓ ଦୁଇଟି ହାତ ଉଭେଇଗଲା । ଓ ତା'ର ରୂପସ୍ୱାଭାବିକ ହୋଇଗଲା । ତା'ର ମା' କୃଷ୍ଣଙ୍କୁ ଆକାଶବାଣୀ କଥା କହି ଅନୁରୋଧ କଲେ ଯେ ଶିଶୁପାଳର ଶହେଟି ଦୋଷ କୃଷ୍ଣ କ୍ଷମା କରିବେ । କୃଷ୍ଣ ବଚନବଦ୍ଧ ହେଲେ ।

ଶିଶୁପାଳ ଥିଲା ଯେପରି ଉଦ୍ଧତ ସେହିପରି ଅହଂକାରୀ । ରାକ୍ଷସ ହୋଇ ଜାତ ହୋଇଥିବାରୁ ଦେହରେ ଅପରିସୀମ ବଳ ସାଙ୍ଗକୁ ପୁଣିରହିଥିଲା ସମସ୍ତ ପ୍ରକାର ବଦ୍‌ଗୁଣ । ଜରାସନ୍ଧ ସହିତ ତାଙ୍କର ବନ୍ଧୁତା ଥାଏ । କୃଷ୍ଣ ହିଁ ତା'ର ମୃତ୍ୟୁର କାରଣ ବୋଲି ନାରଦଙ୍କ ଠାରୁ ଆଗରୁ ଶୁଣିପାରି ଶିଶୁପାଳ କୃଷ୍ଣଙ୍କ ବିନାଶ ପାଇଁ ଜରାସନ୍ଧ ସହ ହାତ ମିଳାଇଲା । ମଥୁରା ନଗରୀକୁ ମିଳିତ ଭାବେ ଆକ୍ରମଣ କରି କୃଷ୍ଣ ବଳରାମଙ୍କୁ ଯାଦବ ମାନଙ୍କ ସହ ନିର୍ମୂଳ କରିବା ପାଇଁ ଯୋଜନା ହେଲା ।

ଗୁପ୍ତଚରଠାରୁ ଏ ଖବର ପାଇବା ପରେ ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କୁ ଡାକି ନିର୍ଦ୍ଦେଶ ଦେଲେ ସମୁଦ୍ର ଭିତରେ ଦ୍ୱାଦଶ ଯୋଜନ ପରିମିତ ସ୍ଥାନରେ ମଥୁରା ଭଳି ଏକ ସର୍ବାଙ୍ଗ ସୁନ୍ଦର ନଗରୀ ନିର୍ମାଣ କରିଦେବା ପାଇଁ। ବରୁଣଙ୍କୁ କୃଷ୍ଣ ନିଜର ମନକଥା କହିବା'ରୁ ବରୁଣ ଦେବତା ସମୁଦ୍ର ଭିତରେ ଦ୍ୱାଦଶ ଯୋଜନ ପରିମିତ ଏକ ସ୍ଥଳଭାଗ ସୃଷ୍ଟି କରିଦେଲେ। ବିଶ୍ୱକର୍ମା ନିର୍ମାଣ କଲେ ଦ୍ୱାରକାନଗରୀ।

ଯଥା ସମୟରେ ଜରାସନ୍ଧ ଓ ଶିଶୁପାଳ ମଥୁରା ଆକ୍ରମଣ କଲେ। ଲୁଟ୍ କରିବା ସାଙ୍ଗକୁ ନଗରରେ ନିଆଁ ଲଗାଇ ଦିଆଗଲା ମାତ୍ର ତା'ର ବହୁ ପୂର୍ବରୁ ଶ୍ରୀକୃଷ୍ଣ ବଳରାମ ଓ ଯାଦବମାନେ ଦ୍ୱାରକା ଚାଲି ଯାଇଥିଲେ। ମଥୁରା ନଗରୀ ଧ୍ୱଂସ ହେବାରୁ କୃଷ୍ଣ ବଳରାମ ଓ ଯାଦବମାନେ ମଧ୍ୟ ମୃତ୍ୟୁବରଣ କରିଛନ୍ତି ଭାବି ଜରାସନ୍ଧ ଓ ଶିଶୁପାଳ ଆନନ୍ଦରେ ଫେରିଗଲେ। ମାତ୍ର କୃଷ୍ଣ ଦ୍ୱାରକାରେ ରହି ପାଞ୍ଚଜନ୍ୟ ଶଙ୍ଖନାଦ କରିବାରୁ କୃଷ୍ଣ ଜୀବିତ ଥିବା ଜାଣି ସେମାନେ ହତାଶ ହେଲେ। ଜରାସନ୍ଧ ଦ୍ୱାରକା ଆକ୍ରମଣ ପାଇଁ ଚେଷ୍ଟା ଯେ ନକଲା ତା'ନୁହେଁ କିନ୍ତୁ ବିଫଳ ହେଲା।

ବିଦର୍ଭର ରାଜା ଥିଲେ ଭୀଷ୍ମକ। ତାଙ୍କର ଝିଅ ରୁକ୍ମିଣୀ ଥିଲେ ଲକ୍ଷ୍ମୀ ଅଂଶରୁ ଜାତ କନ୍ୟା। ସେ ପିଲାଦିନରୁ କୃଷ୍ଣଙ୍କ ଅଲୌକିକ କାର୍ଯ୍ୟାବଳୀ ଶୁଣି ତାଙ୍କୁ ସ୍ୱାମୀରୂପେ ମନେ ମନେ ବରଣ କରି ସାରିଥିଲେ। ମାତ୍ର ତାଙ୍କର ବିବାହ ବୟସ ହେବାରୁ ତାଙ୍କର ଭାଇ ରୁକ୍ମ ନିଜର ବାଲ୍ୟବନ୍ଧୁ ଶିଶୁପାଳଙ୍କୁ ବର ନିରୂପଣ କଲେ। ଏହା ଜାଣିବା ପରେ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ପାଖକୁ ଜଣେ ବିଶ୍ୱାସୀ ବ୍ରାହ୍ମଣ ଦ୍ୱାରା ତାଙ୍କୁ ତୁରନ୍ତ ବାପଘରୁ ବଳପ୍ରୟୋଗ କରି ନେଇଯିବାକୁ ଖବର ପଠାଇଲେ। ବିବାହ ଦିନ ରୁକ୍ମିଣୀ ନିଜର କୁଳପ୍ରଥା ଅନୁସାରେ କନ୍ୟାବେଶରେ ଇଷ୍ଟଦେବୀ ଭବାନୀଙ୍କ ମନ୍ଦିରକୁ ପୂଜା ଅର୍ଚ୍ଚନା ପାଇଁ ଗଲେ। ଫେରିବା ବେଳେ କୃଷ୍ଣ ହଠାତ୍ ସେଠାରେ ପହଞ୍ଚି ରୁକ୍ମିଣୀଙ୍କୁ ନିଜ ରଥରେ ବସାଇ ନେଇଗଲେ। ବରବେଶ ସାଜି ଆସିଥିବା ଶିଶୁପାଳର ସମସ୍ତ ସପନ ମଉଳିଲା। କ୍ରୋଧାନ୍ଧ ହୋଇ ସେ କୃଷ୍ଣଙ୍କୁ ଆକ୍ରମଣ କଲା। ଭୀଷ୍ମକଙ୍କ ସୈନ୍ୟମାନେ ମଧ୍ୟ ଯୁଦ୍ଧ ଘୋଷଣା କଲେ। ମାତ୍ର ପୂର୍ବରୁ ବଳରାମ ଯାଦବ ସେନାମାନଙ୍କୁ ଧରି ଏଥିପାଇଁ ପ୍ରସ୍ତୁତ ଥିଲେ। କୃଷ୍ଣ ବଳରାମ ପ୍ରବଳ ଯୁଦ୍ଧ ଚଳାଇ ଶତ୍ରୁମାନଙ୍କୁ ସମ୍ପୂର୍ଣ୍ଣ ଭାବେ ପରାସ୍ତ କଲେ। ଦ୍ୱାରକାରେ ମହା ଆଡ଼ମ୍ବରରେ ରୁକ୍ମିଣୀଙ୍କ ସହିତ ଶ୍ରୀକୃଷ୍ଣଙ୍କ ବିବାହ ସମ୍ପନ୍ନ ହେଲା।

ଯଦୁ ନଗରର ରାଜା ଥିଲେ ସତ୍ରାଜିତ। ସେ ଥିଲେ ସୂର୍ଯ୍ୟଭକ୍ତ। ଭଗବାନ ସୂର୍ଯ୍ୟ ତାଙ୍କ ଉପରେ ପ୍ରୀତ ହୋଇ ତାଙ୍କୁ ଗୋଟିଏ 'ସୂର୍ଯ୍ୟକାନ୍ତମଣି' ଉପହାର ଦେଲେ। ଏହାର ଅନ୍ୟନାମ ସ୍ୟମନ୍ତକ ମଣି। ସେ ମଣିର ତେଜ ସୂର୍ଯ୍ୟ କିରଣ ଭଳି ପ୍ରଖର। ଅନ୍ଧାର ଘରେ ରଖିଲେ ଅନ୍ଧକାର ହଟିଯାଉଥାଏ। ସତ୍ରାଜିତ ସେ ମଣିକୁ ଦୈନିକ ଷୋଡ଼ଶ ଉପଚାରରେ ପୂଜା କରୁଥାନ୍ତି। ପ୍ରତିଦିନ ଆଠଭାର ସୁନା ସେ ମଣିରୁ ଜାତ ହେଉଥାଏ।

ଫଳତଃ ଶତ୍ରାଜିତ ବହୁ ସମ୍ପଦର ଅଧିକାରୀ ହୋଇଗଲେ । ରାଜ୍ୟରୁ ଦୁଃଖ, କଷ୍ଟ, ଗରିବୀ ଦୂରିଗଲା । ତାଙ୍କ କୋଳରେ ଲକ୍ଷ୍ମୀଙ୍କ ଆଉଏକ ଅଂଶକଳା ନେଇ ଜନ୍ମହେଲେ ସତ୍ୟଭାମା ।

ଜରାସନ୍ଧ ଆକ୍ରମଣରେ ମଥୁରା ନଗରୀ ଶ୍ରୀହୀନ ହୋଇଯାଉଥାଏ । କୃଷ୍ଣ ଶତ୍ରାଜିତଙ୍କୁ ଅନୁରୋଧ କଲେ ମଣିଟି ଉଗ୍ରସେନଙ୍କୁ କିଛି ଦିନ ପାଇଁ ଦେଲେ ସୁବର୍ଣ୍ଣ ଭାର ପାଇ ତାଙ୍କର ଦୁଃଖ ଘୁଞ୍ଚିବ । ଶତ୍ରାଜିତଙ୍କର କିନ୍ତୁ ମଣିଟି ହାତଛଡ଼ା କରିବାପାଇଁ ମନ ନଥିଲା । "ଦେଲେ ଦେବ କହୁଥିବ ନ ଦେବ ନାହିଁ କରିବ" ନ୍ୟାୟରେ ସେ କାଳପଣ ମାଡ଼ ଧରିଥାନ୍ତି । ଥରେ ତାଙ୍କଭାଇ ପ୍ରସେନଜିତ ମଣିଟି ହାତରେ ପିନ୍ଧି ମୃଗୟା କରିବା ପାଇଁ ବଣକୁ ଗଲେ ମାତ୍ର ବଣରେ ଗୋଟାଏ ସିଂହ ତାଙ୍କୁ ମାରିଦେଲା । ମଣିଟି ନେଇ ସିଂହ ଗୁମ୍ଫା ଭିତରକୁ ଗଲା । ମାତ୍ର ମଣିତେଜରେ ଗୁମ୍ଫାଟି ଆଲୋକିତ ହେଉଥିବାରୁ ସେହିରାସ୍ତା ଦେଇ ଯାଉଥିବା ଜାମ୍ବବାନ ଘଟଣାସ୍ଥଳକୁ ଗଲେ । ସେ ସିଂହକୁ ମାରି ମଣିଟି ନେଇ ନିଜର ପାତାଳ ବିବରକୁ ଚାଲିଗଲେ ।

ଏଣେ ପ୍ରସେନଜିତ ନ ଫେରିବାରୁ ଶତ୍ରାଜିତଙ୍କ ମନ ଆନ୍ଦୋଳିତ ହେଲା । ଶେଷରେ ସେ ଧରିନେଲେ ଯେ ମଣିଟି କୃଷ୍ଣ ମାଗିବାରୁ ସେ ଦେଲେନାହିଁ ତେଣୁ କୃଷ୍ଣ ବଣରେ ପ୍ରସେନଜିତଙ୍କୁ ମାରି ମଣିଟି ନେଇଗଲେ । କ୍ରମେ ଏହା ଜନରବରେ ପରିଣତ ହେଲା । ସମସ୍ତେ କୃଷ୍ଣଙ୍କୁ ନିନ୍ଦା କଲେ । ଏହି ବଦନାମରୁ ରକ୍ଷାପାଇବା ପାଇଁ କୃଷ୍ଣ ନିଜେ ମଣି ସନ୍ଧାନରେ ବାହାରି ପଡ଼ିଲେ । ପ୍ରସେନଜିତଙ୍କ ଶବ ପାଖରେ ସିଂହ ପାଦଚିହ୍ନ ଦେଖି ଗୁମ୍ଫା ଆଡ଼କୁ ଗଲେ । ସେଠାରେ ସିଂହର ମଲା ଦେହ ଓ ଭାଲୁପାଦ ଚିହ୍ନ ଦେଖି ତାକୁ ଅନୁସରଣ କଲେ । ଶେଷରେ ଆସି ପହଞ୍ଚିଲେ ପାତାଳ ବିବରରେ । ସେଠାରେ ଜାମ୍ବବାନଙ୍କ ସହ ତାଙ୍କର ବାରଦିନ ଯାଏ ଯୁଦ୍ଧ ହେଲା । ଶେଷରେ ଜାମ୍ବବାନ ପରାସ୍ତ ହେଲେ ଓ କୃଷ୍ଣ ଯେ ସ୍ୱୟଂ ନାରାୟଣ ଚିହ୍ନି ପାରି ଶରଣ ପଶିଲେ । ନିଜର କନ୍ୟା ଜାମ୍ବବତୀଙ୍କୁ ମଣିଟି ପିନ୍ଧାଇ କୃଷ୍ଣଙ୍କୁ ଅର୍ପଣ କଲେ । କୃଷ୍ଣ ଜାମ୍ବବତୀଙ୍କ ସହ ବିବାହ କଲେ । ମଣିଟି ଶତ୍ରାଜିତଙ୍କୁ ଫେରାଇଦେଲେ । ଶତ୍ରାଜିତ ଶ୍ରୀକୃଷ୍ଣଙ୍କ ନାମରେ ଅପପ୍ରଚାର କରିଥିବାରୁ ଲଜ୍ଜିତ ହେଲେ । ସେ ନିଜର କନ୍ୟା ସତ୍ୟଭାମାଙ୍କୁ ମଣିଟି ପିନ୍ଧାଇ ଶ୍ରୀକୃଷ୍ଣଙ୍କୁ ଅର୍ପଣ କଲେ । ଶ୍ରୀକୃଷ୍ଣ ଓ ସତ୍ୟଭାମାଙ୍କ ମଧ୍ୟରେ ବିବାହ ହେଲା । ଘଟଣାକ୍ରମେ କାଳିନ୍ଦୀ ଲକ୍ଷଣା, ଭଦ୍ରା, ମିତ୍ରା ବିନ୍ଦ ଓ ନଗ୍ନଜିତ ନାମକ କନ୍ୟାମାନଙ୍କୁ ଶ୍ରୀକୃଷ୍ଣ ବିବାହ କଲେ । ଏହି ଆଠଜଣଙ୍କୁ କୃଷ୍ଣଙ୍କ ଅଷ୍ଟପାଟବଂଶୀ କୋହିଲା ଯାଏ ।

ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ବିବାହ କରିବା ପରେ ମଣିଟିକୁ ପୁଣି ଶତ୍ରାଜିତଙ୍କୁ ଫେରାଇଦେଲେ । ଏଥିରେ କ୍ରୁଦ୍ଧ ହୋଇ ଶତଧନ୍ୱା ନାମକ ଜଣେ ଦ୍ୱାରକାବାସୀ ଶତ୍ରାଜିତଙ୍କୁ ହତ୍ୟାକରି ମଣିଟି ହରଣ କରିନେଲା । ପିତାଙ୍କ ମୃତ୍ୟୁରେ ସତ୍ୟଭାମା ବିଳାପ କଲେ । କୃଷ୍ଣ ଶତଧନ୍ୱାକୁ ବଧ କରିବା ପାଇଁ ଖୋଜିଲେ । ମାତ୍ର ଶତଧନ୍ୱା ମଣିଟି ଅକ୍ରୁରଙ୍କୁ

ଦେଇ ପଳାଇଗଲା । କୃଷ୍ଣ ଶତଧନ୍ୱାକୁ ବଧକଲେ । ଅକ୍ରୂର ମଧ୍ୟ କୃଷ୍ଣଙ୍କ ଉପରେ ଆତ୍ମ-ଗୋପନ କଲେ । ମାତ୍ର କୃଷ୍ଣ ଅକ୍ରୂରଙ୍କୁ ଠାବ କରି ମଣିଟି ରଖିବାପାଇଁ ତାଙ୍କୁ ହିଁ ଦାନକଲେ ।

ବଳରାମ ଏ ଭିତରେ ରେବତୀଙ୍କୁ ବିବାହ କରିସାରିଥିଲେ । ଦ୍ୱାରକାରେ ଅତି ସୁଖରେ ରାମକୃଷ୍ଣ କାଳ କଟାଉଥାନ୍ତି । କ୍ରମେ କୃଷ୍ଣଙ୍କର ପୁତ୍ରମାନେ ଜାତହେଲେ । ଶ୍ରୀକୃଷ୍ଣଙ୍କର ଶ୍ରୀବୃଦ୍ଧି ଯେତିକି ହେଲା ଶତ୍ରୁ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । ଜରାସନ୍ଧ ଓ ଶିଶୁପାଳଙ୍କର ପୂର୍ବରୁ ଶତ୍ରୁତା ଥିଲା । କ୍ରମେ ଅନେକ ଦୁଷ୍ଟ ରାଜା ଓ ରାକ୍ଷସ ରାଜା ତାଙ୍କ ଦଳରେ ଯୋଗଦେଲେ । ସେମାନଙ୍କ ଅସଲ ଉଦ୍ଦେଶ୍ୟ ହେଲା ଶ୍ରୀକୃଷ୍ଣଙ୍କୁ ମାରିଦେବା ।

ମହାଦେବଙ୍କୁ ପାର୍ବତୀ ସ୍ୱାମୀରୂପେ ପାଇବା ପାଇଁ ସେବା କରୁଥିବାବେଳେ ଶିବଙ୍କ ତପ ଭଙ୍ଗ କରିବା ଦୋଷରେ କନ୍ଦର୍ପ ଭସ୍ମ ହୋଇଥିଲେ । ତାଙ୍କର ସ୍ତ୍ରୀ ରତୀଙ୍କୁ ଶମ୍ବରାସୁର ବନ୍ଦୀକରି ରଖିଥିଲା । କନ୍ଦର୍ପ ପୁଣି ଶ୍ରୀକୃଷ୍ଣଙ୍କ ସନ୍ତାନ ରୂପେ ରୁକ୍ମିଣୀଙ୍କ ଗର୍ଭରୁ ଜନ୍ମହେଲେ । ସମ୍ବରାସୁରକୁ ବଧ କରିବା ପାଇଁ ତାଙ୍କର ଜନ୍ମ ହୋଇଥିବା କଥା ନାରଦଙ୍କ ଠାରୁ ଶମ୍ବରାସୁର ଶୁଣିପାରିଲା । ସେ ମାୟାବଳରେ ଦ୍ୱାରକାଆସି ରୁକ୍ମିଣୀଙ୍କ ସନ୍ତାନକୁ ହରଣ କରିନେଇ ସମୁଦ୍ରରେ ପକାଇଦେଲା । ଦୈବଯୋଗକୁ ରାଘବମାଛ ତାହାକୁ ଗିଳିଦେଲା । ଦେବଅଂଶରେ ଜାତ ହୋଇଥିବାରୁ ଶିଶୁଟିର କିଛି କ୍ଷତିହେଲା ନାହିଁ । ସେ ମାଛଟିକୁ କେଉଟମାନେ ଧରି ଶମ୍ବରାସୁରର ମଣୋହ୍ୱ ପାଇଁ ନେଲେ । ସୂପକାର ମାନେ ଶିଶୁଟିକୁ ଶମ୍ବରାସୁରକୁ ଉପହାର ଦେଲେ । ନିଜର ପୁତ୍ର ନଥିବାରୁ ଶମ୍ବରାସୁର ଶିଶୁଟିକୁ ପାଳିଲା । ତାହାର ନାମ ଦିଆଗଲା ପ୍ରଦ୍ୟୁମ୍ନ ।

ଏଣେ କରୁଷ ଦେଶରେ ରାଜାଥିଲା ପୌଣ୍ଡ୍ରିକ । ସେ ଥିଲେ ବିଷ୍ଣୁ ଭକ୍ତ । ହେଲେ କୃଷ୍ଣଙ୍କ ଅବତାର ଗ୍ରହଣ କଥା ଶୁଣି ସେ କୃଷ୍ଣଦର୍ଶନ ପାଇଁ ବ୍ୟଗ୍ରହୋଇ ଉଠିଲା । ବହୁତ ଷଡ଼ଯନ୍ତ୍ର ଠିକ୍ କଲା ଏମିତ ଏକ କୌଶଳ କରିବ ଯାହାଦ୍ୱାରା କୃଷ୍ଣ ଆପେ ଆପେ ତା' ପାଖକୁ ଆସିବେ । ସେ କୃଷ୍ଣଙ୍କ ସହ ଯୁଦ୍ଧ କରି ମରିବ ଫଳରେ କୈବଲ୍ୟ ମୁକ୍ତି ପାଇ-ପାରିବ । ଏହାପରେ ପୌଣ୍ଡ୍ରିକ ନିଜକୁ ଠିକ୍ ବିଷ୍ଣୁ ବେଶରେ ସଜାଇଲା । କାଠରେ ଆଉଦୁଇଟି ହାତ ଲଗାଇ "ଶଙ୍ଖ ଚକ୍ର ଗଦା ପଦ୍ମ" ଧାରଣ କଲା । ନିଜେ ବିଷ୍ଣୁଙ୍କ ଅବତାର ବୋଲି ପ୍ରଚାର କଲା ଏବଂ ତାକୁ ପୂଜା କରିବାପାଇଁ ପ୍ରଜାମାନଙ୍କୁ ବାଧ୍ୟ କଲା । ସମସ୍ତେ ଡରିମରି ରାଜା ପୌଣ୍ଡ୍ରିକଙ୍କୁ ବିଷ୍ଣୁ ବୋଲି ପୂଜାକଲେ । ସେଠୁ ପୌଣ୍ଡ୍ରିକ କୃଷ୍ଣଙ୍କ ପାଖକୁ ଦୂତ ପଠାଇ ଜଣାଇଲା ସେ ନିଜେ ସ୍ୱୟଂ ବିଷ୍ଣୁ । କୃଷ୍ଣ ଆସି ତାହାର ଶରଣ ପଶନ୍ତୁ । ନଚେତ୍ ଯୁଦ୍ଧ କରନ୍ତୁ । ଯୁଦ୍ଧରେ ଜଣେ ମରିବ ଅନ୍ୟଜଣେ ବିଷ୍ଣୁ ବୋଲି ପୂଜା ପାଇବ । ଏତକ କଥା ଶୁଣି ଶ୍ରୀକୃଷ୍ଣ କରୁଷ ରାଜ୍ୟକୁ ଗଲେ । ନକଲି ବିଷ୍ଣୁ ସାଜିଥିବା ପୌଣ୍ଡ୍ରିକ ସହ ଯୁଦ୍ଧକରି ତାକୁ ବଧକଲେ । ମଲା ସମୟରେ ପୌଣ୍ଡ୍ରିକ ନିଜର ଅଭିଳାଷ

ଜଣାଇ ମୁକ୍ତି ପ୍ରାର୍ଥନା କଲା । କୃଷ୍ଣ ପୌଣ୍ଡ୍ରିକକୁ ବିଷ୍ଣୁଭକ୍ତବୋଲି ଜାଣି ତା'ର ଆତ୍ମାକୁ ନିଜ ଆତ୍ମାରେ ଲୀନ କରିଦେଲେ ।

ମ୍ଲେଚ୍ଛ ଓ ଯବନ ମାନଙ୍କ ରାଜା ଥିଲେ ଅସୁର କାଳାନ୍ତକ । ସେ ନରହତ୍ୟା ଲୁଟ୍ ତରଜ ଚଲାଇ କୋଳାହଳ ସୃଷ୍ଟି କରୁଥାଏ । ଦେବମନ୍ଦିର ସ୍ୱର୍ଣ୍ଣ ମୂର୍ତ୍ତିସବୁ ଚୂରମାର କରୁଥାଏ । ସେ ତପସ୍ୟା କରି ବର ପାଇଥିଲା ଯେ କୌଣସି ପ୍ରାଣୀ, ଦେବତା ବା ମନୁଷ୍ୟ ଦ୍ୱାରା ସେ ମରିବ ନାହିଁ ସେ ମଧ୍ୟ କୃଷ୍ଣଙ୍କୁ ମାରିବା ପାଇଁ ଚେଷ୍ଟା କରୁଥାଏ । କୃଷ୍ଣ, ବିଷ୍ଣୁମାୟା କଲେ । ବିଶ୍ୱକର୍ମାଙ୍କୁ ଡକାଇ ଏକ ସୁନ୍ଦର ମୋହିନୀମୂର୍ତ୍ତି ଏକ ମନ୍ଦିରରେ ସ୍ଥାପନ କଲେ । କାଳାନ୍ତକ ଦିନେ ବୁଲି ବୁଲି ସେ ମନ୍ଦିରରେ ପହଞ୍ଚିଲା । ଅପୂର୍ବ ସୁନ୍ଦରୀ ମୋହିନୀମୂର୍ତ୍ତି ଦେଖି ବିଭୋଳ ହୋଇଗଲା ଏବଂ ଭାବିଲା ଏହା ଜୀବନ୍ତ ହୁଅନ୍ତା ଯଦି ମୁଁ ମୋର ରାଣୀ କରନ୍ତି । ବିଷ୍ଣୁମାୟା ଯୋଗୁଁ ମୂର୍ତ୍ତିଟି ଜୀବନ ପାଇ ନାଚିବାକୁ ଲାଗିଲା । କାଳାନ୍ତକ ଯାଇ ମାୟା ମୋହିନୀକୁ ଯେମିତି ଆଲିଙ୍ଗନ କରିଛି ମୂର୍ତ୍ତିଟି ପୁଣି ପଥର ହୋଇଗଲା । ସେ ମୂର୍ତ୍ତିର ପଥର ହାତତଳେ କଳୁ କାଳାନ୍ତକର ମୁଣ୍ଡଟି ରହିଯାଇଥିଲା । ଫଳତଃ ଚାପି ହୋଇ ସେଠାରେ ମଲା । କୃଷ୍ଣ ଏକ ଆଗ୍ନେୟଗିରିରୁ ଅଗ୍ନିବର୍ଷଣ କରି ପଶ୍ଚିମ ଦିଗରେ ମ୍ଲେଚ୍ଛ ଓ ଯବନ ମାନଙ୍କୁ ନିପାତ କଲେ ।

ପୂର୍ବ ଦିଗରେ ଥିବା ପ୍ରାଗ୍‌ଜ୍ୟୋତିଷ ପୁରରେ ନରକାସୁରର ଅତ୍ୟାଚାର ବୃଦ୍ଧି ପାଇଥାଏ । ଦିନେ ଦେବରାଜ ଇନ୍ଦ୍ର ସ୍ୱୟଂ ଦ୍ୱାରକା ଆସି କୃଷ୍ଣଙ୍କୁ ଗୁହାରି ଜଣାଇ କହିଲେ—"ପ୍ରଭୁ ! ନରକା ସ୍ୱର୍ଗପୁର ଆକ୍ରମଣ କରି ଦେବମାତା ଅଦିତିଙ୍କ ଠାରୁ ଅମୃତ କୁଣ୍ଡଳ, ବରୁଣ ଦେବଙ୍କ ଛତ୍ର, ମେରୁ ମଣିପର୍ବତ ଇତ୍ୟାଦି ହରଣକରି ନେଇଛି । କେବଳ ସେତିକି ନୁହେଁ ସବୁ ରାଜ୍ୟରୁ ଷୋଳସହସ୍ର ଦଶ ଜଣ ରାଜକନ୍ୟା ହରଣକରି ନେଇଛି ଏବଂ ସେ ସମସ୍ତଙ୍କୁ ବିବାହ କରିବବୋଲି ଆୟୋଜନ କରୁଛି । ମୁନି, ଋଷି, ସାଧୁସନ୍ଥନଙ୍କ ପ୍ରତି ତା'ର ଅତ୍ୟାଚାର ଦିନକୁ ଦିନ ବୃଦ୍ଧି ପାଉଛି । ଆପଣ ନରକାସୁରକୁ ବଧ କରି ଆମକୁ ରକ୍ଷା କରନ୍ତୁ ଶ୍ରୀକୃଷ୍ଣ ।" କୃଷ୍ଣ ଇନ୍ଦ୍ରଙ୍କୁ ଅଭୟଦାନ କଲେ ଓ ନରକାସୁର ବଧ ପାଇଁ ପ୍ରତିଜ୍ଞା କଲେ ।

କୃଷ୍ଣଙ୍କ ଯୁଦ୍ଧଯାତ୍ରା ସମୟରେ ତାଙ୍କ ସହ ସତ୍ୟଭାମା ଯୁଦ୍ଧ ଦେଖିବାପାଇଁ ବାହାରିଲେ । ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ଆବାହନ କଲେ । ଗରୁଡ଼ ପିଠିରେ ସେ ଓ ସତ୍ୟଭାମା ନରକାସୁର ରାଜ୍ୟକୁ ଯାତ୍ରାକଲେ । ନରକାସୁର ସହ ଶ୍ରୀକୃଷ୍ଣଙ୍କର ଭୟଙ୍କର ଯୁଦ୍ଧ ହେଲା । ଶେଷରେ ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ର ଦ୍ୱାରା ନରକାର ମୁଣ୍ଡ ଛେଦନ କଲେ । ସବୁ ରାଜକନ୍ୟା-ମାନଙ୍କୁ ମୁକ୍ତ କଲେ । ନରକାର ପୁତ୍ର ଭଗଦତ୍ତଙ୍କୁ ପ୍ରାଗ୍‌ଜ୍ୟୋତିଷ ପୁରର ରାଜା କଲେ । ନରକାର ମୃତ୍ୟୁରେ ଦେବ ଓ ମାନବ ଶାନ୍ତିରେ ନିଃଶ୍ୱାସ ମାରିଲେ । ମୁକ୍ତ ରାଜକନ୍ୟା ମାନେ ଶ୍ରୀକୃଷ୍ଣଙ୍କୁ ହିଁ ବିବାହ କରିବା ପାଇଁ ମତଦେଲାଇଲେ । ଶ୍ରୀକୃଷ୍ଣ ସମସ୍ତଙ୍କୁ ବାହା-ହେଲେ । ଇନ୍ଦ୍ର ସ୍ୱର୍ଗପଦ ଫେରିପାଇ କୃଷ୍ଣଙ୍କୁ କୃତଜ୍ଞତା ଜଣାଇଲେ ।

ଥରେ ନାରଦ ମହର୍ଷି ସ୍ୱର୍ଗରୁ ପାରିଜାତ ଫୁଲଟିଏ ଆଣି ରୁକ୍ମିଣୀଙ୍କୁ ଉପହାର ଦେଲେ । ସତ୍ୟଭାମା ସେହିଭଳି ଫୁଲ ପାଇବା ନିମନ୍ତେ କୃଷ୍ଣଙ୍କୁ ଅଳିକଲେ । କୃଷ୍ଣ ଗରୁଡ଼ଙ୍କୁ ଡାକି ସ୍ୱର୍ଗର ନନ୍ଦନକାନନ ଗଲେ ଏବଂ ପାରିଜାତ ଫୁଲ ଗଛଟିକୁ ଉପାଡ଼ି ନେଇ ଆସିଲେ । କାନନ ଜଗୁଆଳିମାନେ କୃଷ୍ଣଙ୍କୁ ଚିହ୍ନି ନପାରି ଯୁଦ୍ଧ ଆରମ୍ଭ କରିଦେଲେ । ଇନ୍ଦ୍ର-ମଧ୍ୟ ଏଥିରେ ରାଗିଯାଇ ଯୁଦ୍ଧ ଆରମ୍ଭ କଲେ । ମାତ୍ର ଶ୍ରୀକୃଷ୍ଣଙ୍କୁ ଚିହ୍ନିପାରି ସେ ଗଛଟି କୃଷ୍ଣଥିବା ପର୍ଯ୍ୟନ୍ତ ପୃଥିବୀରେ ରହିବ ବୋଲି ସ୍ୱୀକାର କଲେ ।

ଏଣେ ଶମ୍ବରାସୁର ଘରେ ପ୍ରଦ୍ୟୁମ୍ନ ଯୁବକରେ ପରିଣତ ହେଲେ । ମାତା ରୂପେ ତାଙ୍କୁ ପାଳନ କରୁଥିବା ମାୟାବତୀ ନିଜ ଦେହରୁ ରତି ଦେବୀଙ୍କୁ ପ୍ରକଟ କରାଇ କହିଲେ— "ହେ କୃଷ୍ଣ ନନ୍ଦନ ! ଶମ୍ବରାସୁର ରତି ଦେବୀଙ୍କୁ ହରଣ କରି ଆଣିବା ପରେ ମୁଁ ତାଙ୍କୁ ଲୁଚାଇ ମାୟାବତୀ ରୂପେ ଶମ୍ବରର ପତ୍ନୀ ସାଜି ରହିଥିଲି । ମୁଁ ସ୍ୱୟଂ ରତିଦେବୀଙ୍କ ମାୟା ! ତୁମକୁ ଶମ୍ବରାସୁର ପିଲାଦିନେ ସମୁଦ୍ରରେ ଫୋପାଡ଼ି ଦେଇଥିଲା । ମାତ୍ର ମାଛ ପେଟରେ ରହି ତୁମେ ଶମ୍ବରାସୁର ଘରେ ପୁଣି ପହଞ୍ଚିଲ ! ଏଣେ ଶମ୍ବରାସୁରକୁ ବଧକରି ରତିଙ୍କୁ ପତ୍ନୀରୂପେ ସ୍ୱୀକାର କରି ଦ୍ୱାରକା ଫେରିଯାଅ ।"

ପ୍ରଦ୍ୟୁମ୍ନ ଅପୂର୍ବ ବୀରତ୍ୱର ପରିଚୟ ଦେଇ ଶମ୍ବରାସୁର ସହିତ ଯୁଦ୍ଧ କରି ତାକୁ ବଧକଲେ ଏବଂ ରତିଦେବୀଙ୍କ ସହ ଦ୍ୱାରକାରେ ପହଞ୍ଚିଲେ । କୃଷ୍ଣ ଓ ରୁକ୍ମିଣୀ ନିଜପୁତ୍ରକୁ ଫେରିପାଇ ଖୁସିହେଲେ ।

ନାରକାସୁର ବଧ ପରେ ତାର ମିତ୍ର ଦ୍ୱିବିଦ ବାନର ମିତ୍ରର ପରିଶୋଧ ପାଇଁ ଦ୍ୱାରକା ଆକ୍ରମଣ କଲା । ସେ ବାଲୀ ସୁଗ୍ରୀବଙ୍କ ଅମଳରେ ମନ୍ତ୍ରୀଥିଲା । ନିଜ ଲାଙ୍ଗୁଳରେ ଅଗ୍ନି ସଂଯୋଗ କରି ଦ୍ୱାରକାରେ ଅଗ୍ନି ସଂଯୋଗ, ଉଦ୍ୟାନ ଛିନ୍ନ ଛତ୍ର, ଲୋକଙ୍କୁ ଆକ୍ରମଣ ଇତ୍ୟାଦି ଚଳାଇଲା । ବଳରାମ ହଳମୂଷଳ ଦ୍ୱାରା ତାକୁ ବଧକଲେ ।

ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କର ପୁଅ ଅନିରୁଦ୍ଧ । ତାଙ୍କର ବିବାହ ବୟସ ହୋଇଗଲା । ଶ୍ରୀକୃଷ୍ଣଙ୍କର ଲକ୍ଷେ ଯାଠିଏ ହଜାର ଅଶିଏ ନନ୍ଦନ ବୋଲି ପୁରାଣରେ ଅଛି । ଏତେ ସଂଖ୍ୟକ ପୁତ୍ରଙ୍କ ପାଇଁ କନ୍ୟାଯୋଗାଡ଼ କରିବା କୃଷ୍ଣଙ୍କ ପକ୍ଷେ ଅସମ୍ଭବ । ସେ ପୁତ୍ରମାନେ ନିଜେ ନିଜ ଇଚ୍ଛାରେ କନ୍ୟା ଯୋଗାଡ଼ କରି ବିବାହ କରୁଥାନ୍ତି । ଅବଶ୍ୟ ନାରଦ ଏ ଦିଗରେ ସେମାନଙ୍କୁ ସାହାଯ୍ୟ କରନ୍ତି ।

ଶୋଣିତପୁରରେ ରାଜା ହୋଇଥାଏ ବଳୀଙ୍କର ପୁଅ ବାଣାସୁର । ସେ କଠୋର ତପସ୍ୟା କରି ଶିବଙ୍କଠାରୁ ଏକହଜାର ହାତ ବିଶିଷ୍ଟ ବଳବାନ ରାକ୍ଷସ ରୂପେ ବର ପାଇଥିଲା । ଶିବଙ୍କ ପରମଭକ୍ତ ଥିଲା ସେ । ନିଜର ବାହୁ ବଳରେ ସେ ଦେବତାମାନଙ୍କୁ ମଧ୍ୟ ହରାଇଥିଲା । ଦୈନିକ ଯୁଦ୍ଧ ନକଲେ ତାହାର ଏକହଜାର ବାହୁରେ ପୀଡ଼ା ହୁଏ । ହାତକୁ ପଟଙ୍ଗରେ ପିଟି ଦିଏ। ଦୂର କରେ କିନ୍ତୁ ପର୍ବତଟି ଚୂର୍ଣ୍ଣ ହୋଇଯାଏ । ତାହାର ଏକ ସୁନ୍ଦରୀ କନ୍ୟା ଜନ୍ମ ହେଲା । ବାଣାସୁର ତାହାର ନାମ ଦେଲା ଉଷାରାଣୀ ।

ଝିଅ ପାଇଁ ଏକ ଅଭେଦ୍ୟପୁରୀ ନିର୍ମାଣ କରି ତାକୁ ସେଠାରେ ରଖାଇଥିଲେ । ଏଣେ ଉଷାର ବିବାହ ବୟସ ହେବାରୁ ବାଣାସୁର ବର ଖୋଜୁଥାଏ । ନାରଦ ଥରେ ଉଷା ପାଖକୁ ଯାଇ କୃଷ୍ଣଙ୍କ ନାତି ଅନିରୁଦ୍ଧଙ୍କ ସୁନ୍ଦର ପଣିଆ ବଖାଣି ଦେଲେ । ଉଷା ମନେମନେ ଅନିରୁଦ୍ଧଙ୍କୁ ବାହାହେବା ପାଇଁ ଠିକ୍ କଲେ । ସ୍ୱପ୍ନରେ ସେ ଅନିରୁଦ୍ଧଙ୍କୁ ଦେଖି ମୂର୍ଚ୍ଛା ହେଲେ । ତାଙ୍କର ସଖୀ ଚିତ୍ରରେଖା ବାଣାସୁରର ମନ୍ତ୍ରୀ କୁମ୍ଭାଣ୍ଡଙ୍କ ଝିଅ । ସେ ଚିତ୍ରାଙ୍କନରେ ଏବଂ ସିଦ୍ଧ ଯୋଗିନୀ ମାୟାରେ ଥିଲ ସିଦ୍ଧହସ୍ତା । ଉଷାଙ୍କ ଅନୁରୋଧ କ୍ରମେ ରାତିରେ ମାୟାବଳରେ ଦ୍ୱାରକାଯାଇ ଅନିରୁଦ୍ଧଙ୍କୁ ଉଠାଇ ଆଣି ଉଷା ପାଖରେ ପହଞ୍ଚାଇ ଦେଲ । ଅନିରୁଦ୍ଧ ଉଷାଙ୍କୁ ମଧ୍ୟ ପୂର୍ବରୁ ସ୍ୱପ୍ନରେ ଦେଖିଥିଲେ । ଦୁହେଁ ପରସ୍ପରକୁ ଗାନ୍ଧର୍ବ ମତରେ ବିବାହ କଲେ । ଏ ଖବର ବାଣାସୁର ଯେତେବେଳେ ଶୁଣିଲା ରାଗରେ ଥରିଗଲା । ସେ ଅନିରୁଦ୍ଧଙ୍କୁ ନେଇ କାରାଗାରରେ ବନ୍ଦୀକରି ରଖିଲା । ଏଣେ ଅନିରୁଦ୍ଧ ନିରୁଦ୍ଦିଷ୍ଟ ହୋଇଯିବାରୁ ଦ୍ୱାରକାରେ ଚହଳ ପଡ଼ିଥିଲା । ସମସ୍ତେ ଅନିରୁଦ୍ଧଙ୍କୁ ଖୋଜିବାରେ ଲାଗିଥିଲେ । ନାରଦ ଯଥା ସମୟରେ ପହଞ୍ଚି ଅନିରୁଦ୍ଧଙ୍କୁ ବାଣାସୁର ବନ୍ଦୀକରି ରଖିଥିବା ଖବର ଦେଲେ । ଏଥିରେ ରାଗିଯାଇ କୃଷ୍ଣ ବଳରାମ ପ୍ରବଳ ପ୍ରତାପୀ ଯାଦବସେନା ସହିତ ଶୋଣିତପୁର ଆକ୍ରମଣ କଲେ । ବାଣାସୁର ସଙ୍ଗେ ଯୁଦ୍ଧରେ ଅବତୀର୍ଣ୍ଣ ହେଲା । ସେ ପରମ ଶିବଭକ୍ତ ଥିବାରୁ ତା'ର ଅନୁରୋଧରେ ଶିବ ମଧ୍ୟ ନିଜ ଶିବଗଣଙ୍କ ସହ ଯୁଦ୍ଧରେ ଯୋଗ-ଦେଲେ । ଇନ୍ଦ୍ରମଧ୍ୟ କୃଷ୍ଣଙ୍କ ସପକ୍ଷରେ ଯୋଗଦେଲେ । ପ୍ରବଳ ଯୁଦ୍ଧ ହେଲା । କୃଷ୍ଣ ବଳରାମ ବାଣାସୁର ପକ୍ଷକୁ ସମ୍ପୂର୍ଣ୍ଣ ପରାସ୍ତ କଲେ । ସୁଦର୍ଶନ ଚକ୍ର ଦ୍ୱାରା ସେ ବାଣାସୁରର ମାତ୍ର ଦୁଇଟି ହାତ ରଖି ସବୁ ହାତଯାକ କାଟି ପକାଇଲେ । ଶିବ କୃଷ୍ଣଙ୍କୁ ପ୍ରାର୍ଥନା କଲେ ଓ ତାଙ୍କ ଭକ୍ତ ବାଣାସୁରକୁ ଜୀବନରେ ନମାରିବା ପାଇଁ ଅନୁରୋଧ କଲେ । ବାଣାସୁର ଥିଲା ପ୍ରହ୍ଲାଦ ବଂଶୀୟ । ବିଷ୍ଣୁ ନୃସିଂହ ଅବତାର ବେଳେ ପ୍ରହ୍ଲାଦଙ୍କୁ କଥା ଦେଇଥିଲେ ତାଙ୍କ ବଂଶଜମାନଙ୍କୁ ନମାରିବା ପାଇଁ । ବାଣାସୁର ମଧ୍ୟ କୃଷ୍ଣଙ୍କୁ ନିଜ କର୍ମ ପାଇଁ କ୍ଷମାମାଗିଲା । କୃଷ୍ଣ ବାଣାସୁରକୁ କ୍ଷମାଦେଲେ । ଉଷା ଓ ଅନିରୁଦ୍ଧଙ୍କ ପରିଣୟ ମହାଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା ।

ଏଭଳି ଶ୍ରୀକୃଷ୍ଣ ବହୁ ଦୁଷ୍ଟଙ୍କୁ ଦମନ କରି ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରୁଥାନ୍ତି । ଅଭିଶପ୍ତମାନଙ୍କୁ ମୁକ୍ତି ଦେଉଥାନ୍ତି । ଅଗ୍ନିଦେବତାଙ୍କ ବ୍ୟାଧି ଦୂର ପାଇଁ ତାଙ୍କ ଅନୁରୋଧରେ ପାଣ୍ଡବ ଅର୍ଜୁନ ଖାଣ୍ଡବ ବନ ଦହନ କରିଥିଲେ । ମୟ ଦାନବକୁ ସେ ଅଗ୍ନି କାଣ୍ଡରୁ ଶ୍ରୀକୃଷ୍ଣ ଓ ଅର୍ଜୁନ ରକ୍ଷା କରିଥିବାରୁ ସେ କୃତଜ୍ଞତାର ଚିହ୍ନ ସ୍ୱରୂପ ହସ୍ତିନାରେ ଯୁଧିଷ୍ଠିରଙ୍କ ପାଇଁ ଏକ ସଭାଗୃହ ନିର୍ମାଣ କରିଦେଲା । ହସ୍ତିନାରେ ଯୁଧିଷ୍ଠିର ଏବେ ରାଜସୂୟ ଯଜ୍ଞର ଆୟୋଜନ କରୁଥାନ୍ତି । ପାଣ୍ଡବମାନେ ଶ୍ରୀକୃଷ୍ଣ ଭକ୍ତ । ଶ୍ରୀକୃଷ୍ଣ ଥିଲେ ପାଣ୍ଡବମାନଙ୍କ ମାମୁଁ ପୁଅ ଭାଇ ସମ୍ପର୍କରେ । ତାଙ୍କଠାରୁ ପରାମର୍ଶ ପାଇବା ପାଇଁ ଶ୍ରୀକୃଷ୍ଣଙ୍କୁ ହସ୍ତିନା ଡକାଇ ନିଆଗଲା ।

ରାଜସୂୟ ଯଜ୍ଞରେ ଚକ୍ରବର୍ତ୍ତୀ ହେବାପାଇଁ ବହୁ ରାଜାଙ୍କୁ ଜୟକରି ବଶବର୍ତ୍ତୀ କରାଇବା ଦରକାର । ସେତେବେଳେ ପ୍ରତାପୀ ଜରାସନ୍ଧ ବହୁରାଜାଙ୍କୁ ବନ୍ଦୀକରି ରଖିଥାଏ । ଶ୍ରୀକୃଷ୍ଣ ପରାମର୍ଶ ଦେଲେ ଜରାସନ୍ଧକୁ ବଧ କରାଯାଇପାରିଲେ ବହୁରାଜା ଆପଣଙ୍କ ଅଧୀନକୁ ଆସିଯିବେ । ମହାବୀର ଭୀମସେନ ଜରାସନ୍ଧକୁ ମାରିଦେବା ପାଇଁ ପ୍ରତିଜ୍ଞା କଲେ । କୃଷ୍ଣଙ୍କ ପରାମର୍ଶ କ୍ରମେ କୃଷ୍ଣ, ଅର୍ଜୁନ ଓ ଭୀମ ବ୍ରାହ୍ମଣବେଶ ଧରି ଜରାସନ୍ଧର ରାଜନଗରରେ ପହଞ୍ଚିଲେ । କୃଷ୍ଣ ବେଦଧ୍ୱନି କଲେ । ଜରାସନ୍ଧ ବ୍ରାହ୍ମଣ, ମୁନି, ଋଷିମାନଙ୍କୁ ସମ୍ମାନ ଦେଉଥାଏ । ସେମାନଙ୍କୁ ବ୍ରାହ୍ମଣ ଭାବି ପାଦ୍ୟାର୍ଘ୍ୟ ଦେଲା ଏବଂ ପଚାରିଲା—"ଆପଣମାନେ କ'ଣ ଇଚ୍ଛା କରନ୍ତି ଆଦେଶ କରନ୍ତୁ ।" କୃଷ୍ଣ କହିଲେ—"ଆମେ ଯୁଦ୍ଧ ଚାହୁଁ । ତୁମେ ଏହି ମୋଟା ବ୍ରାହ୍ମଣଙ୍କ ସହ ଯୁଦ୍ଧକର ।" ଜରାସନ୍ଧ ଏଥର ସେମାନଙ୍କୁ ବ୍ରାହ୍ମଣବେଶୀ ଛଦ୍ମ-କୃଷ୍ଣ, ଅର୍ଜୁନ ଓ ଭୀମ ବୋଲି ଜାଣିପାରିଲା । ବଚନବଦ୍ଧ ହୋଇଥିବାରୁ ଯୁଦ୍ଧ ପାଇଁ ହୁଁକାର ଦେଲା । ଆରମ୍ଭ ହେଲା ଭୀମ ଓ ଜରାସନ୍ଧ ମଧ୍ୟରେ ପ୍ରବଳ ଯୁଦ୍ଧ । ଉଭୟେ-ଯାକ ଯୋଦ୍ଧା । ମଲ୍ଲଯୁଦ୍ଧ ଓ ମୁଷ୍ଟିଯୁଦ୍ଧ ଚାଲିଥାଏ । ଉଭୟେ ସମାନ ବୀର । କେହି କାହାରିକୁ ଛାଡୁନଥାନ୍ତି । ଜରାସନ୍ଧ ବର ପାଇଥାଏ କୌଣସି ଅସ୍ତ୍ରଶସ୍ତ୍ରରେ ସେ ମରିବ ନାହିଁ । କୃଷ୍ଣ ଗୋଟିଏ ପତ୍ର ଫାଳକରି ଭୀମକୁ ସଙ୍କେତ ଦେଲେ । ଭୀମ ବୀରଦର୍ପରେ ଜରାସନ୍ଧକୁ ଦୁଇଫାଳ କରି ଚିରିଦେଲେ । ଶେଷରେ କୃଷ୍ଣଙ୍କ ଗୋଟାଏ ବଡ଼ ଶତ୍ରୁ ନିପାତ ହେଲା । କୃଷ୍ଣ ବନ୍ଦୀ ରାଜାମାନଙ୍କୁ ମୁକ୍ତକଲେ । ସମସ୍ତ ରାଜା ଯୁଧିଷ୍ଠିରଙ୍କ ଅଧୀନତା ସ୍ୱୀକାର କଲେ । ଆରମ୍ଭ ହେଲା ରାଜସୂୟ ଯଜ୍ଞ ।

ଯଜ୍ଞ ଆରମ୍ଭରେ ପୁଣି ଗୋଟାଏ ସମସ୍ୟା ଦେଖାଦେଲା । ସଭାରେ ଅଗ୍ରସ୍ଥାନ କାହାକୁ ଦିଆଯିବ ସ୍ଥିର ହୋଇପାରୁନଥାଏ । ଶେଷରେ ଭୀଷ୍ମଙ୍କ ପରାମର୍ଶ ଅନୁସାରେ ଶ୍ରୀକୃଷ୍ଣଙ୍କୁ ହିଁ ଅଗ୍ରସ୍ଥାନ ଦିଆଗଲା । ଏଥିରେ ଶ୍ରୀକୃଷ୍ଣଙ୍କ ସହିତ ପୂର୍ବରୁ ଶତ୍ରୁତା ଆଚରଣ କରି ଆସୁଥିବା ଶିଶୁପାଳ ପ୍ରଭୃତି ଘୋର ବିରୋଧ କଲେ । ଶିଶୁପାଳ କୃଷ୍ଣଙ୍କୁ ନାନା କଟୁକଥା କହି ଅପମାନ ଦେଉଥାଏ । ଏଥିରେ ପାଣ୍ଡବମାନେ ଉତ୍ତେଜିତ ହେଉଥାନ୍ତି । ମାତ୍ର କୃଷ୍ଣ ହସି ହସି ସେମାନଙ୍କୁ ଶାନ୍ତ କରାଉଥାନ୍ତି । ଯେତେବେଳେ ଶିଶୁପାଳର ଦୋଷ ଏକ ଶହ ଟପିଗଲା କୃଷ୍ଣ ସୁଦର୍ଶନ ଚକ୍ର ଦ୍ୱାରା ତା'ର ମୁଣ୍ଡ ହାଣିଦେଲେ । ଶିଶୁପାଳର ଭାଇ ଦନ୍ତାବକ୍ର ଓ ଅନ୍ୟମାନେ ମଧ୍ୟ କୃଷ୍ଣଙ୍କ ସହିତ ଯୁଦ୍ଧ କରି ପ୍ରାଣତ୍ୟାଗ କଲେ । ଶିଶୁପାଳ ଓ ଦନ୍ତବକ୍ର ଦେହରୁ ଦୁଇଟି ଜ୍ୟୋତି ବାହାରି କୃଷ୍ଣଙ୍କ ଦେହରେ ଲୀନ ହୋଇଗଲା । ଏହିଭଳି ବିଷ୍ଣୁଙ୍କ ଦ୍ୱାରପାଳ ଜୟ ଓ ବିଜୟଙ୍କ ଅଭିଶପ୍ତ ତୃତୀୟ ଜନ୍ମ ଶେଷହେଲା ଓ ସେମାନେ ବୈକୁଣ୍ଠକୁ ଯାଇ ପୁଣି ସ୍ୱକର୍ମରେ ନିଯୁକ୍ତ ହେଲେ ।

ସୁଦାମା ଥିଲେ କୃଷ୍ଣ ବଳରାମଙ୍କ ସହପାଠୀ । ଗୁରୁ ସାନ୍ଦୀପନିଙ୍କ ଆଶ୍ରମରେ ସେମାନେ ଏକାଠି ଥିଲେ । ବିଦ୍ୟା ଶିକ୍ଷାପରେ ନିଜ ନିଜ କର୍ମ ସଂସାରରେ ସେମାନେ

ବ୍ୟସ୍ତ ହେଲେ । ସୁଦାମା ଥିଲେ ଗରିବ ବ୍ରାହ୍ମଣ । କ୍ରମଶଃ କୁଟୁମ୍ବ ସଭ୍ୟ ସଂଖ୍ୟା ବଢ଼ିବାରୁ ସେ ଘରଚଳାଇ ପାରୁନଥାନ୍ତି । ଏପରିକି ଦୁଇବେଳା ଦୁଇମୁଠା ଅନ୍ନ ଯୋଗାଡ଼ କରିବା ମଧ୍ୟ ତାଙ୍କଦ୍ୱାରା ସମ୍ଭବ ହେଉନଥାଏ । ସୁଦାମାଙ୍କ ପତ୍ନୀ ତାଙ୍କୁ ଥରେ ତାଙ୍କ ବାଲ୍ୟସଖା କୃଷ୍ଣଙ୍କ କଥା ମନେପକାଇ ଦେଲେ । ସ୍ୱୟଂ ଦ୍ୱାରକାପତି କୃଷ୍ଣଙ୍କୁ ନିଜର ଦୁଃଖ ଜଣାଇଲେ ସେ ଏହି ଭୟଙ୍କର ଦାରିଦ୍ର୍ୟ ଘୁଞ୍ଚାଇ ପାରନ୍ତି । ସୁଦାମା ଆନନ୍ଦିତ ହେଲେ । ଅରେ ସତେତ ! ପ୍ରାଣପ୍ରିୟ ସଖା କୃଷ୍ଣଙ୍କ କଥା ସେ କର୍ମ ବ୍ୟସ୍ତତା ଭିତରେ ଭୁଲି ଯାଇଥିଲେ । କୃଷ୍ଣ ନିଶ୍ଚୟ ତାଙ୍କର ଏ ଦୁର୍ଦ୍ଦିନରେ ସାହାଯ୍ୟ କରିବେ ଏକଥା ତାଙ୍କ ମନରେ କ୍ରମଶଃ ଦୃଢ଼ ହେଲା । ସେ ଦ୍ୱାରକା ଯିବା ପାଇଁ ବାହାରିଲେ । ସାଙ୍ଗ ଘରକୁ ଯିବେ—ଖାଲିହାତରେ ଯିବାପାଇଁ ସଙ୍କୋଚ ଲାଗିଲା । ମାତ୍ର ତାଂକର ପତ୍ନୀ ଘରେ ଥିବା କଣ୍ଟକୁଡ଼ ଭଜା ଲୋଟ ପୁଟୁଳିଟିଏ ବାନ୍ଧିଦେଲେ ଏବଂ କୃଷ୍ଣଙ୍କୁ ଦେବାପାଇଁ ଦେଲେ । ଦରିଦ୍ର ସୁଦାମ ଚାଲିଲେ ଦ୍ୱାରକା । ଅନେକ ଉପାସରେ ଚାଲି ଚାଲି ବହୁଦିନ ପରେ ସୁଦାମା ଯାଇ ଦ୍ୱାରକାରେ ପହଞ୍ଚିଲେ । ମନରେ ଅଜସ୍ର ଭାବନା—ଏ ଦୀନହୀନ ବେଶରେ କୃଷ୍ଣ କ'ଣ ତାଙ୍କୁ ଚିହ୍ନି ପାରିବେ ? ସେ କ'ଣ ଦ୍ୱାରକାପତି କୃଷ୍ଣଙ୍କ ସଖା ପଣକୁ ଯୋଗ୍ୟ ? ସଙ୍କୋଚ ଓ ଲଜ୍ଜାରେ ତାଂକର ପାଦ ବାହାରୁ ନଥାଏ । ସୁଦାମା ଦ୍ୱାରକାରେ ପହଞ୍ଚିବାବେଳକୁ କୃଷ୍ଣ ନିଜ ଅଷ୍ଟପାଟରାଣୀଙ୍କ ଗହଣରେ ଥିଲେ । ସେ ଦୂରରୁ ଦେଖିପାରିଲେ ତାଂକର ସହପାଠୀଙ୍କୁ । ମନ ତାଂକର ଆନନ୍ଦରେ ପୂରିଗଲା । ଦୌଡ଼ିଆସି ସୁଦାମାଙ୍କୁ ଆଲିଙ୍ଗନ କଲେ ଏବଂ ଆଦରରେ ସିଂହାସନ ପାଖକୁ ପାଛୋଟି ନେଲେ । କୃଷ୍ଣଙ୍କ ପାଟରାଣୀ ମାନେ ସୁଦାମାଂକ ପାଦ ଧୋଇଦେଲେ । କୃଷ୍ଣ, ସୁଦାମାଙ୍କୁ ସିଂହାସନରେ ବସାଇ ଆଦରରେ ନାନା କଥା ପଚାରିଲେ । "ସଖା ମୋ ପାଇଁ କ'ଣ ଆଣିଛ ବୋଲି ପ୍ରଶ୍ନକଲେ !" ସୁଦାମା ଖୁଦଭଜା ଧରିଥାନ୍ତି ମାତ୍ର କୃଷ୍ଣଙ୍କୁ ଦେବାପାଇଁ ତାଙ୍କୁ ଲାଜ ଲାଗୁଥାଏ । ଭକ୍ତର ଭଗବାନ । କୃଷ୍ଣଙ୍କୁ କେଉଁକଥା ଅଜଣା ସେ ସୁଦାମାଂକ ଠାରୁ ପୁଟୁଳିଟି ଛଡ଼ାଇ ଖୁଦଭଜା ଅତି ଆନନ୍ଦରେ ଖାଇଲେ । ତାଙ୍କ ରାଣୀମାନେ ମଧ୍ୟ ଖୁଦଭଜା ପାଇବା ପାଇଁ କୃଷ୍ଣଙ୍କ ନେହୁରା ହେଲେ । ବାଲ୍ୟବନ୍ଧୁଙ୍କ ସତ୍କାର ଦେଖି ସୁଦାମାଙ୍କ ଚକ୍ଷୁରୁ ଧାର ଧାର ହୋଇ ଲୁହ ବୋହିଯାଉଥାଏ । କୃଷ୍ଣ ନିଜ ସଖାଙ୍କୁ ନିଜ ହାତରେ ସ୍ନାନ କରାଇବାକୁ ନେଲେ । ତାଙ୍କ ବହୁମୂଲ୍ୟ ବସ୍ତ୍ର ଅଲଂକାର ସୁଗନ୍ଧ ଦ୍ରବ୍ୟରେ ଭୂଷିତ କରାଇଲେ । ଷଡ଼ରସ ବ୍ୟଞ୍ଜନ ଖୁଆଇ ନିଜର ଅମଳିନ ବନ୍ଧୁତ୍ୱର ଆଦର୍ଶ ଦେଖା-ଇଲେ । ଏତେ ସ୍ୱର୍ଗ, ଆନନ୍ଦ, ଐଶ୍ୱର୍ଯ୍ୟ ମଧ୍ୟରେ ବୁଡ଼ିରହି ନିଜର ଦାରିଦ୍ର୍ୟ, ନିଜ ପରିବାରର ଦୟନୀୟ ଅବସ୍ଥା କଥା ସମ୍ପୂର୍ଣ୍ଣ ଭୁଲିଗଲେ ସୁଦାମା ।

ଦିନାକେତେ ସଖାଙ୍କ ଘରେ ରହିବା ପରେ ସୁଦାମା କୃଷ୍ଣଙ୍କ ଠାରୁ ବିଦାୟ ନେଇ ନିଜଘରକୁ ବାହୁଡ଼ିଲେ । ବାଟରେ ଭାବୁଥାନ୍ତି—"ଆହା ! କି ଭାଗ୍ୟ ମୋର ! ପୂର୍ବ ଜନ୍ମର ସୁକୃତ ନଥିଲେ କୃଷ୍ଣ ସଙ୍ଗ ମୁଁ ଲାଭକରିପାରି ନଥାନ୍ତି । କିନ୍ତୁ ଯେଉଁଥିପାଇଁ

ଦ୍ୱାରକା ଯାଉଥିଲେ ସେ ବାଟଯାକରେ ସଖାଙ୍କୁ କିଛି କହିପାରିଲେ ନାହିଁ । ଏବେ ସ୍ନେହ, ଆଦର, ସେବା ଯତ୍ନ, ଭୋଜନ, ବିଦାୟ ଭିତରେ ମୋ ଦାରିଦ୍ର୍ୟ ଅବସ୍ଥା ଭଳି ଏତେ ଛୋଟକଥା ମୁଁ କିପରି ବନ୍ଧୁଙ୍କୁ କହିଥାନ୍ତି ?

ମନରେ ଅନୁମାନ ରଚନା କରି ସୁଦାମା ଆସି ନିଜ ଗ୍ରାମରେ ପହଞ୍ଚି ଦେଖିଲେ ତାଙ୍କର କୁଡ଼ିଆ ଘର ଉଭେଇ ଯାଇଛି ଆଉ ତା' ବଦଳେ ଠିଆ ହୋଇଛି ପ୍ରକାଣ୍ଡ କୋଠାଘର । ତାଙ୍କୁ ଦେଖି ବହୁମୂଲ୍ୟବାନ ବସ୍ତ୍ର ଅଳଂକାର ପିନ୍ଧିଥିବା ତାଙ୍କର ପତ୍ନୀ ଓ ପିଲାମାନେ ବହୁ ଦାସଦାସୀଙ୍କ ଗହଣରେ ଆସି ସୁଦାମାଙ୍କୁ ପାଛୋଟି ନେଲେ । ସୁଦାମାଙ୍କ ଆଶ୍ଚର୍ଯ୍ୟ କହିଲେ ନସରେ । ତାଙ୍କ ସ୍ତ୍ରୀ ତାଙ୍କୁ ପଚାରିଲେ—"ତୁମେ ତ' ଣ ତୁମ ସଖାଙ୍କୁ ଏତେ ସମ୍ପଦର ଅଧିକାରୀ ହେବାପାଇଁ ମାଗିଲ !" ସୁଦାମା କହିଲେ—"ନାହିଁ ନା'ତ ମୁଁ ମୁହଁରୁ କିଛି ମାଗିନାହିଁ । ମାତ୍ର ଅନ୍ତର୍ଯ୍ୟାମୀଙ୍କୁ କେଉଁ କଥା ଅଗୋଚର ! ମୋର ମନକଥା ମୁଁ ନକହିଲେ ମଧ୍ୟ ସେ ଠିକ୍ ଜାଣି ପାରିଛନ୍ତି ଏବଂ ତାଙ୍କର କରୁଣା କଟାକ୍ଷ ମୋ ଉପରେ ପଡ଼ିବାରୁ ଆମର ଚିର ଦାରିଦ୍ର୍ୟ ଆପେ ଆପେ ଘୁଞ୍ଚି ଯାଇଛି । ସୁଦାମାଙ୍କ ଚକ୍ଷୁରୁ ଧାର ଧାର ଲୁହ ଝରି ଆସିଲା । ସେଇଠି ଆଣ୍ଠୁମାଡ଼ି ବସି ସେ ଭଗବାନ କୃଷ୍ଣଙ୍କୁ ସ୍ତୁତି ଜଣାଇଲେ । ତାଙ୍କ ପତ୍ନୀ ଓ ପିଲାମାନେ ମଧ୍ୟ ସେହି ପ୍ରାର୍ଥନାରେ ଯୋଗ-ଦେଲେ । ଧନ୍ୟ ଭଗବାନ ! ଧନ୍ୟ ତୁମର ଲୀଳା ।

ଶିଶୁପାଳର ଏକାନ୍ତ ଅନୁଗତ ବନ୍ଧୁ ଥିଲା ଶାଲ୍ୱ । ବନ୍ଧୁ ମୃତ୍ୟୁର ପ୍ରତିଶୋଧ ନେବାପାଇଁ ସେ ଶିବଙ୍କ ଉଦ୍ଦେଶ୍ୟରେ ଘୋରତପସ୍ୟା କଲା । ଶିବ ତା' ତପସ୍ୟାରେ ସନ୍ତୁଷ୍ଟ ହେଲେ । ଶାଲ୍ୱ ବର ମାଗିଲା ଯେ ତା' ପାଇଁ ଶିବ ଏଭଳି ଗୋଟାଏ ରଥ ଦିଅନ୍ତୁ ଯାହା ମନ ଅନୁସାରେ ଚାଲିବ । ଇଚ୍ଛା ଅନୁସାରେ ଦୃଶ୍ୟମାନ ହେଉଥିବ ଓ ମାୟା କରୁଥିବ । ସେ ରଥରେ ବସିଲେ ତାକୁ କେହି ଜାଣିପାରିବେ ନାହିଁ । ଶିବ ଶାଲ୍ୱକୁ ସେହି ବର ଦେଲେ । ଶିବଙ୍କ ନିର୍ଦ୍ଦେଶରେ ମାୟାବୀ ମୟଦାନବ ଶାଲ୍ୱ ପାଇଁ ସେଭଳି ଗୋଟାଏ ରଥ ନିର୍ମାଣ କରିଦେଲା । ଶାଲ୍ୱ ସେହି ରଥରେ ଚଢ଼ି ଅକଳନ ସୈନ୍ୟ ସାମନ୍ତ ନେଇ ଦ୍ୱାରକା ଆକ୍ରମଣ କଲା । ଶ୍ରୀକୃଷ୍ଣ ସେତେବେଳକୁ ରାଜସୂୟ ଯଜ୍ଞ ଯୋଜନା ପାଇଁ ହସ୍ତିନାରେ ଥାନ୍ତି ଶାଲ୍ୱକୁ ବଳଭଦ୍ର, ପ୍ରଦ୍ୟୁମ୍ନ ତଥା ଯାଦବମାନେ ପ୍ରତିରୋଧ କଲେ । ମାତ୍ର ଶିବବରରେ ବଳୀୟାନ ଶାଲ୍ୱର ମାୟା ଯୁଦ୍ଧରେ ପରାସ୍ତ ହେଲେ । ପ୍ରଦ୍ୟୁମ୍ନ ଚେତା ହରାଇ ତଳେ ପଡ଼ିଗଲେ । ଏ ଖବର ପାଇ ହସ୍ତିନାରୁ ଶ୍ରୀକୃଷ୍ଣ ଆସି ଶାଲ୍ୱସହିତ ଯୁଦ୍ଧ କଲେ । ଶାଲ୍ୱ ବସୁଦେବଙ୍କୁ ହାଣିଦେଲା ଶ୍ରୀକୃଷ୍ଣ କ୍ରୋଧହୋଇ ଶାଲ୍ୱର ମାୟାରଥକୁ ଚୂର୍ଣ୍ଣିଭୂତ କଲେ ଏବଂ ସୁଦର୍ଶନ ଚକ୍ର ଦ୍ୱାରା ଶାଲ୍ୱକୁ ବଧ କଲେ । ଶାଲ୍ୱର ପତନ ପରେ ଦନ୍ତବକ୍ର ଏବଂ ବିଦୂରଥକୁ ମଧ୍ୟ କୃଷ୍ଣ ବଧକଲେ ।

ବୃକାସୁର ବୋଲି ଅସୁରଟିଏ ଥାଏ । ସେ ଶିବଙ୍କ ଉଦ୍ଦେଶରେ ଘୋର ତପସ୍ୟା କଲା । ନିଜ ଦେହରୁ ମାଂସ କାଟି ହୋମକୁଣ୍ଡରେ ଆହୁତି ଦେଲା । ଶେଷରେ ନିଜର

ମୁଣ୍ଡଟିକୁ ପର୍ଶୁଦ୍ୱାରା ହାଣି ହୋମ କୁଣ୍ଡରେ ନିକ୍ଷେପ କରିବାକୁ ଯାଉଛି ଶିବ ସନ୍ତୁଷ୍ଟ ହୋଇ ପାର୍ବତୀଙ୍କ ସହ ଅଗ୍ନିକୁଣ୍ଡରୁ ହିଁ ପ୍ରକଟ ହେଲେ । ଅସୁର ଶିବଙ୍କ ଦର୍ଶନ ପାଇବା ସଙ୍ଗେ ସଙ୍ଗେ ନିଜର ପୂର୍ବସ୍ୱର ଫେରିପାଇଲା । ସେ ଶିବଙ୍କୁ ବର ମାଗିଲା—"ପ୍ରଭୁ ! ମୋତେ ଏହି ବର ଦିଅନ୍ତୁ ମୁଁ ଯାହା ମୁଣ୍ଡରେ ହାତ ଦେବି ସେ ଭସ୍ମ ହୋଇଯିବ । ଶିବ କହିଲେ —'ତଥାସ୍ତୁ । ଆଜିଠାରୁ ତୋର ନାମ ଭସ୍ମାସୁର ହେବ । ଶିବଙ୍କ ସହିତ ପାର୍ବତୀଙ୍କ ଭୁବନ ମୋହିନୀ ସୁନ୍ଦର ରୂପ ଦେଖି ଅସୁର ଭାବିଲା ପ୍ରଥମେ ଶିବଙ୍କ ମୁଣ୍ଡରେ ହାତ ରଖି ତାଙ୍କୁ ଭସ୍ମ କରି ପାର୍ବତୀଙ୍କୁ ବିବାହ କରାଯାଇପାରେ । ସଙ୍ଗେ ସଙ୍ଗେ ବର ପରୀକ୍ଷା ପାଇଁ ଶିବଙ୍କ ଆଡ଼କୁ ଧାଇଁଲା । ମୂର୍ଖକୁ ବରଟିଏ ଦେଇଛନ୍ତି ଶିବ କରିବେ କ'ଣ ? ଅନ୍ୟ ଉପାୟ ନ ଦେଖି ଆତ୍ମରକ୍ଷା ପାଇଁ ପାର୍ବତୀଙ୍କୁ ନେଇ ଦୌଡ଼ିଲେ । ଶିବ ଧାଉଁଛନ୍ତି ଅସୁର ଗୋଡ଼ାଉଛି । ଶିବଙ୍କୁ ତିନିପୁରରେ ଠାବ ମିଳିଲା ନାହିଁ । ସେ ଶେଷରେ ଦ୍ୱାରକାରେ ପହଞ୍ଚି କୃଷ୍ଣଙ୍କୁ ଡାକ ପକାଇଲେ । ଭଗବାନ ଶ୍ରୀକୃଷ୍ଣ ଯାଇ ଅସୁର ଆଗରେ ଠିଆ ହୋଇଗଲେ ବ୍ରାହ୍ମଣ ବେଶରେ । ସେ ଅସୁରକୁ ଶିବଙ୍କୁ ଗୋଡ଼ାଉଥିବା କାରଣ ପଚାରିଲେ । ଅସୁର ଶିବଙ୍କ ବର ତାଙ୍କ ଉପରେ ପରୀକ୍ଷା କରିବବୋଲି ଗୋଡ଼ାଉଥିବା କଥା କହିଲା । ବ୍ରାହ୍ମଣବେଶୀ କୃଷ୍ଣ କହିଲେ—"ତୁ ଶିବଙ୍କ କଥାରେ ଅଯଥା ବିଶ୍ୱାସ କରି ତାଙ୍କ ପଛରେ ଗୋଡ଼ାଉଛୁ କାହିଁକି ? ସେ ସବୁବେଳେ ଗଞ୍ଜେଇ ନିଶାରେ ଭୋଳହୋଇ ନିଜକୁ ଭୋଳେଶ୍ୱର ବୋଲନ୍ତି । ଘର ନାହିଁ ପର୍ବତରେ ରହନ୍ତି । ପାଗଳ ବୋଲିହୋଇ ସାପ ଧରି ବୁଲୁଛନ୍ତି । ନିଜର ସ୍ତ୍ରୀବାଧା ସିଏ କରି ପାରୁନାହିଁ ସେ ଅନ୍ୟକୁ କି ବର ଦେବ ? ଶିବ ତୋତେ ଠକି ଦେଇଛନ୍ତି । ପରୀକ୍ଷା ପାଇଁ ଏତେ ପରିଶ୍ରମ କରି ତାଙ୍କ ପଛରେ ଗୋଡ଼ାଇ ହାଲିଆ ହେଉଛୁ କାହିଁକି ? ନିଜ ମୁଣ୍ଡରେ ହାତ ଦେଇ ପରୀକ୍ଷା କରି ଦେଖୁନୁ ମୋ କଥା ସତ କି ମିଛ ସଙ୍ଗେ ସଙ୍ଗେ ଜାଣିଯିବୁ । ବିଷ୍ଣୁ ମାୟାରେ ଅସୁର ପଡ଼ିଗଲା । ସେ ମୂର୍ଖ ଆଗପଛ ନ ବିଚାରି ନିଜ ମୁଣ୍ଡକୁ ନିଜେ ଛୁଇଁ ଦେଲା ଓ ତତ୍‌କ୍ଷଣାତ୍ ଭସ୍ମ ହୋଇଗଲା । ଏହି ମହାବିପଦରୁ ଉଦ୍ଧାର କରି-ଥିବାରୁ ଶିବ କୃଷ୍ଣଙ୍କୁ କୃତଜ୍ଞତା ଜଣାଇ ଫେରିଗଲେ ।

ଗୁରୁ ସାନ୍ଦୀପନିଙ୍କର ମୃତ ପୁତ୍ରକୁ ଯମପୁରରୁ ଫେରାଇ ଆଣିଥିବା ଖବର ପାଇବାପରେ ଦେବକୀ କଂସ ଦ୍ୱାରା ହତ୍ୟା କରାଯାଇଥିବା ନିଜର ଛଅପୁଅଙ୍କୁ ପାଇବାପାଇଁ ଆଶା ବାନ୍ଧି ବସିଲେ । ସେ କୃଷ୍ଣଙ୍କୁ ଏଥିନିମନ୍ତେ ଅନୁରୋଧ କଲେ । ପୂଜନୀୟା ଜନନୀଙ୍କ ଇଚ୍ଛା ଯୋଗୁଁ କୃଷ୍ଣ ଯୋଗବଳରେ ପାତାଳପୁରକୁ ଗଲେ । ପାତାଳରେ ରାଜା ବଳି-କୃଷ୍ଣଙ୍କ ଦର୍ଶନ କରି ପ୍ରୀତ ହେଲେ । କୃଷ୍ଣ ଅଭିଶପ୍ତ ଛଅ ଭାଇଙ୍କୁ ଫେରାଇଦେବା ପାଇଁ ଅନୁରୋଧ କଲେ । ବଳି ସେମାନଙ୍କୁ ଫେରାଇଦେଲେ । କୃଷ୍ଣଙ୍କ ସେହି ଭାଇ ହେଲେ—ସ୍ମର, ଉଦ୍‌ଗୀଥ, ପରିଷଙ୍ଗ, ଘୃଣି, କ୍ଷୁଦ୍ରଭୃତ ଏବଂ ପତଙ୍ଗ । କୃଷ୍ଣ ଏମାନଙ୍କୁ ଆଣି ମାତା ଦେବକୀଙ୍କୁ ଅର୍ପଣ କଲେ । ଦେବକୀଙ୍କ ଆନନ୍ଦ କହିଲେ ନସରେ ।

ନିଜର ପ୍ରତିଶ୍ରୁତି ଅନୁସାରେ ମୟଦାନବ ଯୁଧିଷ୍ଠିରଙ୍କ ପାଇଁ ଏକ ଅଦ୍ଭୁତ ପ୍ରାସାଦ ନିର୍ମାଣ କଲେ । ଦୁର୍ଯ୍ୟୋଧନ ଇତ୍ୟାଦି ସେ ପ୍ରାସାଦ ଦେଖି ଈର୍ଷାନ୍ୱିତ ହୋଇଗଲେ ।

ବାହାରକୁ ଜଳପୂର୍ଣ୍ଣ ଚଟାଣ ଭଳି ଦେଖାଯାଉଥିବା ଚଟାଣରେ ଦୁର୍ଯ୍ୟୋଧନ ଲୁଗାଟେକି ଚାଲିବାରୁ ସମସ୍ତେ ହସିଦେଲେ । ସେହିଭଳି ଖାଲି ଚଟାଣଭଳି ଦେଖାଯାଉଥିବା ଚଟାଣରେ ଖାଲି ଦର୍ପରେ ଚାଲି ଜଳକୁଣ୍ଡରେ ଖସି ପଡ଼ିଲେ । ସେଠାରେ ଦ୍ରୌପଦୀ ଓ ଅନ୍ୟନାରୀ ମାନେ ଦୁର୍ଯ୍ୟୋଧନଙ୍କ ଦୟନୀୟ ଅବସ୍ଥା ଦେଖି ହସିଦେଲେ । ଦୁର୍ଯ୍ୟୋଧନ ଥିଲେ ବଡ଼ ଆତ୍ମ ଅଭିମାନୀ । ଏହାର ପ୍ରତିଶୋଧ ନେବାପାଇଁ ମନେ ମନେ ଠିକ୍ କଲେ ।

ହସ୍ତିନାରେ ଧୃତରାଷ୍ଟ୍ରଙ୍କ ଶହେ ପୁତ୍ର କୌରବ ଓ ପାଣ୍ଡୁଙ୍କର ପାଞ୍ଚପୁତ୍ର ପାଣ୍ଡବ ନାମରେ ଜଣାଶୁଣାଥିଲେ । ଜ୍ୟେଷ୍ଠ ହିସାବରେ ଯୁଧିଷ୍ଠିର ରାଜ ସିଂହାସନ ପାଇଥିଲେ ମାତ୍ର ଦୁର୍ଯ୍ୟୋଧନ ଛଳବଳ କୌଶଳ କରି ଏହି ରାଜସିଂହାସନ ଅଧିକାର କରିବାକୁ ଚାହୁଁଥିଲେ । ଦୁର୍ଯ୍ୟୋଧନଙ୍କ ଅଜାଙ୍କ ନାମ ସୁବଳ ଓ ସେ ଗାନ୍ଧାରର ରାଜାଥିଲେ । ତାଙ୍କ ଝିଅ ଗାନ୍ଧାରୀ ଧୃତରାଷ୍ଟ୍ରଙ୍କୁ ବିବାହ କରିଥିଲେ । ମାତ୍ର ଗାନ୍ଧାରୀ ଉଆଁସୀ କନ୍ୟା ଥିବାରୁ ତାଙ୍କୁ ବର ମିଳୁ-ନଥିଲା । ଶେଷରେ ଜନ୍ମରୁ ଅନ୍ଧ ରାଜା ଧୃତରାଷ୍ଟ୍ରଙ୍କ ସହ ଗାନ୍ଧାରୀଙ୍କୁ ବିବାହ କରାଗଲା । ହେଲେ ପୂର୍ବରୁ ଏକ ଡାଳିମ୍ବଗଛ ସହିତ ଗାନ୍ଧାରୀଙ୍କୁ ବିବାହ କରାଗଲା ଓ ସେ ଗଛଟି ମରିଗଲା । ତାଙ୍କର ଉଆଁସ ଦୋଷ କଟିଗଲା ।

ଥରେ ଭୀମ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ କଳି ଲାଗିଲା । ଦୁର୍ଯ୍ୟୋଧନ ଭୀମଙ୍କୁ ପବନ ପୁତ୍ର ବୋଲି ଡାକିବାରୁ ଭୀମ ଅପମାନିତ ବୋଧ କଲେ ଏବଂ କୃଷ୍ଣଙ୍କ ପ୍ରରୋଚନାରେ ଦୁର୍ଯ୍ୟୋଧନଙ୍କୁ ଗୋଲକ ପୁତ୍ର ବୋଲି ଡାକିଲେ । ଦୁର୍ଯ୍ୟୋଧନ ଏହାର କାରଣ ମା'ଙ୍କଠାରୁ ବୁଝିଲା ପରେ ତାଙ୍କର ସମସ୍ତ ରାଗ ଯାଇ ଠୁଳ ହେଲା ଅଜାଙ୍କ ଉପରେ ସେ ସୁବଳ ତାଙ୍କର ପୁତ୍ରମାନଙ୍କୁ ବନ୍ଦୀ କରି ରଖିଥିଲେ । ବନ୍ଦୀଘରେ କେବଳ ଶକୁନିଙ୍କ ଛଡ଼ା ସମସ୍ତେ ମୃତ୍ୟୁ ଲଭିଲେ । ସୁବଳ ମରିବା ପୂର୍ବରୁ ଏହାର ପ୍ରତିଶୋଧ ନେବାପାଇଁ ଶକୁନିକୁ କହିଦେଇ ଗଲେ ଏବଂ ତାଙ୍କ ନିଜ ହାତର ଅଙ୍ଗୁଳି ହାଡ଼ରେ ପଶାକାଠି ତିଆରି କଲେ ପଶାଖେଳରେ ଯାହା ଦାନ ଡାକିବ ପଡ଼ିବ ବୋଲି କହିଲେ । ଶକୁନି ସେହିଭଳି ପଶାକାଠି ତିଆରି କରି ପ୍ରତିଶୋଧ ପାଇଁ ପ୍ରୟୋଗ ଅପେକ୍ଷାରେ ଥାନ୍ତି ।

ତେବେ କାରାବାସୀଠାରୁ ଦୁର୍ଯ୍ୟୋଧନ, ଶକୁନି ପଶାଖେଳରେ ଧୁରନ୍ଧର ବୋଲି ଜାଣିପାରି ତାଙ୍କୁ କାରାଗାରରୁ ମୁକ୍ତ କଲେ ଏବଂ ନିଜର ମନ୍ତ୍ରୀ ଭାବେ ନିଯୁକ୍ତ କଲେ । ନିଜର ଚତୁରପଣିଆ ଓ କଥନ ଭଙ୍ଗୀରେ ଶକୁନି ଦୁର୍ଯ୍ୟୋଧନଙ୍କୁ ମୁଗ୍ଧ କଲେ । ଫଳତଃ ଶକୁନି ଇଙ୍ଗିତରେ ଦୁର୍ଯ୍ୟୋଧନ ଚାଲିଲେ । ପ୍ରତିଶୋଧ ପରାୟଣ ଦୁର୍ଯ୍ୟୋଧନ ଶକୁନି ପରାମର୍ଶରେ ଯୁଧିଷ୍ଠିରଙ୍କୁ ପଶାଖେଳିବା ପାଇଁ ନିମନ୍ତ୍ରଣ କଲେ । ସେ କାଳରେ ପଶାଖେଳ ଏକ ରାଜକୀୟ ସମ୍ମାନ ଥିଲା । ଜଣେ ପଶାଖେଳିବା ପାଇଁ ନିମନ୍ତ୍ରଣ କଲେ ଅନ୍ୟଜଣେ ଯୋଗନଦେବାଟା ଥିଲା ଅରୁଚିକର ପରିସ୍ଥିତି । ଯୁଧିଷ୍ଠିର ସର୍ବଗୁଣସମ୍ପନ୍ନ ସମସ୍ତ ସଦ୍-ଗୁଣର ଅଧିକାରୀ ଥିଲେ ମଧ୍ୟ ପଶାଖେଳର ନିଶା ଥିଲା ତାଙ୍କର ଏକମାତ୍ର କଳଙ୍କ ।

ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ପଶାଖେଳ ହେଲା । ଶକୁନିଙ୍କ ଚାଲିତ ପଶାକାଠ ଦ୍ୱାରା ଖେଳ ଚାଲୁଥାଏ । ଯୁଧିଷ୍ଠିର ବାରମ୍ବାର ହାରୁଥାନ୍ତି । ଶକୁନି ପ୍ରରୋଚନାରେ ସେ ନିଜର ସମସ୍ତ ଧନସମ୍ପତ୍ତି, ରାଜ୍ୟ, ନିଜର ଭାଇ ଓ ଶେଷରେ ଦ୍ରୌପଦୀଙ୍କୁ ପଣରଖି ପରାସ୍ତ ହେଲେ ।

ପ୍ରଥମେ ଦୁର୍ଯ୍ୟୋଧନ ନିଜ ଭାଇ ଦୁଃଶାସନଙ୍କୁ ପଠାଇଲେ ଦ୍ରୌପଦୀଙ୍କୁ ହସ୍ତିନା ରାଜସଭାରେ ଉପସ୍ଥିତ କରାଇବା ପାଇଁ । ଦୁଃଶାସନ ଦ୍ରୌପଦୀଙ୍କ ମୁକୁଳା କେଶକୁ ଧରି ଟାଣି ଟାଣି ରାଜ ଦରବାରରେ ପହଞ୍ଚିଲେ । ଦୁର୍ଯ୍ୟୋଧନ ଆଦେଶ ଦେଲେ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ପାଇଁ । ଦ୍ରୌପଦୀ ଏହି ବିପଦରୁ ଉଦ୍ଧାର ପାଇଁ ଶ୍ରୀକୃଷ୍ଣଙ୍କୁ ଆକୁଳ କଣ୍ଠରେ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ସେହି ସମୟରେ ଦ୍ୱାରକାରେ ନିଜ ରାଣୀମାନଙ୍କ ସହ ପଶା ଖେଳୁଥିଲେ । ସେ ଦ୍ରୌପଦୀଙ୍କ ଡାକ ଶୁଣି ହଠାତ୍ ହସ୍ତିନାରେ ପହଞ୍ଚିଲେ । ଶୂନ୍ୟରେ ରହି ଦ୍ରୌପଦୀଙ୍କ ଶରୀରକୁ ମାୟାବସ୍ତ୍ରରେ ଆବୃତ କଲେ । ଦୁଃଶାସନ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ପାଇଁ ଶାଢ଼ୀ ଅଞ୍ଚଳଧରି ଯେତେ ଟାଣୁଥାଏ ସେତେ ଲୁଗା ଦ୍ରୌପଦୀଙ୍କ ଦେହରୁ ବାହାରୁଥାଏ । ଶେଷରେ ହାଲିଆ ହୋଇ ପଡ଼ିଲା । ଏଣେ ସମସ୍ତେ ଏ କଥାର ନିନ୍ଦା କଲେ । ଦୁର୍ଯ୍ୟୋଧନ ନିଜ ଆଦେଶ ପ୍ରତ୍ୟାହାର କଲେ । ଖେଳରେ ହାରିଥିବାରୁ ଭୀମ ଅର୍ଜୁନ ପ୍ରଭୃତି ଦ୍ରୌପଦୀଙ୍କ ପ୍ରତି ଏ ଅନ୍ୟାୟ ଅତ୍ୟାଚାରର ପ୍ରତିରୋଧ ନକରି ନୀରବ ରହିବାକୁ ବାଧ୍ୟ ହେଲେ । ଭୀମ ମନେ ମନେ ପ୍ରତିଜ୍ଞା କଲେ ଯେ ଦିନେ ଦୁଃଶାସନର ହାତ ଦୁଇଟା ଉପାଡ଼ି ତା'ରକ୍ତରେ ଦ୍ରୌପଦୀଙ୍କ ମୁକୁଳା କେଶ ବନ୍ଧନ କରିବେ ।

ଦୁର୍ଯ୍ୟୋଧନ ଆଦେଶରେ ପାଣ୍ଡବମାନେ ବନବାସ କରିବା ପାଇଁ ଚାଲିଗଲେ । ଦ୍ୱାଦଶ ବର୍ଷ ବନବାସ ପରେ ଏକ ବର୍ଷ ଅଜ୍ଞାତ ବାସ କରିବା ପାଇଁ ପଡ଼ିଥିଲା । ଏହି ବନବାସ କାଳରେ କୃଷ୍ଣ ପାଣ୍ଡବମାନଙ୍କୁ ବହୁପ୍ରକାର ସାହାଯ୍ୟ କରିଥିଲେ । ସମସ୍ତଙ୍କ ଠାରୁ କୃଷ୍ଣ ଓ ଅର୍ଜୁନଙ୍କ ବନ୍ଧୁତା ଥିଲା ଏକାନ୍ତ ଅନ୍ତରଙ୍ଗ । ବଳରାମଙ୍କ ବିରୋଧ ସତ୍ତ୍ୱେ ନିଜର କୂଟନୀତି ପ୍ରୟୋଗରେ ନିଜର ଭଉଣୀ ସୁଭଦ୍ରା ସହିତ ଅର୍ଜୁନଙ୍କର ବିବାହ କରାଇ ପାରିଥିଲେ ।

ଥରେ କୃଷ୍ଣ ଓ ସତ୍ୟଭାମା ପଶା ଖେଳୁଥିଲେ । କୃଷ୍ଣ ପଶାଖେଳରେ ହାରିଗଲେ । ସର୍ତ୍ତ ଅନୁସାରେ ପୁଣ୍ୟ ଅର୍ଜନ ପାଇଁ କୃଷ୍ଣଙ୍କୁ ନାରଦଙ୍କ ହାତରେ ଦାନଦେବା କଥା । ମାତ୍ର ସତ୍ୟଭାମା ଏହା ବୁଝି ନଥିଲେ । ନାରଦ କଲେ ନଛୋଡ଼ବନ୍ଧା । ସତ୍ୟଭାମା ଏଥିରେ ବିକଳ ହେବାରୁ ନାରଦ କହିଲେ କୃଷ୍ଣଙ୍କ ଓଜନ ସହିତ ସମାନ ଓଜନର ସୁନା ଦାନ କଲେ ସେ କୃଷ୍ଣଙ୍କୁ ମୁକ୍ତ ଦେବେ । ବଡ଼ ସଙ୍କଟ ଆସିଲା । କୃଷ୍ଣ ଗୋଟାଏ ପାଖରେ ବସି-ଲେ । ସତ୍ୟଭାମା ନିଜର ଯେତେ ଅଳଙ୍କାର ଥିଲା ଏପରିକି ସମସ୍ତ ରାଣୀଙ୍କଠାରୁ ମାଗି ଆଣି ସୁନା ଓଜନ କଲେ ମାତ୍ର କୃଷ୍ଣଙ୍କ ଓଜନ ସହିତ ତାହା ସମାନ ହେଲନାହିଁ । ଶେଷରେ ରୁକ୍ମିଣୀ ଗୋଟାଏ ତୁଳସୀପତ୍ର ଆଣି ନିକିତିରେ ଥୋଇଦେଲେ ।

ଏଥର କୃଷ୍ଣ ହାଲୁକା ହୋଇ ଉପରକୁ ଉଠିଗଲେ । ଅସଲ କଥା ହେଲା ରୁକ୍ମଣୀ ଭକ୍ତିର ସହିତ ତୁଳସୀପତ୍ର ଅର୍ପଣ କରିଥିଲେ । ଭକ୍ତିର ଭଗବାନ ବୋଲି ପୁଣି ଥରେ ପ୍ରମାଣିତ ହେଲା । ନାରଦ ତୁଳସୀ ପତ୍ରଟି ନେଇ ଚାଲିଗଲେ । ରୁକ୍ମଣୀଙ୍କ ଯୋଗୁଁ ସତ୍ୟଭାମା କୃଷ୍ଣଙ୍କୁ ଫେରି ପାଇଥିବାରୁ ରୁକ୍ମଣୀଙ୍କ ଦାସୀ ବୋଲି ସେହିଦିନଠାରୁ ନିଜକୁ ପ୍ରତିପାଦିତ କଲେ ।

ଶ୍ରୀକୃଷ୍ଣଙ୍କ ସହାୟରୁ ପାଣ୍ଡବମାନେ ବନବାସ ସମସ୍ତ କଟାଇଦେଲେ । ଏହି ସମୟରେ ଭୀମ ଅର୍ଜୁନ ବହୁ ଦୁଷ୍ଟ ଦାନବଙ୍କୁ ବଧ କଲେ । ବକାସୁର, କୀଚକ, ହିଡ଼ିମ୍ବି ପ୍ରଭୃତି ମଲେ । ଏକ ବର୍ଷ ଅଜ୍ଞାତବାସ ମଧ୍ୟ ବିରାଟ ଦେଶରେ ପାଣ୍ଡବମାନେ କଟାଇ ଦେଲେ । ବନବାସରୁ ଫେରିବା ପରେ ମଧ୍ୟ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ରାଜ୍ୟ ଦେବାକୁ ରାଜି ହେଲେନାହିଁ । "ବିନା ଯୁଦ୍ଧେ ସୂଚ୍ୟଗ୍ର ମେଦିନୀ" ନ ଦେବା ପାଇଁ ସେ ନିଜ ସିଦ୍ଧାନ୍ତରେ ଅଟଳ ରହିଲେ । ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ତରଫରୁ ଦୂତସାଜି ଯୁଦ୍ଧ ବନ୍ଦ ପ୍ରସ୍ତାବ ଦେଇଗଲେ । ସେ ନାନା କଥା କହି ଶାନ୍ତି ସ୍ଥାପନା ପାଇଁ ଚେଷ୍ଟା କରୁଥାନ୍ତି । ଶେଷରେ ପାଣ୍ଡବମାନଙ୍କ ପାଇଁ ରାଜ୍ୟ ନଦେଲେ ପାଞ୍ଚଟି ପଲ୍ଲୀ ମାତ୍ର ଦେବାପାଇଁ ଦୁର୍ଯ୍ୟୋଧନଙ୍କୁ ବୁଝାଇଲେ । ହସ୍ତିନା ରାଜସଭାରେ ଭୀଷ୍ମ, ଦ୍ରୋଣ ପ୍ରଭୃତି ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧ ନକରିବା ପାଇଁ ଅନୁରୋଧ କଲେ ମାତ୍ର ମଦଗର୍ବୀ ଅହଂକାର ଦୁର୍ଯ୍ୟୋଧନ ସବୁ ପ୍ରତ୍ୟାଖ୍ୟାନ କରିଦେଇ ଯୁଦ୍ଧପାଇଁ ଡାକରା ଦେଲା । ଓଲଟି କୃଷ୍ଣ ପାଣ୍ଡବ ମାନଙ୍କ ସପକ୍ଷରେ କହୁଥିବା ଯୋଗୁଁ ତାଙ୍କୁ ଅପମାନ ଦେଲା । କୃଷ୍ଣଙ୍କୁ ବନ୍ଦୀ କରିବା ପାଇଁ ଆଦେଶ ଦେଲା ମାତ୍ର କୃଷ୍ଣ ନିଜ ମାୟାରୂପ ଦେଖାଇ ସମସ୍ତଙ୍କୁ ଚମତ୍କୃତ କରି ଫେରିଆସିଲେ ।

ଶେଷରେ ମହାଭାରତ ଯୁଦ୍ଧର ଆୟୋଜନ ହେଲା । କୌରବ ଓ ପାଣ୍ଡବ ପକ୍ଷ ନିଜ ନିଜର ସମର୍ଥକ ରାଜାମାନଙ୍କୁ ଏକାଠି କରିବାରେ ଲାଗିଲେ । ଏଣେ ଶ୍ରୀକୃଷ୍ଣ ଦ୍ୱାରକାରେ ଅକ୍ଷିବନ୍ଦ କରି ବିଶ୍ରାମ ନେଉଥିଲେ । ତାଙ୍କର ସାହାଯ୍ୟପାଇବା ପାଇଁ ପ୍ରଥମେ ଦୁର୍ଯ୍ୟୋଧନ ଗଲେ ଓ ମୁଣ୍ଡ ପାଖରେ ବସି ନିଦ୍ରାଭଙ୍ଗ ପର୍ଯ୍ୟନ୍ତ ଅପେକ୍ଷା କଲେ । ପରେ ଅର୍ଜୁନ ଯାଇ କୃଷ୍ଣଙ୍କ ପାଦପାଖରେ ବସି ଅପେକ୍ଷା କଲେ । ହଠାତ୍ କୃଷ୍ଣଙ୍କ ନିଦ୍ରାଭଙ୍ଗ ହେଲା । ତାଙ୍କର ଦୃଷ୍ଟି ପ୍ରଥମେ ପଡ଼ିଲା ଅର୍ଜୁନ ଉପରେ । ସେ ଉଠି ବସି ପଡ଼ିବା ପରେ ଦୁର୍ଯ୍ୟୋଧନଙ୍କୁ ଦେଖି ସମ୍ବୋଧନ ଜଣାଇଲେ । ଦୁହେଁ ମାଳ କୃଷ୍ଣ ଓ ତାଙ୍କ ସେନାବାହିନୀଙ୍କୁ ଯୁଦ୍ଧରେ ଯୋଗଦେବା ପାଇଁ ନିମନ୍ତ୍ରଣ ଜଣାଇବା ପାଇଁ ଆସିଛନ୍ତି ବୋଲି କହିଲେ । ଶ୍ରୀକୃଷ୍ଣ ଗୋଟାଏ ସର୍ତ୍ତ ରଖିଲେ—ସେ କହିଲେ "ମୁଁ ଯେଉଁ ପକ୍ଷରେ ରହିଲେ ମଧ୍ୟ ଅସ୍ତ୍ରଧାରଣ କରିବିନାହିଁ । ଅନ୍ୟ ପକ୍ଷରେ ମୋର ଯାଦବସେନା ରହି ଯୁଦ୍ଧ କରିବେ । ଦୁହେଁ ନିଜ ଇଚ୍ଛାରେ ବାଛି ନିଅ । ମାତ୍ର ନିଦ୍ରାଭଙ୍ଗ ପରେ ମୁଁ ଅର୍ଜୁନଙ୍କୁ ପ୍ରଥମେ ଦେଖିବାହେତୁ ତାଙ୍କୁ ପ୍ରଥମ ଅଧିକାର ସେ ପାଇବେ ।"

ଅର୍ଜୁନ କେବଳ ଶ୍ରୀକୃଷ୍ଣଙ୍କୁ ବାଛିଲେ । ଅନ୍ୟ ପକ୍ଷରେ ସମସ୍ତ ଯାଦବ ସେନାଙ୍କୁ ପାଇ ଦୁର୍ଯ୍ୟୋଧନ ମହାଆନନ୍ଦରେ ଚଲେ ।

ଯଥା ସମୟରେ ମହାଭାରତ ଯୁଦ୍ଧ ଆରମ୍ଭ ହୋଇଗଲା । ଏକଦା କ୍ଷତ୍ରିୟରୁଧିର ତର୍ପଣ ପାଇଁ ମହାବୀର ପର୍ଶୁରାମ ପଞ୍ଚକୁଣ୍ଡ ନିର୍ମାଣ କରିଥିଲେ ସେହି କୁରୁକ୍ଷେତ୍ରର ବିଶାଳ ପ୍ରାନ୍ତରରେ ହିଁ ଯୁଦ୍ଧ ଆୟୋଜନ । ସମସ୍ତ ଦେଶର ରାଜା ମହାରାଜାମାନେ ନିଜ ନିଜ ସମର୍ଥନ ଅନୁସାରେ କୌରବ ଓ ପାଣ୍ଡବ ପକ୍ଷରେ ଯୋଗଦେଲେ । ରଥାରୋହୀ, ଗଜାରୋହୀ ଅଶ୍ୱାରୋହୀ, ପଦାତିକ ସୈନ୍ୟ ଓ ସେନାପତିମାନଙ୍କ ସମାବେଶରେ ଭେରୀ, ତୂରୀ, ଶଙ୍ଖ ତଥା ଅନ୍ୟାନ୍ୟ ଯୁଦ୍ଧ ବାଦ୍ୟମାନ ବାଜିଉଠିଲା । ସ୍ୱର୍ଗର ଦେବତାମାନେ ମଧ୍ୟ ଯୁଦ୍ଧ ଦେଖିବା ପାଇଁ ଶୂନ୍ୟରେ ରହି ଅବାକ୍ ହୋଇ ସ୍ଥିର ରହିଲେ । ମହାବୀର ଭୀଷ୍ମ ହେଲେ କୌରବ ବାହିନୀର ସେନାପତି ଆଉ ଅର୍ଜୁନ ହେଲେ ପାଣ୍ଡବ ବାହିନୀର ସେନାପତି ସ୍ୱୟଂ ଶ୍ରୀକୃଷ୍ଣ ଅସ୍ତ୍ର ନଧରି ଅର୍ଜୁନଙ୍କ ଅନୁରୋଧ କ୍ରମେ ତାଙ୍କ ରଥରେ ସାରଥୀ ହେଲେ ।

ଶ୍ରୀକୃଷ୍ଣଙ୍କ କୃପାରୁ ସଞ୍ଜୟଙ୍କର ଥିଲା ଦିବ୍ୟଦୃଷ୍ଟି । ସେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ନିକଟରେ ରାଜପ୍ରାସାଦରେ ବସି କୁରୁକ୍ଷେତ୍ର ରଣାଙ୍ଗନର ଦୃଶ୍ୟ ଦେଖି ପାରୁଥିଲେ ଓ ସେମାନଙ୍କୁ ଶୁଣାଉଥିଲେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥନେଇ କୌରବସେନାଙ୍କ ସମ୍ମୁଖରେ ରଖିଲେ । ଦୁଇ ପକ୍ଷର ସେନାମାନଙ୍କୁ ଦେଖିବାପରେ ଅର୍ଜୁନଙ୍କ ମନର ସବୁ ସାହସ ଲୋପପାଇ ବିରାଗ ଦେଖାଦେଲା । ଶତ୍ରୁ ପକ୍ଷରେ ଯେଉଁମାନେ ଥିଲେ ସେମାନେ ହେଲେ ପିତାମହ ଭୀଷ୍ମ, ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟ, ଦୁଃଶାସନାଦି ଭାଇ, ଶଲ୍ୟ, ସମ୍ବନ୍ଧୀ, ମାମୁଁ ତଥା ବନ୍ଧୁଜନ ଗୁରୁଜନାଦି ଆତ୍ମୀୟ ସକଳ । ତାଙ୍କର କଣ୍ଠ ବାଷ୍ପାକୁଳ ହୋଇ ଉଠିଲା, ଚକ୍ଷୁରୁ ଲୋତକ ବହି ଆସିଲା । ଦେହ ଥରିଲା, ମନ ବ୍ୟାକୁଳ ହେଲା ଏବଂ ହାତରୁ ଆପେ ଆପେ ଧନୁ ଖସିପଡ଼ିଲା । ସେ କରୁଣ କଣ୍ଠରେ କହିଲେ—"ସଖା ମୁଁ ଯୁଦ୍ଧ କରିବି ନାହିଁ । ଆତ୍ମୀୟସ୍ୱଜନମାନଙ୍କୁ ଯୁଦ୍ଧରେ ମାରି ଯେଉଁ ରାଜ୍ୟ ମିଳିବ ତାହା ସ୍ୱର୍ଗତୁଲ୍ୟ ହେଲେ ମଧ୍ୟ ମୋର ପ୍ରୟୋଜନ ନାହିଁ । ମୁଁ ଅଯଥା ନିଜ ବଂଶ ନାଶକରି ପାପଅର୍ଜନ କରିବିନାହିଁ ।" ଏହା କହି ଅର୍ଜୁନ ମୁଣ୍ଡପୋତି ବସି ରହିଲେ ।

ଭଗବାନ ଶ୍ରୀକୃଷ୍ଣ ନିଜ ମୁଖରେ ଗୀତାର ପବିତ୍ର ଧର୍ମବାଣୀ ଅର୍ଜୁନଙ୍କୁ ଶୁଣାଇ କହିଲେ—"ସଖା ଅର୍ଜୁନ ! ଏ ମାୟା ସଂସାରରେ କେହି ସ୍ଥାୟୀ ନୁହେଁ । ସଂସାରକୁ ଆସିବା ଲୋକ କେବଳ କର୍ମ କରିଯିବା ଉଚିତ । ଫଳାଫଳ ଭଗବାନଙ୍କ ହାତରେ ନିର୍ଭର କରେ । ଭଗବାନଙ୍କ ସୃଷ୍ଟି ଏହି ସଂସାରରେ ସେ ହିଁ ଏକମାତ୍ର କର୍ତ୍ତା । ଦେଶ, କାଳ, ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ କେବଳ ନିଜ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ହିଁ ପ୍ରାଣୀର ଅଧିକାର । ତୁମେ କ୍ଷତ୍ରିୟ । ତୁମର ଧର୍ମ ଯୁଦ୍ଧ କରିବା । ଯୁଦ୍ଧ କ୍ଷେତ୍ରରେ ଏଭଳି ଅସ୍ତ୍ର ତ୍ୟାଗ କରିବା କାପୁରୁଷ ପଣିଆ ! ତୁମେ ଜାଣିରଖ ଯେ ତୁମେ ଯାହା କରିବାକୁ ଯାଉଛ ତାହା କେବଳ ଭଗବାନଙ୍କ କାର୍ଯ୍ୟ କରୁଛ । ତୁମେ ସେ କାର୍ଯ୍ୟ ସମ୍ପାଦନର

ମାଧ୍ୟମ । ପରଂବ୍ରହ୍ମ ଭଗବାନ ସର୍ବମୟ କର୍ତ୍ତା । ପୃଥିବୀରେ ଯେତେବେଳେ ଅଧର୍ମର ମାତ୍ରା ବଢ଼ିଯାଏ, ଅନାସ୍ଥାର ବ୍ୟାପିଯାଏ ସେତେବେଳେ ସାଧୁମାନଙ୍କ ରକ୍ଷା କରିବା ପାଇଁ, ପୃଥିବୀରେ ପୁଣି ଧର୍ମ ସଂସ୍ଥାପନ ପାଇଁ ଭଗବାନ ଜନ୍ମ ବାରମ୍ବାର ଅବତାର ରୂପରେ ଜନ୍ମ ଏ ପୃଥିବୀକୁ ଆସି ଲୀଳା ରଚନା କରନ୍ତି । ଦୁଷ୍ଟ ସଂହାର କରି ଶାନ୍ତି ଆଣି ସେ ପୁଣି ସ୍ୱସ୍ଥାନକୁ ଗମନ କରନ୍ତି । ଏ ସଂସାରର ସର୍ବତ୍ର ପରମାତ୍ମା ବିଦ୍ୟମାନ । ସେହି ପରମାତ୍ମାଙ୍କ ଠାରୁ ଆତ୍ମା ସବୁ ଜାତହୋଇ ସକଳଘଟରେ ବିରାଜମାନ କରୁଛି । ପ୍ରକୃତରେ ଆତ୍ମା ଅମର ଓ ଏହାର କ୍ଷୟ ନାହିଁ । ପୁରୁଣା ପୋଷାକକୁ ତ୍ୟାଗ କରି ଆମେ ଯେପରି ନୂତନ ପୋଷାକ ପରିଧାନ କରୁ ସେହିଭଳି ଶରୀରଟି ବ୍ୟବହାର ଉପଯୋଗୀ ନହେଲେ ଆତ୍ମା ସେଥିରୁ ବାହାରି ନୂତନ ଶରୀର ଧାରଣ କରେ । ଆତ୍ମା ଅଜର ଅମର । ଏହି ସୈନ୍ୟମାନେ ମୃତ୍ୟୁକୁ ଆସିଛନ୍ତି ସେମାନେ ନିଶ୍ଚିତ ଭାବେ ଶରୀର ତ୍ୟାଗ କରି ନୂତନ ଶରୀର ଗ୍ରହଣ କରିବେ । ଯୁଗ ଯୁଗ ଧରି ତୁମେ ଓ ମୁଁ ଧର୍ମସ୍ଥାପନ ପାଇଁ ନରନାରାୟଣ ରୂପେ ଏ ପୃଥିବୀରେ ଅବତୀର୍ଣ୍ଣ ହୋଇଛେ । ତୁମେ ମାୟା ଦ୍ୱାରା ଆଚ୍ଛନ୍ନ ହୋଇଥିବାରୁ ତୁମର ଏକଥା ମନେନାହିଁ କିନ୍ତୁ ମୁଁ ମାୟା ଦ୍ୱାରା ଆଚ୍ଛନ୍ନ ନୁହେଁ ତେଣୁ ସବୁକଥା ମୋର ମନେଅଛି । ତୁମେ ବର୍ତ୍ତମାନ ଯୁଦ୍ଧ କର । ଶ୍ରୀକୃଷ୍ଣଙ୍କ ଏହି ବାଣୀରେ ଅର୍ଜୁନ ସମ୍ପୂର୍ଣ୍ଣ ରୂପେ ସନ୍ତୁଷ୍ଟ ହେଲେନାହିଁ । ପ୍ରକୃତରେ ଭଗବାନ କୃଷ୍ଣ ଅର୍ଜୁନଙ୍କୁ ଦିବ୍ୟଚକ୍ଷୁ ପ୍ରଦାନ କଲେ ଓ ତାଙ୍କୁ ନିଜର ବିଶ୍ୱରୂପ ଦେଖାଇଲେ ।

ଅର୍ଜୁନ ଦେଖିଲେ କୋଟିଏ ସୂର୍ଯ୍ୟର ତେଜ ଧାରଣ କରି ସ୍ୱୟଂ ପରଂବ୍ରହ୍ମ ପ୍ରକଟ ହେଲେ । ତାଙ୍କର ବିଶାଳକାୟ ଶରୀରରେ ସମସ୍ତ ଦେବତାଙ୍କ ମସ୍ତକ ସହସ୍ର ସହସ୍ର ଭୁଜ । ବ୍ରହ୍ମାଣ୍ଡ ମାଳମାଳ ହୋଇ ପ୍ରତି ରୋମ କୂପରେ ବିରାଜମାନ କରୁଛି । କେତେ ଶହ କୋଟି ଦେବ ଦେବୀ, ଗ୍ରହ, ନକ୍ଷତ୍ର, ସୃଷ୍ଟି ସ୍ଥିତି ପ୍ରଳୟ ସେହି ଶରୀରଭିତରେ ଅନବରତ ଘଟୁଛି । ଅଗ୍ନିରେ ପତଙ୍ଗ ପଡ଼ିଲା ଭଳି ପ୍ରାଣୀମାନେ ସୃଷ୍ଟି ହୋଇ ପୁଣି ସେହି ବିଶ୍ୱରୂପର ପ୍ରଳୟ ଅଗ୍ନି ମୁହଁରେ ଲୀନ ହୋଇ ଯାଉଛନ୍ତି । ଅର୍ଜୁନ ଦେଖିଲେ ଯେଉଁମାନଙ୍କ ବିନାଶ ପାଇଁ ସେ ପଛଘୁଞ୍ଚା ଦେଉଛନ୍ତି ସେହି ଭୀଷ୍ମ, ଦ୍ରୋଣ ପ୍ରଭୃତି ତାଙ୍କ ଆତ୍ମୀୟମାନେ ବିଶ୍ୱରୂପୀ ପରଂବ୍ରହ୍ମଙ୍କ ମହାକାଳ ଅଗ୍ନି ମଧ୍ୟରେ ବିଲୀନ ହୋଇଯାଉଛନ୍ତି । ଏଭଳି ଭୟଙ୍କର ରୂପ ଦେଖି ଅର୍ଜୁନଙ୍କ ମୁଣ୍ଡ ଘୂରିଗଲା । ସେ ବିଶ୍ୱରୂପୀ ପରମାତ୍ମାଙ୍କୁ ସ୍ତୁତି କରିବାକୁ ଲାଗିଲେ । ପୁନର୍ବାର ଶାନ୍ତ କମନୀୟ କୃଷ୍ଣ ରୂପ ଧାରଣ ପାଇଁ ବିନମ୍ର ପ୍ରାର୍ଥନା କଲେ । ପରମାତ୍ମାଙ୍କ ଚତୁର୍ଦ୍ଦିଗକୁ ନମସ୍କାର କରି ପାଦତଳେ ପଡ଼ିରହିଲେ ।

ଶ୍ରୀକୃଷ୍ଣ ବିଶ୍ୱରୂପ ପରିହାର କରି ପୁଣି ନିଜର କମନୀୟ ରୂପ ଧାରଣ କଲେ । ଅର୍ଜୁନଙ୍କ ଜ୍ଞାନୋଦୟ ହୋଇ ସାରିଥିଲା । ଭଗବାନଙ୍କ ଇଚ୍ଛାଧୀନ ସେ, ନିମିତ୍ତ ମାତ୍ର । କୃଷ୍ଣ ହିଁ ଭଗବାନ । ତାଙ୍କ ଦିବ୍ୟଦର୍ଶନ ରୂପ ପାଇଥିବା ଯୋଗୁଁ ସେ କୃତକୃତ୍ୟ ହେଲେ ।

ଶ୍ରୀକୃଷ୍ଣଙ୍କୁ ବାରମ୍ବାର ପ୍ରଣାମ ଜଣାଇ ଧନୁ ଧରି ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଶଙ୍ଖନାଦ କରି ଯୁଦ୍ଧାରମ୍ଭ ସୂଚନା ଦେଲେ । ଫଳତଃ ଶହ ଶହ ଶଙ୍ଖ ଓ ରଣଭେରୀ ବାଜିଉଠିଲା । ଏହିମତ ମହାଭାରତ ଯୁଦ୍ଧ ଆରମ୍ଭ ହୋଇଗଲା ।

କପଟୀ କୃଷ୍ଣ ଯୁଦ୍ଧରେ ଅସ୍ତ୍ରପିନା ଧାରଣ କଲେନାହିଁ ହେଲେ ପ୍ରତିଟି କ୍ଷେତ୍ରରେ ପାଣ୍ଡବମାନଙ୍କୁ ପଥପ୍ରଦର୍ଶନ ଦେଇ ପ୍ରକୃତ ଯୁଦ୍ଧ ସେ ହିଁ ପରିଚାଳନା କରୁଥିଲେ । ତାଙ୍କର ଅଲୌକିକ ଶକ୍ତି ହିଁ ଯୁଦ୍ଧ କ୍ଷେତ୍ରରେ କାର୍ଯ୍ୟ କରୁଥିଲା ସମସ୍ତ ବିପଦ ଆପଦରୁ ସେ ପାଣ୍ଡବମାନଙ୍କୁ ରକ୍ଷା କରୁଥିଲେ । ଏହି ବିଲକ୍ଷଣ ମହାଭାରତ ଯୁଦ୍ଧ ଅଠରଦିନ ଚାଲି ଚଳିଲା । ଭୀମ ନିଜର ପ୍ରତିଜ୍ଞା ପୂରଣ ପାଇଁ ଦୁଃଶାସନର ଛାତି ଉପାଡ଼ି ବଧ କଲେ ଓ ଦ୍ରୌପଦୀ ମୁକୁଳିତ କେଶ ବନ୍ଧନକଲେ । ଯୁଦ୍ଧକ୍ଷେତ୍ରରେ ନପୁଂସକ ଶିଖଣ୍ଡୀକୁ ଦେଖାଇ ଇଚ୍ଛାମୃତ୍ୟୁ ଲାଭ କରିଥିବା ପରାକ୍ରାନ୍ତ ଯୋଦ୍ଧା ଭୀଷ୍ମଙ୍କୁ ଅସ୍ତ୍ରତ୍ୟାଗ କରାଇଦେଲେ କୃଷ୍ଣ । ସେ ଶରଶଯ୍ୟାରେ ଶୋଇ ସୂର୍ଯ୍ୟଙ୍କ ଉତ୍ତରାୟଣ ପର୍ଯ୍ୟନ୍ତ ଶୁଭବେଳାରେ ମୁକ୍ତିଲାଭ ପାଇଁ ରହିଲେ । ଅର୍ଜୁନ ପୁତ୍ର ଅଭିମନ୍ୟୁ ବୀରଗତି ପାଇଲା । ଦ୍ରୋଣ, ଜୟଦ୍ରଥ ପ୍ରଭୃତି ମଲେ । ସର୍ବଶେଷରେ ଭୀମ ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗ କରି ହତ୍ୟାକଲେ । ଭଗବାନ କୃଷ୍ଣ ଯେଉଁ ପକ୍ଷର ବିଜୟ ଲକ୍ଷ୍ମୀ ହେବ ପକ୍ଷରେ ନିଶ୍ଚୟ ପାଣ୍ଡବମାନେ ଜୟଲାଭ କଲେ ।

ଧୃତରାଷ୍ଟ୍ରଙ୍କ ହୃଦୟ ପୁତ୍ର ଶୋକରେ ଦୁଃଖ ଓ କ୍ରୋଧରେ ଜର୍ଜରିତ ହେଲା । ପ୍ରତିଶୋଧ ପରାୟଣ ଅନ୍ଧରାଜା ଭୀମଙ୍କୁ ଆଲିଙ୍ଗନ କରିବା ପାଇଁ ଚାହିଁଲେ । ମାତ୍ର କୃଷ୍ଣ ତାଙ୍କର ଅଭିପ୍ରାୟ ଅନୁମାନ କରି ଏକ ଲୁହାଭୀମ ତାଙ୍କ ଆଗରେ ରଖିଦେଲେ । ଧୃତରାଷ୍ଟ୍ର ତାହାକୁ ଆଲିଙ୍ଗନ କରିବା ମାତ୍ରେ ତାହା ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା । ଗାନ୍ଧାରୀ ; କୃଷ୍ଣ ହିଁ କୌରବ ମାନଙ୍କ ପରାଜୟର ଏକ ମାତ୍ର କାରଣ ହୋଇଥିବାରୁ ଅଭିଶାପ ଦେଲେ—"ହେ କୃଷ୍ଣ କୌରବ ବଂଶକୁ ତୁମେ ଯେପରି ନିଜେ କପଟରେ ଧ୍ୱଂସ କରିଛ ସେହିଭଳି ତୁମର ଯାଦବ ବଂଶକୁ ତୁମେ ହିଁ କ୍ଷୟ କରିବ ।"

ଶ୍ରୀକୃଷ୍ଣ ହସି ହସି କହିଲେ—"ହେ ! ମହାଦେବୀ । ବିଧିର ବିଧାନ ଆପଣଙ୍କ ମୁହଁରେ ହିଁ ପ୍ରକାଶ ପାଇଛି । ଏହା ଅବଶ୍ୟ ଘଟିବ ।"

ଅଶ୍ୱତ୍ଥାମା ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କୁ ଶୋଇଥିବା ବେଳେ ଗୁପ୍ତରେ ହତ୍ୟାକଲେ । କୃଷ୍ଣ ଏକଥା ଜାଣିବା ପରେ ଅର୍ଜୁନଙ୍କ ସାହାଯ୍ୟରେ ଅଶ୍ୱତ୍ଥାମାଙ୍କୁ ବାନ୍ଧି ଦ୍ରୌପଦୀଙ୍କ ପାଦତଳେ ପକାଇଲେ । ଅଶ୍ୱତ୍ଥାମା ଜୀବନଭିକ୍ଷା କରିବାରୁ ଦ୍ରୌପଦୀ କ୍ଷମାଦେଲେ । ମାତ୍ର କୃଷ୍ଣଙ୍କ ଉପଦେଶ ଅନୁସାରେ ଅଶ୍ୱତ୍ଥାମାଙ୍କ ମୁଣ୍ଡରୁ ମଣି ବାହାରକରି ତାଙ୍କୁ ଛାଡ଼ି ଦିଆଗଲା । ମାତ୍ର ଶତ୍ରୁର ଶତ୍ରୁତା ସହଜରେ ଲୋପପାଏ ନାହିଁ । ଅଭିମନ୍ୟୁଙ୍କ ବିଧବା ପତ୍ନୀ ଉତ୍ତରାଙ୍କ ଗର୍ଭରେ ଥିବା ପାଣ୍ଡବ ବଂଶର ଶେଷକୁଳଙ୍କୁ ଭ୍ରୁଣ ହତ୍ୟା କରିବା ପାଇଁ ଅଶ୍ୱତ୍ଥାମା ବ୍ରହ୍ମଶର ପ୍ରେରଣ କଲେ । ଫଳରେ ପିଲାଟି ନିର୍ଜୀବ ପ୍ରାୟ ଜନ୍ମହେଲା । ଶ୍ରୀକୃଷ୍ଣ ତାହାକୁ ପରୀକ୍ଷା କରି ଜୀବନଦାନ ଦେଲେ ଓ ପିଲାଟିର ନାମ ପରୀକ୍ଷିତ ବୋଲି ରଖିଲେ ।

ଯଥା ସମୟରେ ପାଣ୍ଡବମାନଙ୍କୁ ରାଜଧର୍ମ ଉପଦେଶ ଦେଇ ଭୀଷ୍ମ ପ୍ରାଣତ୍ୟାଗ କଲେ । ଯୁଧିଷ୍ଠିରଙ୍କ ରାଜ୍ୟାଭିଷେକ କରାଗଲା । ହସ୍ତିନାରେ ରାଜାହେଲେ ଯୁଧିଷ୍ଠିର । ସେ ଥିଲେ ଧର୍ମନନ୍ଦନ ଧର୍ମରାଜ । ଜଣେ ଧାର୍ମିକ ଶାସକ ହିସାବରେ ସେ ପ୍ରଜାଙ୍କ ପ୍ରିୟଭାଜନ ହୋଇପାରିଲେ । ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ଶ୍ରୀକୃଷ୍ଣ ସେତେବେଳେ ଦ୍ୱାରକାରେ ଥାନ୍ତି ।

ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତି ଯୋଗୁଁ ଯାଦବ ଯୁବକମାନେ ଉଦ୍ଧତ ହୋଇ ଉଠିଥାନ୍ତି । ବଳରାମ ଯୁଦ୍ଧ ପୂର୍ବରୁ ହିଁ ତୀର୍ଥାଟନରେ ଯାଇଥାନ୍ତି । ଦିନେ ଯାଦବମାନେ କୃଷ୍ଣଙ୍କ ପୁଅ ଶାମ୍ବକୁମାରକୁ ସ୍ତ୍ରୀ ବେଶରେ ସଜାଇ ବୁଲି ଆସିଥିବା ଜଣେ ଋଷିଙ୍କୁ ପଚାରିଲେ—"ମହାଶୟ ଏହି ନାରୀଟି ଗର୍ଭବତୀ ଅଛି । କହନ୍ତୁ ଏହାର ପୁଅ ହେବ ନା ଝିଅ ହେବ ? ଋଷି ଏ ପରିହାସରେ ରାଗିଯାଇ ଅଭିଶାପ ଦେଲେ—"ଏହା ପେଟରେ ଯାହା ଅଛି ତାହାଦ୍ୱାରା ଯଦୁବଂଶ ଧ୍ୱଂସ ହେବ । ଋଷି ଅଭିଶାପର ସଦ୍ୟ ଫଳ ଫଳିଲା । ଶାମ୍ବକୁମାରଙ୍କ ପେଟରୁ ଲୌହ ମୂଷଳଟିଏ ଖସିପଡ଼ିଲା । ଯାଦବ ଯୁବକମାନେ ଡ଼ରିଗଲେ । ଶ୍ରୀକୃଷ୍ଣ ଓ ବଳରାମ ଫେରିବା ପରେ ସମସ୍ତେ ଡର ଡର ଏ କଥା ଜଣାଇଲେ । ଶ୍ରୀକୃଷ୍ଣ ଭୀମଙ୍କୁ ଡକାଇ ଲୌହ ମୂଷଳଟିକୁ ପଥରରେ ଘୋରି ଘୋରି ସାରିଦେବା ପାଇଁ କହିଲେ । ଭୀମସେନ ସମୁଦ୍ର କୂଳରେ ବସି ଏକ ବଡ଼ ପଥରରେ ଲୌହ ମୂଷଳଟି ଘୋରି ଘୋରି ଶେଷକଲେ । ଶେଷକୁ ଛୋଟ ଅଂଶଟିଏ ରହିଲା ତାହାକୁ ସେତେ ଘୋରିଲେ ମଧ୍ୟ ଶେଷହେଲା ନାହିଁ । ବିରକ୍ତ ହୋଇ ଭୀମ ସେଇଟିକୁ ସମୁଦ୍ର ଭିତରକୁ ଫୋପାଡ଼ିଦେଇ ପଳାଇଲେ । ଦୈବାତ୍ ଗୋଟାଏ ମାଛ ସେ ଲୌହଟି ଗିଳିଦେଲା । ଯୋଗକୁ ଦିନେ ଜରାନାମକ ଶବର ସମୁଦ୍ରରେ ଜାଲ ପକାଇ ମାଛ ଧରୁଥିବାବେଳେ ସେହି ଲୁହାଗିଳା ମାଛଟି ଧରାପଡ଼ିଲା । ଘରେ ମାଛଟି କାଟିବାରୁ ସେ ଲୁହାଖଣ୍ଡ ପାଇଲା । ଭଲ ଲୁହାଟି ଦେଖି ସେ ସେଥିରେ ତୀରଟିଏ ତିଆରିକଲା ।

ଏଣେ ମୂଷଳର ଲୌହ ଗୁଣ୍ଡ ଗୁଡ଼ିକ ସମୁଦ୍ର କୂଳରେ ଯାଇ ସଲ୍ଲର ବଣ ସୃଷ୍ଟି କଲା । କିଛି ଦିନ ପରେ ଦ୍ୱାରକାରେ ଏକ ଉତ୍ସବ ହେଲା । ଯଦୁମାନେ କାଦମ୍ବରୀ ପାନ କରି ଭୋଳ ହୋଇଗଲେ । କ୍ରୀଡ଼ା କୌତୁକରୁ ଗଣ୍ଡଗୋଳର ସୂତ୍ରପାତ ହେଲା । ସଲ୍ଲର ବଣରେ ପଶି ସେମାନେ ନିଶାରେ ମତ୍ତ ହୋଇ ପରସ୍ପରକୁ ଚିହ୍ନି ପାରିଲେ ନାହିଁ । ସମସ୍ତଙ୍କ ଅଲକ୍ଷ୍ୟରେ ଶ୍ରୀକୃଷ୍ଣ ନିଜ ମାୟା ବିସ୍ତାର କରି ଏ କାଣ୍ଡ ଭିଆଇଥିଲେ । ଫଳରେ ପରସ୍ପର ମଧ୍ୟରେ ହାଣକାଟ ହୋଇ ସମସ୍ତେ ମଲେ । ଦ୍ୱାରକାରେ ସ୍ତ୍ରୀ ଓ ପିଲାମାନଙ୍କ କ୍ରନ୍ଦନ ରୋଳରେ ଭରିଗଲା । ବଳରାମ ଏଭଳି ଘଟଣାରେ ମର୍ମାହତ ହୋଇ ଦ୍ୱାରକା ତ୍ୟାଗକଲେ ଏବଂ ଜଙ୍ଗଲରେ ଯୋଗଧ୍ୟାନରେ ବସି ଦେହ ତ୍ୟାଗକଲେ । ଶେଷନାଗ ରୂପେ ସେ ବୈକୁଣ୍ଠ ଗମନ କରି କୃଷ୍ଣଙ୍କ ଆଗମନ ଅପେକ୍ଷାରେ ରହିଲେ ।

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଡକାଇ କହିଲେ—"ସଖା ତୁମେ ଦ୍ୱାରକାର ଅବଶିଷ୍ଟ ପ୍ରଜା, ନରନାରୀ, ଶିଶୁ ଓ ବୃଦ୍ଧମାନଙ୍କୁ ଇନ୍ଦ୍ରପ୍ରସ୍ଥରେ ସ୍ଥାନ ଦିଅ । ସମୁଦ୍ର ଠାରୁ ନେଇ ଦ୍ୱାଦଶ ଯୋଜନ ସ୍ଥାନ ମାଗି ଦ୍ୱାରକା ନଗରୀ ସ୍ଥାପନ କରାଇଥିଲି ତାହା ଫେରାଇ ଦେବା ପାଇଁ ମୁଁ ଇଚ୍ଛାକରେ ।" ଅର୍ଜ୍ଜୁନ ଦ୍ୱାରକାବାସୀଙ୍କୁ ସୁରକ୍ଷିତ ସ୍ଥାନକୁ ନେଇଗଲେ ।

ଶ୍ରୀକୃଷ୍ଣ ଏଥର ନିଜର ପରମଭକ୍ତ ଉଦ୍ଧବଙ୍କୁ ଡାକି ନାନା ଉପଦେଶ ଦେଇ ବଦ୍ରିକାଶ୍ରମରେ ଅବସ୍ଥାନ ପାଇଁ ପଠାଇଦେଲେ । ଶ୍ରୀକୃଷ୍ଣ ଏଭଳି ନିଜ ଅବତାରର ଲୀଳାଶେଷ ପାଇଁ ପ୍ରସ୍ତୁତ ହେଲେ । ସମୁଦ୍ର କୂଳସ୍ଥ ବଣ ଜଙ୍ଗଲ ଭିତରେ ଏକ ପିଆଳ ଲତା ତଳେ ଶ୍ରୀକୃଷ୍ଣ ବିଶ୍ରାମ ନେଇ ନିଜର ପ୍ରିୟବଂଶୀ ବାଦନ କଲେ । ତାଙ୍କ ବଂଶୀରୁ ସୁମଧୁର ତାନରେ ଦେବଗାନ୍ଧାର ଯମୁନା କଲ୍ୟାଣ ଓ ହିନ୍ଦୋଳ ସ୍ୱର ଭାସି ଆସିଲା । ସମଗ୍ର ପ୍ରକୃତି ପୁଲକିତ ହୋଇ ଉଠିଲା । ଶ୍ରୀକୃଷ୍ଣ ଗଛକୁ ଆଉଜି ଗୋଡ଼ଉପରେ ଗୋଡ଼ ଥୋଇ ବିଶ୍ରାମ କରୁଥାନ୍ତି । ତାଙ୍କର ପାଦପଦ୍ମଟି ସବୁଜ ଲତାଗହଳରେ ହରିଣ କାନଭଳି ଦୂରରୁ ଦେଖାଯାଉଥାଏ ।

ଜରାଶବର ଶିକାର ଖୋଜି ସେଠାରେ ପହଞ୍ଚିଲା । କୃଷ୍ଣଙ୍କ କାନଟିକୁ ହରିଣର ଭ୍ରମ ସୃଷ୍ଟି କରୁଥାଏ, ସେ ନୂତନ ଲୁହାରେ ମୁନ କରିଥିବା ଶରଟି ଧନୁରେ ଚଢ଼ାଇ ନିକ୍ଷେପ କଲା । ଋଷି ଅଭିଶାପରୁ ଜାତ ମୁଷଳର ଶେଷାଂଶଟି ହିଁ କୃଷ୍ଣଙ୍କ ଦେହତ୍ୟାଗର କାରଣ ହେଲା । ଶର ମାରିବା ପରେ ଜରାଶବର ଶିକାର ସନ୍ଧାନ ପାଇଁ ଘଟଣା ସ୍ଥଳକୁ ଆସିଲା । ମାତ୍ର ସେଠାରେ ରକ୍ତ ଜର୍ଜ୍ଜରିତ ଶ୍ରୀକୃଷ୍ଣଙ୍କ ଏଦଶା ଦେଖି ବ୍ୟାକୁଳ ଭାବେ କାନ୍ଦିବାକୁ ଲାଗିଲା । ମାତ୍ର ଦୟାସାଗର ଶ୍ରୀକୃଷ୍ଣ ତାକୁ ସାନ୍ତ୍ୱନା ଦେଇ କହିଲେ—"ଏଥିରେ ତୁମର ଦୁଃଖ କରିବାର କିଛି ନାହିଁ । ତ୍ରେତୟା ଯୁଗରେ ତୁମେ ବାଲୀ ପୁତ୍ର ଅଙ୍ଗଦ ରୂପେ ଜନ୍ମଲାଭ କରିଥିଲ । ରାମ ଅବତାରରେ ମୁଁ ଗଛ ଉହାଡରେ ରହି ତୁମପିତା ବାଲୀଙ୍କୁ ସଂହାର କରିଥିଲି । ତୁମେ ମନମଧ୍ୟରେ ଥରେ ପାଇଁ ମାତ୍ର ଭାବିଥିଲ ମୋତେ ମଧ୍ୟ ଏଭଳି ଗଛ ଉହାଡ଼ରେ ରହି ବଧ କରିବ ବୋଲି । ପରେ ଅବଶ୍ୟ ମୋ ସମ୍ପର୍କରେ ଆସି ମୋର ସେବା କରିଥିଲ ଅଙ୍ଗଦ ; କିନ୍ତୁ ବତ୍ସ ! ତୁମର ସେ କ୍ଷଣିକ ଇଚ୍ଛାର ପୂରଣ ଦ୍ୱାପର ଯୁଗରେ ଫଳବତୀ ହୋଇଛି ତେଣୁ ତୁମେ ଶୋକ କରନାହିଁ ।" ଶ୍ରୀକୃଷ୍ଣ ଶବରକୁ ନିଜର ସ୍ୱରୂପ ଦେଖାଇବାରୁ ସେ ନିଜର ପୂର୍ବଜନ୍ମ କଥା ସ୍ମରଣ କଲା । ବାରମ୍ବାର କୃଷ୍ଣଙ୍କୁ ପ୍ରଣାମ କରି କ୍ଷମାଭିକ୍ଷା କଲା ।

ଶ୍ରୀକୃଷ୍ଣ ଶବର ଦ୍ୱାରା ନିଜର ସାରଥୀଙ୍କୁ ଡକାଇଲେ । ସାରଥୀ ଦ୍ୱାରା ଅର୍ଜ୍ଜୁନଙ୍କୁ ଡକାଇ ଆଣିଲେ । ଅର୍ଜ୍ଜୁନଙ୍କୁ ନାନା ଉପଦେଶ ଦେବାପରେ ଧନୁହୁଳରେ ନିଜକୁ ସ୍ପର୍ଶ କରିବା ପାଇଁ କହିଲେ । ଅର୍ଜ୍ଜୁନ ସେହିଭଳି କରନ୍ତେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ଶରୀରରୁ ନିଜର କଳା ନିଜେ ହରଣ କରିନେଲେ ଏବଂ ଦରହାସ ମୁଖରେ ଚିର ବିଶ୍ରାମ ଗ୍ରହଣ କଲେ । ନିଜର ପାର୍ଥିବ ଲୀଳା ଶେଷକରି ଦିବ୍ୟରୂପ ଧାରଣ ପୂର୍ବକ ବୈକୁଣ୍ଠପୁରକୁ ଗଲେ ।

ଅର୍ଜୁନ କୃଷ୍ଣଙ୍କୁ ହରାଇ ଶିଶୁଙ୍କଭଳି କ୍ରନ୍ଦନ କରିବାକୁ ଲାଗିଲେ । ସେ ଏତେ ନିଜକୁ ଅସହାୟ ମନେକଲେ ଯେ ଦୁର୍ବଳତା ତାଙ୍କୁ ଗ୍ରାସକଲା । ଚଲାହରଣ ଯୋଗୁଁ ଯେଉଁ ବିରାଟକାୟ ଗାଣ୍ଡିବ ଧନୁକୁ ସେ ହାତରେ ଧରିପାରୁଥିଲେ ଆଉ ଧରିପାରିଲେ ନାହିଁ ମଥାରେ ବୋହିବାପାଇଁ ହେଲା । ବଜୁଳି ବେଗରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ସମ୍ବାଦ ଦ୍ୱରଅଡ଼େ ଖେଳିଗଲା । ଚତୁର୍ଦ୍ଦିଗ ଶ୍ରୀହୀନ ଦେଖାଗଲା । ଶତ୍ରୁ ମିତ୍ର ନିର୍ବିଶେଷରେ ସମସ୍ତଙ୍କ ଚକ୍ଷୁରେ ଅଶ୍ରୁର ବନ୍ୟା, କ୍ରନ୍ଦନ ରୋଳରେ ଗଗନ ପବନ ବିଷାଦମୟ ହୋଇଉଠିଲା । କୃଷ୍ଣଙ୍କ ଦେହାନ୍ତ ପରେ ପରେ ଦ୍ୱାରକା ସମୁଦ୍ର ଗର୍ଭରେ ଲୀନ ହେଲା । ଯୁଧିଷ୍ଠିରାଦି ପାଣ୍ଡବମାନେ କୃଷ୍ଣଙ୍କ ପାଇଁ ବହୁତ ଶୋକକଲେ । ଚନ୍ଦନକାଠ, ଘୃତ ଇତ୍ୟାଦି ସହିତ ପରେ ବୈଦିକ ନିୟମାନୁସାରେ ଶ୍ରୀକୃଷ୍ଣଙ୍କ ପାର୍ଥିବ ଶରୀରକୁ ସତ୍କାର କରାଗଲା । ଏହିଭଳି କୃଷ୍ଣାବତାରର ଲୀଳା ସମାପ୍ତ ହେଲା ।






କୃଷ୍ଣାବତାର ପରେ ଦ୍ୱାପର ଯୁଗ ଶେଷ ହେଲା ଏବଂ କଳିଯୁଗ ଆରମ୍ଭ ହେଲା । କଳିଯୁଗ ପ୍ରାରମ୍ଭ ପୂର୍ବରୁ ଧର୍ମରାଜ ଯୁଧିଷ୍ଠିର ନିଜ ପତ୍ନୀ ଦ୍ରୌପଦୀ ଓ ଭୀମ, ଅର୍ଜୁନ, ନକୁଳ, ସହଦେବଙ୍କ ସହ ମହାଯାତ୍ରା କଲେ । ପରୀକ୍ଷିତଙ୍କୁ ସେ ରାଜ୍ୟଭାର ଦେଲେ । କଳିଯୁଗର ଲକ୍ଷଣ ହେଲା ଏ ଯୁଗରେ ପାପ ତିନି ଭାଗ ଏବଂ ଧର୍ମ ଏକ ଭାଗ । ନରନାରୀଙ୍କ ଆୟୁଷ ମାତ୍ର ୧୨୦ ବର୍ଷ ଏବଂ ଉଚ୍ଚତା ନିଜ ହାତରେ ତିନି ହାତେଖଣ୍ଡେ । ସମସ୍ତେ ଖାଦ୍ୟଗତ ପ୍ରାଣ ; ଅର୍ଥାତ୍ ଖାଦ୍ୟ ନଖାଇ ପ୍ରାଣ ଧାରଣ କରିପାରିବେ ନାହିଁ । ଦ୍ୱାପର ଯୁଗରେ ରାକ୍ଷସମାନଙ୍କ ସତ୍ତା ସମ୍ପୂର୍ଣ୍ଣ ଲୋପପାଇ ଯାଇଥିଲା ସୁତରାଂ କଳିଯୁଗ ପାଇଁ ରହିଲେ କେବଳ ମନୁଷ୍ୟ । ଅଧର୍ମ ତିନିଭାଗ ହୋଇଥିବାରୁ କଳିଯୁଗର ଆବିର୍ଭାବ ସଙ୍ଗେ ସଙ୍ଗେ ଅସତ୍ୟ, ଅନାଚାର, ବିଶ୍ୱାସଘାତକତା, ପରଶ୍ରୀକାତରତା, ଘୃଣା, ଇର୍ଷା, ଲୋଭ, ଗର୍ବ, ଅହଂକାର, ଉଦ୍ଧତ ପଣିଆ ପ୍ରଭୃତି ରାକ୍ଷସମାନଙ୍କର ତମ ଗୁଣ ଗୁଡ଼ିକ ପ୍ରକଟିତ ହେଲେ । ଏଗୁଡ଼ିକ ସହିତ ଜରା, ବ୍ୟାଧି, ଶୋକ, ଅପମୃତ୍ୟୁ, ମୃତ୍ୟୁ ଲୁଟ୍ ତରାଜ, ଧର୍ଷଣ ପ୍ରଭୃତି ଧରାବକ୍ଷରେ ଆରମ୍ଭ କରିଦେଲେ ସେମାନଙ୍କର ଲୀଳା । ଜାତ ଅଜାତ ଭେଦଭାବ, ମଦ୍ୟ, ମାଂସ, ମାଦକ ଦ୍ରବ୍ୟ ସେବନ, ବଡ଼ମାନଙ୍କ ପ୍ରତି ଅବଜ୍ଞା, ସ୍ୱାର୍ଥପରତା, ଭଗବତ୍ ଭକ୍ତିର ଅଭାବ ଇତ୍ୟାଦି ଦେଖାଦେଲା ଫଳରେ ପାପର ମାତ୍ରା ବୃଦ୍ଧି ପାଇଲା । ମୋଟ ପରମାୟୁ ଏକଶତ

କୋଟିଏ ବର୍ଷ ପର୍ଯ୍ୟନ୍ତ କେହି ଭୋଗକରିବାକୁ ସମର୍ଥ ହେବେନାହିଁ । ଜୀବର କୃତକର୍ମ ଓ ପାପ ଅର୍ଜନ ଅନୁସାରେ ସେମାନଙ୍କ ମୁକ୍ତି ପଥ ଆରମ୍ଭ,ତସ୍ୱେ ଘଷିବାରେ ଲାଗିଲା ।

ସପ୍ତଦ୍ୱୀପାତ ମେଦନୀ—"ସାତଟି ମହାଦେଶ ମଧ୍ୟରୁ ଜମ୍ବୁଦ୍ୱୀପ ଭାରତବର୍ଷରେ ହିଁ ଅନ୍ୟ ଚଉକୋଟି ଯୁଗରେ ମାନବ ଓ ଦାନବ ଲୀଳା ପ୍ରକଟିତ ହୋଇଥିଲା । ମାତ୍ର ଏ ଯୁଗରେ ସନାତନଶୀଳ ପରିପୂର୍ଣ୍ଣ ଅନ୍ୟାନ୍ୟ ମହାଦେଶରେ ଯାଇ ଆର୍ଯ୍ୟମାନେ ବାସକଲେ । ଦେବନାଗରୀ ଲିପି ସଂସ୍କୃତ ଯାହା ଭଗବାନଙ୍କ ସ୍ୱମୁଖରୁ ପ୍ରଚଳିତ ଥିଲା ତାହା କ୍ରମେଣ ବହୁ ନୂତନ ଭାଷା ଓ ଉପଭାଷାରେ ପରିଣତ ହେଲା । ବିଶ୍ୱର ବିଭିନ୍ନ ଭୂଖଣ୍ଡରେ ସ୍ଥାନକାଳ, ପାତ୍ର ଅନୁକ୍ରମେ ନୂତନ ସଭ୍ୟତା ଓ ଭାଷା ଦେଖାଦେଲା । ଭଗବାନଙ୍କୁ ସମସ୍ତେ ସ୍ୱୀକାର କଲେ ମଧ୍ୟ ନିଜ ରୁଚି ଅନୁସାରେ ବିଭିନ୍ନ ମାର୍ଗ ଓ ଢଙ୍ଗରେ ସେମାନେ ଆରାଧନା କଲେ । ନୂତନ ନୂତନ ଧର୍ମ ମତ ପ୍ରବର୍ତ୍ତିତ ହେଲା । ଏଭଳି ପରିବର୍ତ୍ତନମାନ କଳିଯୁଗରେ ସଂଘଟିତ ହେଲା । ମାତ୍ର ଭାରତବର୍ଷର ପୁରାତନ ସଭ୍ୟତା ଓ ବୈଦିକ ଧର୍ମ ଅବ୍ୟାହତ ଥିଲା । କଳିଯୁଗରେ ପ୍ରାକ୍ କାଳରେ ସମଗ୍ର ବିଶ୍ୱରେ ରାଜତନ୍ତ୍ର ଶାସନ ପ୍ରଚଳିତ ଥିଲା ।

ଭାରତରେ ବିଭିନ୍ନ ରାଜ୍ୟରେ ରାଜାମାନେ ଶାସନ କରୁଥିଲେ । ସଂସାରର ଯାବତୀୟ ଲୀଳା ପରମାତ୍ମାଙ୍କ ଇଚ୍ଛାରେ ପରିଚାଳିତ ହୁଏ । କଳିଯୁଗରେ ମଧ୍ୟ ଏହା ଠିକ୍ ପୂର୍ବଭଳି ପରିଚାଳିତ ହେଲା । ତେବେ ଅନ୍ୟଯୁଗ ଗୁଡ଼ିକରେ ଉପାସନା, ଆରାଧନାରେ ଭଗବାନ ସ୍ୱୟଂ ପ୍ରକଟ ହେଉଥିଲେ ମାତ୍ର ଏଯୁଗରେ ପାପର ମାତ୍ରା ବଢ଼ିଯିବାରୁ ସେ ଗୋପ୍ୟ ହୋଇ ରହିଗଲେ । ବିଭିନ୍ନ ମନ୍ଦିର, ମସ୍‌ଜିଦ୍, ଚର୍ଚ୍ଚ ପ୍ରଭୃତିରେ ପ୍ରତିମୂର୍ତ୍ତି ସ୍ଥାପନ କରି ଶୂନ୍ୟତାକୁ କେନ୍ଦ୍ରକରି ଭଗବତ୍ ଆରାଧନା କରାଯାଇଥାଏ । ତେଣୁ ଏ ଯୁଗରେ ଧର୍ମପୀଠ ଗୁଡ଼ିକର ସଂଖ୍ୟା ଅତିମାତ୍ରାରେ ବଢ଼ିଗଲା । ସାରା ବିଶ୍ୱରେ ହଜାର ହଜାର ସଂଖ୍ୟାରେ ଧର୍ମମତାନୁଯାୟୀ ମନ୍ଦିର, ମସ୍‌ଜିଦ୍ ଗୀର୍ଜା, ପାଗୋଡ଼ା ପ୍ରଭୃତି ଗଢ଼ି ଉଠିଲା । ଧରାପୃଷ୍ଠରୁ ଅଧର୍ମ ବା ପାପର ମାତ୍ରା କମାଇବା ଭାର ଭଗବାନ ଲୋକଙ୍କ ଉପରେ ନ୍ୟସ୍ତ କଲେ । ତାଙ୍କର ଲୀଳାରେ ମହାପୁରୁଷମାନଙ୍କ ସୃଷ୍ଟି କରି ସେମାନଙ୍କ ଜରିଆରେ ସତ୍ୟ, ଅହିଂସା, ଶାନ୍ତି, ମୈତ୍ରୀ, ଆଧ୍ୟାତ୍ମିକବାଣୀ ପ୍ରଚାର କରି କଳିଯୁଗର ପାପମୟ ଅନ୍ଧକାର ମଧ୍ୟରେ ମୁକ୍ତିର ଆଲୋକ ଦେଖାଇଲେ ।

ପାପର ମାର୍ଗ ବଡ଼ ଆକର୍ଷଣୀୟ । ଲୋଭ, ମୋହ, ବଳପ୍ରୟୋଗ, ମାଦକ ଦ୍ରବ୍ୟ ସେବନ, ଅସତ୍ ମାର୍ଗରେ ଧନ ଅର୍ଜନ, ଧନର ଅପ ପ୍ରୟୋଗରେ ସଦ୍ୟ ସୁଖ ପାଇବା ପାଇଁ ମୂର୍ଖ ମନୁଷ୍ୟ ସବୁବେଳେ ଅଭ୍ୟସ୍ତ । ଏଗୁଡ଼ିକ ପ୍ରଥମେ ଚରମସୁଖ ଦେଉଥିଲେ ମଧ୍ୟ ପରେ ଦହନମୟ ଜ୍ୱାଳା ସୃଷ୍ଟି କରନ୍ତି । ଅଗ୍ନିର ଉଜ୍ଜ୍ୱଳ ଶିଖାକୁ ଦୂରରୁ ମନଲୋଭା ଦେଖାଯାଏ । ପତଙ୍ଗ ଧାଇଁ ଆସେ ସୌନ୍ଦର୍ଯ୍ୟର ପରଶ ପାଇବା ପାଇଁ ମାତ୍ର ହୁଏ କ'ଣ ? ସେ ଅନଳ ଶିଖାରେ ପଡ଼ି ଭସ୍ମ ହୁଏ । ସେହିଭଳି ସଂସାର ଅସ୍ଥାୟୀ ସୁଖଗୁଡ଼ିକ ମନୁଷ୍ୟକୁ ପ୍ରଥମେ ଲୋଭଗ୍ରସ୍ତ

ଆକର୍ଷଣ କରେ ମନୁଷ୍ୟ ଥରେ ସେଥିର ପଡ଼ିଗଲେ ତା'ର ଶିକାର ହୋଇଯାଏ ଆଉ ମୁକ୍ତି ମିଳେନା । ଭଗବାନ ମହାପୁରୁଷମାନଙ୍କ ଜରିଆରେ ମାନବ ସମାଜକୁ ସତର୍କବାଣୀ ଶୁଣାଇ ଆସୁଛନ୍ତି ଯିଏ ମହାପୁରୁଷମାନଙ୍କ ପଥ ଅନୁସରଣ କରେ ସେ ସଦାସୁଖୀ ହୋଇ-ଥାଏ ।

ଶ୍ରୀକୃଷ୍ଣଙ୍କ ଶରୀର ସତ୍କାର କରାଗଲା ପରେ ମଧ୍ୟ ସମସ୍ତ ଶରୀର ଭସ୍ମୀଭୂତ ହେଲା ସତ ହେଲେ ତାଙ୍କର ବ୍ରହ୍ମାତ୍ମାକ କୌଣସି କ୍ଷତି ହେଲନାହିଁ । ଏହା ନୀଳମାଧବ ମୂର୍ତ୍ତିରେ ପରିଣତ ହେଲା । ଏହି ମୂର୍ତ୍ତିରେ ଭଗବାନଙ୍କ ସତ୍ତା ଗୋପ୍ୟ ଭାବେ କଳି ଆରମ୍ଭ ଯୋଗୁଁ ରହିଥିଲା । ବିଶ୍ୱାବସୁ ନାମକ ଏକ ଶବର ତାକୁ ପାଇ ଏକ ଦୁର୍ଗମ ପର୍ବତ କନ୍ଦରରେ ସ୍ଥାପନ କରି ପୂଜା କରୁଥାଏ । ଉତ୍କଳର ଗଜପତି ରାଜା ଇନ୍ଦ୍ରଦ୍ୟୁମ୍ନ ଦେବ ଏକମ ଦିର ନିର୍ମାଣ କରି ବିଷ୍ଣୁ ମୂର୍ତ୍ତି ସ୍ଥାପନ ପାଇଁ ଉଦ୍ୟମ କରୁଥାନ୍ତି । ସେ ନୀଳମାଧବଙ୍କ ବିଷୟ ଲୋକ-ମୁଖରୁ ଶୁଣି ସେ ମୂର୍ତ୍ତି ସନ୍ଧାନରେ ନିଜର ମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇଲେ । ବିଦ୍ୟାପତି ବହୁ ଅନୁସନ୍ଧାନ ପରେ ବିଶ୍ୱାବସୁ ଶବର ପାଖରେ ପହଞ୍ଚିଲେ । ତା'ର କନ୍ୟା ଲଳିତାକୁ ବିବାହ କଲେ ଏବଂ ଜାମାତା ସୂତ୍ରରେ ନୀଳମାଧବଙ୍କୁ ଦର୍ଶନ କରାଇଦେବା ପାଇଁ ବିଶ୍ୱାବସୁଙ୍କୁ ଅନୁରୋଧ କଲେ । ଆଖିରେ ପୁଟୁଳି ବାନ୍ଧି ବିଦ୍ୟାପତିଙ୍କୁ ନେଇ ବିଶ୍ୱାବସୁ ନୀଳମାଧବଙ୍କ ଦର୍ଶନ କରାଇଦେଲା । ବିଦ୍ୟାପତି ଗୁପ୍ତରେ ରାସ୍ତାସାରା ଶୋରିଷ ବୁଣି ବୁଣି ଚିହ୍ନ ରଖିଲେ । ସେ ଯଥା ସମୟରେ ରାଜାଙ୍କୁ ଏକଥା ଜଣାଇ ମୂର୍ତ୍ତି ନେବାପାଇଁ ପହଞ୍ଚିଲେ । ମାତ୍ର ଭଗବାନଙ୍କ ଇଚ୍ଛା ଅନ୍ୟପ୍ରକାର ଥିଲା । ତେଣୁ ନୀଳମାଧବ ମୂର୍ତ୍ତି ମାୟା ହୋଇଗଲେ । ରାଜା ଏଥିରେ ବ୍ୟଥିତ ହୋଇ ଅନ୍ନଜଳ ତ୍ୟାଗ କରି ବିଷ୍ଣୁଙ୍କୁ ଆରାଧନା କଲେ । ରାଜାଙ୍କୁ ସ୍ୱପ୍ନ ହେଲା ସମୁଦ୍ରରେ ଭାସୁଥିବା ଏକ ଦାରୁ ଆଣି ରାଜା ସେଥିରେ ମୂର୍ତ୍ତି ନିର୍ମାଣ କରି ମନ୍ଦିରରେ ପୂଜା କରିବେ । ନୀଳମାଧବ ମୂର୍ତ୍ତି ରତ୍ନସାଗରରେ ଅବ୍ୟକ୍ତ ହୋଇ ରହିବ । ଦାରୁମୂର୍ତ୍ତିରେ ପୂଜା ପାଇବେ । ରାଜା ସତକୁ ସତ ସମୁଦ୍ରରେ ବାଙ୍କି ମୁହାଣ ଠାରେ ଏକ ବିରାଟକାୟ ଦାରୁ ଭାସୁଥିବା ଦେଖିପାରିଲେ । ଉକ୍ତ ଦାରୁକୁ ଆଣି ମୂର୍ତ୍ତି ନିର୍ମାଣ ପାଇଁ ଉଦ୍ୟମ କଲେ । ମାତ୍ର କୌଣସି କାରିଗର ଉକ୍ତ କାଠରେ ଅସ୍ତ୍ର ପ୍ରୟୋଗ କରିପାରିଲେ ନାହିଁ । କାରଣ, କରତ ପ୍ରଭୃତି ବଙ୍କା ହୋଇଗଲା । ରାଜା ଚିନ୍ତାରେ ପଡ଼ିଲେ । ମାତ୍ର ଭଗବାନ ଦେବ ଶିଳ୍ପୀ ବିଶ୍ୱକର୍ମାଙ୍କୁ ଛଦ୍ମ ବେଶରେ ପଠାଇଲେ । ବୃଦ୍ଧ କାରିଗରବେଶୀ ବିଶ୍ୱକର୍ମା ମୂର୍ତ୍ତି ନିର୍ମାଣ ଦାୟିତ୍ୱ ନେଲେ, ମାତ୍ର ସର୍ତ୍ତ ଥିଲା ରାଜା ୨୧ ଦିନ ପର୍ଯ୍ୟନ୍ତ ମନ୍ଦିରଦ୍ୱାର ଫିଟାଇବେ ନାହିଁ । ତାହାହିଁ ହେଲା । ରାଜା ରାଣୀ ପ୍ରତ୍ୟହ ମନ୍ଦିର ଦ୍ୱାରରେ କାନପାତି ଶୁଣନ୍ତି । ମୂର୍ତ୍ତି ନିର୍ମାଣଶବ୍ଦ ଭାସି ଆସୁଥାଏ । ମାତ୍ର ୨୧ ଦିନ ପୂରିବାକୁ ଆଉ ଅଳ୍ପଦିନ ବାକିଥାଏ କୌଣସି ଶବ୍ଦ ଶୁଣାଗଲା ନାହିଁ । ରାଣୀ ଭାବିଲେ ବୃଦ୍ଧ କାରିଗର ବିନା ଖାଦ୍ୟରେ ଆଉ ବୋଧେ କାମ କରିପାରିଲେ ନାହିଁ । ସମ୍ଭବତଃ ତାଙ୍କର ପ୍ରାଣହାନି ଘଟିଛି । ରାଜା ମଧ୍ୟ ରାଣୀଙ୍କ କଥାରେ ବିଚଳିତ ହୋଇ କବାଟ ଫିଟାଇଦେଲେ ।

ଦେଖିଲେ ମୂର୍ତ୍ତିଗୁଡ଼ିକ ଅଧାଗଢ଼ା ଅବସ୍ଥାରେ ରହିଛନ୍ତି । ହାତରେ ପାପୁଲି ଲାଗିନାହିଁ । ଗୋଡ଼ ତିଆରି ହୋଇନାହିଁ । ମହିମୂର୍ତ୍ତିଟିରେ ଆଦୌ ହାତ କି ଗୋଡ଼ନାହିଁ ଆଉ ଗୋଟିଏ ମୂର୍ତ୍ତି କେବଳ ସ୍ତମ୍ଭାକାରରେ ରହିଛି । ରାଜା କାନ୍ଦିବାରେ ଲାଗିଲେ । ନିଜର କୁକର୍ମ ପାଇଁ ଅନୁତାପ କଲେ । ଆକାଶବାଣୀ ଶୁଭିଲା—"ହେ ରାଜା ଇନ୍ଦ୍ରଦ୍ୟୁମ୍ନ, ମୁଁ ଏହିଭଳି ଆକାରରେ ହିଁ ଏ କଳିଯୁଗରେ ପୂଜା ପାଇବି । ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ ଏହି ଚାରିମୂର୍ତ୍ତି ମୋର ଚତୁର୍ଦ୍ଧାମୂର୍ତ୍ତି ଅଟେ । କଳିଯୁଗରେ ବୌଦ୍ଧାବତାରର ସ୍ମାରକ ରୂପେ ମୁଁ ବନ୍ଦିତ ହେବି । ତାହାପରେ ନୀଳାଚଳ ଠାରେ ଜଗନ୍ନାଥ ବୌଦ୍ଧଅବତାର ରୂପ ଧାରଣ କରି ପୂଜା ପାଇ ଆସୁଛନ୍ତି । ବର୍ଷରେ ଥରେ ଏହି ବୌଦ୍ଧରୂପୀ ଜଗନ୍ନାଥ ରଥଯାତ୍ରାରେ ବାହାରି ଜନସମାଜକୁ ଦର୍ଶନ ଦିଅନ୍ତି ।

କଳିଯୁଗ ପ୍ରଭାବରେ ଅନାଚାର ମାତ୍ରା ବହୁଗୁଣରେ ବଢ଼ିଗଲା । ଭଗବାନ ବିଷ୍ଣୁ ଅନନ୍ତଶୟନରେ ବିଶ୍ରାମ ନେଉଥାନ୍ତି । ମାତା ମହାଲକ୍ଷ୍ମୀ ତାଙ୍କର ପାଦ ମଣ୍ଡୁଥାନ୍ତି । ବିଶ୍ୱ ପରିକ୍ରମା କରି ନାରଦ ସେଠାରେ ପହଞ୍ଚିଲେ । ବିଷ୍ଣୁ ନାରଦଙ୍କୁ ପଚାରିଲେ—"ମହର୍ଷି ନାରଦ ! କୁହ କଳିଯୁଗରେ ବିଶ୍ୱର ସମାଚାର କ'ଣ ?" ନାରଦ ହାତଯୋଡ଼ି କହିଲେ—"ନାରାୟଣ ! ସେହିକଥାତ ତୁମକୁ ଜଣାଇବା ପାଇଁ ଆସିଲି ପ୍ରଭୁ ! କୃପାକରି ଅବଗତ ହୁଅନ୍ତୁ । ଦେବଭୂମୀ ଭାରତରେ ସମ୍ପ୍ରତି ଜାତିଭେଦ ଏବଂ କୁଳଗୁମାନର ଅବସ୍ଥା ସୃଷ୍ଟି କଲାଣି । ଆପଣ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୂଦ୍ର ଇତ୍ୟାଦି ମାତ୍ର ଚାରିଜାତିର ବ୍ୟବସ୍ଥା ବୈଦିକ କାର୍ଯ୍ୟ ଅନୁସାରେ ସୃଷ୍ଟି କରିଥିଲେ । ମାତ୍ର ଏବେ କଳିପ୍ରଭାବରେ ଏମାନେ ନାନା ଜାତି ଉପଜାତିରେ ବିଭକ୍ତ ହୋଇ ହିଂସା, ଦ୍ୱେଷ, ଘୃଣାର ଶୀକାର ହେଲେଣି । ଧର୍ମ ନାମରେ ଧାର୍ମିକମାନେ ଅପକର୍ମ କରୁଛନ୍ତି । ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବ ଗୁରୁତର ସମସ୍ୟା ସୃଷ୍ଟି କରୁଛି । ଏହାର ପ୍ରତିକାର କରନ୍ତୁ ପ୍ରଭୁ ।"

ବିଷ୍ଣୁ କହିଲେ—"ନାରଦ ! ଏହାତ କଳିଯୁଗର ଲକ୍ଷଣ । ଏ ଯୁଗରେ କୌଣସି ଜାତିଭେଦ ରହିବ ନାହିଁ । ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବ ଲୋପପାଇବ । କାର୍ଯ୍ୟ ଅନୁସାରେ ଜାତି ନିର୍ଣ୍ଣିତ ହେବ । କେବଳ ସମ୍ପ୍ରଦାୟିକ ଭେଦଭାବ ଯୋଗୁଁ, କଳିଯୁଗ ଅବସାନର ସୂତ୍ରପାତ ହେବ । ତେବେ ଏ ଜାତିଭେଦ ପ୍ରଥା ଦୂର କରିବା ସମୟ ଉପଗତ ହେଲାଣି । ନୀଳାଚଳ ଶ୍ରୀକ୍ଷେତ୍ର ଧାମ ଜଗନ୍ନାଥ ମନ୍ଦିରରେ ମୁଁ ବୌଦ୍ଧଅବତାର ଲୀଳା ପ୍ରକଟକରି ମନୁଷ୍ୟ ସମାଜକୁ ଆଦର୍ଶ ଦେଖାଇଦେବି । ମହାଲକ୍ଷ୍ମୀ ! ତୁମେ ହେବ ଏହି ଆଦର୍ଶର କେନ୍ଦ୍ର ବିନ୍ଦୁ ।

ଲକ୍ଷ୍ମୀ ଦରହାସ ମୁଖରେ କହିଲେ—"ଆପଣଙ୍କ ଇଚ୍ଛାତ ମୋର ବାଞ୍ଛା ପ୍ରଭୁ ।" ଜଗନ୍ନାଥ ନାରଦଙ୍କୁ ନିର୍ଦ୍ଦେଶ ଦେଲେ ବୌଦ୍ଧାବତାର ଲୀଳା ପ୍ରକଟ କରି କ୍ଷେତ୍ରପ୍ରସ୍ତୁତ କରିବାପାଇଁ ।

ଶ୍ରୀକ୍ଷେତ୍ର ପୁଣ୍ୟଧାମରେ ବଡ଼ଦେଉଳ ଭିତରେ ଜଗନ୍ନାଥ, ବଳଭଦ୍ର, ମହାଲକ୍ଷ୍ମୀଙ୍କ ସହିତ ଅନ୍ୟାନ୍ୟ ଦେବଦେବୀ ପୂଜା ପାଆନ୍ତି । ସେବକମାନଙ୍କ ଦ୍ୱାରା ଠାକୁରଙ୍କ ନୀତି

ଙ୍କରୁ ସହିତ ସବୁ ପରିଚାଳିତ ହୁଏ । ଜଗନ୍ନାଥ ଗୋପ୍ୟ ଭାବେ ଅନ୍ୟାନ୍ୟ ଦେବ ଦେବୀଙ୍କ ସହ ସେଠି ବସି ହୋଇଛନ୍ତି । ତାଙ୍କର ଇଚ୍ଛାନୁସାରେ ସବୁ ପରିଚାଳିତ ହୁଏ ।

ଜଗନ୍ନାଥଙ୍କ ମନୋଭାବ ଜାଣନ୍ତି କେବଳ ମହାଲକ୍ଷ୍ମୀ । ସେବକମାନେ ନିମିତ୍ତ ମାତ୍ର । ପ୍ରଭୁଙ୍କ ନିତ୍ୟକର୍ମ ଦାସ ଦାସୀମାନେ କରନ୍ତି ଅଥଚ ସେବକମାନେ ତାହା କରନ୍ତି ବୋଲି ଆମକୁ ଜଣାପଡେ । ଲୋକାଙ୍କର ମତରେ ପ୍ରଭୁଙ୍କ ସାବନ୍ତି କାର୍ଯ୍ୟ ମଣିଷଙ୍କ ଭଳି କରିଯାଏ ଅଥଚ ଅଲକ୍ଷ୍ୟରେ ପ୍ରଭୁଙ୍କ ଦେବନୀତି ସବୁ ତାଙ୍କର ସେବକମାନେ କରିଥାନ୍ତି ।

ସେଦିନ ମାର୍ଗଶୀର ମାସ ଶୁକ୍ଳ ଦଶମୀ । ଗୁରୁବାର .ସ୍ୱରଥାରଡ଼ ମହାଲକ୍ଷ୍ମୀଙ୍କ ପୂଜା ଆରାଧନା ଚାଲିଥାଏ । ଜଗନ୍ନାଥଙ୍କ ଠାରୁ ଅନୁମତି ନେଇ ମହାଲକ୍ଷ୍ମୀ ଭକ୍ତମାନଙ୍କ ଭକ୍ତି ଓ ପୂଜା ଗ୍ରହଣ ପାଇଁ ବୁଲି ବାହାରିଲେ । ଏପରି ଯାଉ ଯାଉ ଶ୍ରୀୟା ନାମକ ଏକ ଚଣ୍ଡାଳୁଣୀ ଅଷ୍ଟଦଳ ପଦ୍ମ ଚିତା ଲେଖି, ଧାନ ମାଣିଆ ବସାଇ ମା'ଙ୍କୁ ପୂଜା କରୁଥାଏ । ସେ ସମୟରେ ଚଣ୍ଡାଳ ପ୍ରଭୃତି ଶୁଦ୍ରଜାତିମାନଙ୍କୁ ପୂଜା କରିବା ପାଇଁ ମନାଥାଏ । ସମାଜରେ ବ୍ରାହ୍ମଣ ତଥା ସବର୍ଣ୍ଣ ଜାତିମାନଙ୍କ ପ୍ରଭାବ ବଳବତ୍ତର ଥାଏ । ମହାଲକ୍ଷ୍ମୀ ଚଣ୍ଡାଳୁଣୀ ଘରେ ଉଭାହୋଇ ତାଙ୍କୁ ଧନ ସମ୍ପଦ, ପୁତ୍ର, ଗୋଧନ ପ୍ରଭୃତି ପ୍ରାପ୍ତି ପାଇଁ ବର ଦେଲେ । ଏକଥାଟି ନାରଦ ଯାଇ ବଳରାମଙ୍କୁ କହିଦେଲେ । ଲକ୍ଷ୍ମୀ ଚଣ୍ଡାଳ ଘରୁ ପୂଜା ଗ୍ରହଣ କରିଥିବାରୁ ତାଙ୍କ ଠାରୁ ଦେବତ୍ୱ ଯାଇଛି ଓ ସେ ପରମ ପବିତ୍ର ଶ୍ରୀମନ୍ଦିରରେ ଆଉ ରହିପାରିବେ ନାହିଁ ବୋଲି ବଳରାମ ଆଦେଶ ଶୁଣାଇଦେଲେ ଜଗନ୍ନାଥଙ୍କୁ ।

ଜଗନ୍ନାଥଙ୍କ ଲୀଳା ସବୁ ଏହା । ସବୁ ଜାଣି ବି ନଜାଣିଲା ଭଳି ଅଭିନୟ କଲେ ସେ । ଭାଇଙ୍କ ଆଦେଶ ଅନୁସାରେ ଲକ୍ଷ୍ମୀଙ୍କୁ ଶ୍ରୀ ମନ୍ଦିରରେ ପ୍ରବେଶ କରିବା ଅଧିକାର ଦେଲେ ନାହିଁ । ଲକ୍ଷ୍ମୀ ଅନେକ ପ୍ରକାରେ ଜଗନ୍ନାଥଙ୍କୁ ବୁଝାଇଲେ ମଧ୍ୟ ବଡ଼ ଭାଇଙ୍କ ଆଦେଶକୁ ଜଗନ୍ନାଥ ଅବମାନନା କରି ପାରିବେ ନାହିଁ ବୋଲି କହିଲେ । ଲକ୍ଷ୍ମୀ ଏଥିରେ ରାଗିଗଲେ । ଜଗନ୍ନାଥ ତାଙ୍କୁ ଦେଇଥିବା ସମସ୍ତପ୍ରକାର ଗହଣାଗାଣ୍ଠି ସେ ଫେରାଇ ଦେଲେ । ଏବଂ ଅଭିଶାପ ଦେଲେ—" ହେ ଦୂର୍ଣ ଦେବ ଦେବ ! ଯେବେ ଅଦର୍ଶ ଦାଦ ମୋର ଆଦର୍ଶ ତେବେ ଆପଣ ଦୁଇ ଭାଇ ଲକ୍ଷ୍ମୀଛଡ଼ା ହୋଇ ବାର ବର୍ଷ ଅନ୍ନ ବସ୍ତ୍ର ନପାଇ ବୁଲିବେ । ନିଜକୁ ସଂଶୋଧନ କଲାପରେ ଏଇ ଚଣ୍ଡାଳୁଣୀ ଆଖ୍ୟା ପାଇଥିବା ଲକ୍ଷ୍ମୀ ଠାରୁ ହିଁ ଅନ୍ନଜଳ ଗ୍ରହଣ କଲେ ଶାପ ମୁକ୍ତ ହେବେ ।"

ଲକ୍ଷ୍ମୀ ଶ୍ରୀମନ୍ଦିର ଛାଡ଼ି ଚାଲିଗଲେ । ନିଜେ ବିଶ୍ୱକର୍ମାଙ୍କୁ ଆଦେଶ ଦେଇ ସମୁଦ୍ର କୂଳରେ ନିଜ ପାଇଁ ଏକ ଆବାସ ନିର୍ମାଣ କରାଇ ରହିଲେ । ଲକ୍ଷ୍ମୀ ଚାଲିଯିବା ପଛେ ପଛେ ଶ୍ରୀମନ୍ଦିରର ସମସ୍ତ ଦାସ ଦାସୀ ମଧ୍ୟ ଲକ୍ଷ୍ମୀଙ୍କ ନୂତନ ଭବନକୁ ଚାଲିଗଲେ । ଏଣେ ଜଗନ୍ନାଥ ବଳଭଦ୍ର ରାତିରେ ନିଶ୍ଚିନ୍ତ ମନରେ ଶୋଇଥିଲେ । ମହାଲକ୍ଷ୍ମୀ ଅଷ୍ଟବେତାଳଙ୍କୁ ପଠାଇ

ଶ୍ରୀମନ୍ଦିରର ଭଣ୍ଡାର ଘର ଲୁଟି ନେଇଗଲେ । ଠାକୁରମାନେ ଶୋଇଥିବା ବହୁମୂଲ୍ୟର ଗଜଦନ୍ତ ପଲଙ୍କ ମଧ୍ୟ ଅପହରଣ ହେଲା । ପୂର୍ବରୁ ନିଦ୍ରା ଦେବୀଙ୍କୁ ଡ଼ାକାଇ ଦେଲେ ଦୁଇ ଘଣ୍ଟା ହେବାଯାଏ ଠାକୁରମାନଙ୍କୁ ଯେଭଳି ନିଦ୍ରା ଘାରି ରଖେ ତା ବ୍ୟବସ୍ଥା କରାଯାଇଥିଲା । ଫଳତଃ ଠାକୁରମାନେ କିଛି ଜାଣିପାରିଲେ ନାହିଁ । ନିଦ ଭାଙ୍ଗିବା ବେଳକୁ ଶ୍ରୀମନ୍ଦିର ଶୂନ୍ୟ । ଭଣ୍ଡାରଘର ଶୂନ୍ୟ ଏପରିକି ମୁହଁ ଧୋଇବା ପାଇଁ ଟୋପାଏ ପାଣିମଧ୍ୟ ନଥିଲା । ଲକ୍ଷ୍ମୀ ଛାଡ଼ି ଯିବାରୁ ଏସବୁ ଘଟିଥିବା କଥା ଜଗନ୍ନାଥ ବଳରାମଙ୍କୁ କହିଲେ । ମାତ୍ର ବଳରାମ ଏହା ସ୍ୱୀକାର କଲେ ନାହିଁ । ଅତ୍ୟଧିକ ନିଦ୍ରା ଯୋଗୁଁ ଏସବୁ ଏକ ଦୁର୍ଘଟଣା ହୋଇପାରେ ବୋଲି ମତ ଦେଲେ ।

ହଠାତ୍ ଏକ ସୁନାମୁଦି ପାଇ ତାକୁ ବଳଭଦ୍ର ଅଣ୍ଟାରେ ଖୋସିଲେ । ହୁଏତ ଏହାକୁ ବିକି କରି ଖାଦ୍ୟ ସଂଗ୍ରହ କରିହେବ । ସେଠୁ ଦୁଇଭାଇ ଭିକ୍ଷା ମାଗିବା ପାଇଁ ସ୍ଥିର କଲେ । ଚିତା ଚନ୍ଦନ ହୋଇ ବ୍ରାହ୍ମଣ ବେଶରେ ବଡ଼ ଦାଣ୍ଡରେ ପାଦଦେଲେ । ପ୍ରଥମେ ସୁନା ମୁଦିଟି ବିକିବା ପାଇଁ ଏକ ବଣିଆ ଦୋକାନକୁ ଗଲେ । ଏଣେ ମହାଲକ୍ଷ୍ମୀ ସରସ୍ୱତୀଙ୍କୁ ଡ଼ାକାଇ ସମସ୍ତଙ୍କ କଣ୍ଠରେ ବସି ହେବାପାଇଁ ଅନୁରୋଧ କଲେ ଯାହା ଫଳରେ ଠାକୁରମାନଙ୍କୁ କେହି କିଛି ଦାନଦେବେ ନାହିଁ କିମ୍ବା ସାହାଯ୍ୟ ଦେବେ ନାହିଁ । ସତକୁ ସତ ସୁନା ମୁଦଟା ବେଙ୍ଗି ପିଲ୍ଲା ହୋଇଗଲା । ବଣିଆ ଦୁଇ ଠାକୁରଙ୍କୁ ତା' ବହଣା ବିଗିଡ଼ି ଯିବାରୁ ଗାଳି ଗୁଲଜ ଦେଇ ଫେରାଇ ଦେଲା ।

ସେଠାରୁ ଦୁଇଭାଇ ପଦ୍ମ ପୋଖରୀକୁ ପାଣି ପିଇବାକୁ ଗଲେ ତାହା ଶୁଖି ପଙ୍କ ହୋଇଗଲା । ସେମାନେ ବଡ଼ପଣ୍ଡାଙ୍କର ଦ୍ୱାରସ୍ଥ ହେଲେ । ବେଦ ଧ୍ୱନି କଲେ । ବୃଦ୍ଧା ବ୍ରାହ୍ମଣୀ ଏମାନଙ୍କୁ ନେଇ ପିଢ଼ା ପାଣି ଦେଇ ସତ୍କାର କଲା । କଦଳୀ ପତ୍ର ପକାଇ ଭାତ ଆଣିବା ପାଇଁ ଗଲା । ମାତ୍ର ଲକ୍ଷ୍ମୀଙ୍କ ମାୟା ଯୋଗୁଁ ହାଣ୍ଡିରୁ ଭାତ ଉଭାନ ହୋଇଗଲା । ଏ ଦୁହିଁଙ୍କୁ ଲକ୍ଷ୍ମୀଛଡ଼ା ବୋଲି ଗାଳି ଦେଇ ସେ ଘରୁ ବାହାର କରିଦେଲା ।

ଭଙ୍ଗରଙ୍କ ପାଖରୁ ଖଇ ମାଗି ଖାଇବା ପାଇଁ ଯିବାରେ ତାହା ପବନରେ ଉଡ଼ିଗଲା । ଏଭଳି ବାର ବର୍ଷକାଳ ଠାକୁରମାନେ ଉପବାସରେ ଭିକ୍ଷା ମାଗି ବୁଲିଲେ ମାତ୍ର ଅନ୍ନଜଳ ବସ୍ତ୍ର ପାଇଲେ ନାହିଁ । ଶେଷରେ ଋଷିଶାପ ସମୟ ଶେଷ ଦିବସ ପହଞ୍ଚିଲା । ଜଣେ ଯୋଗୀଙ୍କ ଠାରୁ ଖବର ପାଇ ଦୁହେଁ ବେଳାଭୂମିରେ ସମୁଦ୍ର କୂଳସ୍ଥ ଲକ୍ଷ୍ମୀଭବନରେ ପହଞ୍ଚିଲେ । ବେଦ ଧ୍ୱନି କଲେ । ଲକ୍ଷ୍ମୀ ଠାକୁରମାନଙ୍କୁ ଅନ୍ତରାଳରୁ ପ୍ରଣାମ ଜଣାଇଲେ । ଦାସୀ ଦ୍ୱାରା ଖବର ପଠାଇଲେ ତାହା ଏକ ଚଣ୍ଡାଳୁଣୀର ଘର । ମାତ୍ର ବଳଭଦ୍ର କହିଲେ ଚଣ୍ଡାଳ ଘର ହେଲେ କ'ଣ ହେଲା ରନ୍ଧାବଢ଼ା ଦେଲେ ସେମାନେ ଗ୍ରହଣ କରିବେ । ଲକ୍ଷ୍ମୀ ନୂଆ ହାଣ୍ଡି, ଚାଉଳ, ପାଣିପରିବା ପ୍ରଭୃତି ଯାବତୀୟ ରନ୍ଧନ ସାମଗ୍ରୀ ପଠାଇଦେଲେ । ଦୁଇ ଭାଇ ଖଦା ଖୋଳି ଚୁଲି ଲଗାଇଲେ । ମାତ୍ର ଲକ୍ଷ୍ମୀଙ୍କ ଆଦେଶରେ ଅଗ୍ନିଦେବତା ଜଳିଲେ ନାହିଁ ।

ଖାଲି ଧୂଆଁ ସୃଷ୍ଟି ହେଲା । ଜଗନ୍ନାଥ ବଡ଼ ଶ୍ରାନ୍ତ । ବଳଭଦ୍ର ପଚାରିଲେ —"ଭାଇ ! କ'ଣ ରନ୍ଧା ଶେଷ ହେଲା ? ଜଗନ୍ନାଥ କହିଲେ—"ଚୂଲିମୂଳରୁ ଉଠିବାକୁ ନାହିଁ ଯେ ପାଣିଟିକେ ନାହିଁ ଭଲ ହେବ କୁଆଡ଼ୁ ? ବଳଭଦ୍ର ଜଗନ୍ନାଥଙ୍କୁ ଛାଡ଼ି ନିଜେ ରାନ୍ଧିବାକୁ ଗଲେ । ଫୁଙ୍କି ଫୁଙ୍କି ନିସ୍ତାନ୍ତ ହୋଇଗଲେ କିନ୍ତୁ ଚୂଲି ଆଦୌ ଜଳିଲା ନାହିଁ । ସେଠୁ ରାଗିଯାଇ କାଠ ଫଡ଼ାରେ ହାଣ୍ଡି ଗୁଡ଼ାକ ଭାଙ୍ଗି ଦେଲେ । ଦାସୀକୁ ଡ଼ାକି କହିଲେ—"ଆମ ଦ୍ୱାରା ରନ୍ଧା କାର୍ଯ୍ୟ ହେବ ନାହିଁ । ତୁମ ମା'ଙ୍କୁ କୁହ ସେ ରାନ୍ଧିକରି ଦେଲେ ଆମେ ଖାଇବୁ ।"

ଜଗନ୍ନାଥ ଏଥିରେ ପ୍ରତିବାଦ କରି କହିଲେ—"ଭାଇନା ! ଏହା ଯେ ଚଣ୍ଡାଳ ଘର ।" ବଳଭଦ୍ର କହିଲେ—"ଭୋକରେ ପ୍ରାଣ ଯାଉଛି ଯେତେବେଳେ ଚଣ୍ଡାଳ, ବ୍ରାହ୍ମଣ ଆଜି ମଣିଷ ଜାତି କଥା ଚିନ୍ତାରେ କଏ ? ମହାଲକ୍ଷ୍ମୀଙ୍କୁ ଆମେ ଅଯଥା ଅପବାଦ ଦେଇ ଘଉଡ଼ାଇ ଦେଇଥିବାରୁ ଆମକୁ ଏଭଳି ଦୁରବସ୍ଥା ଭୋଗିବାକୁ ହେଲା ।"

ଲକ୍ଷ୍ମୀ ଦୁଇଭାଇଙ୍କ ପାଇଁ ସୁବାସିତ ତେଲ ଓ ଲୁଗାପଟା ପଠାଇ ଦେଲେ । ଦୁଇ ଠାକୁର ସମୁଦ୍ରରେ ସ୍ନାନ କଲେ । ନିଜେ ମହାଲକ୍ଷ୍ମୀ ମା' ଠାକୁର ମାନଙ୍କ ପାଇଁ ମନ ମାଫିକେ ରନ୍ଧନ କଲେ । ଦାସୀମାନେ ଆଣି ପରଷିଲେ । ବଳରାମଙ୍କ କ୍ଷୁଧା ଖୁବ୍ ବଢ଼ି ଯାଇଥିଲା ! ସେ ଦୁଇ ଗ୍ରାସରେ ସବୁ ଖାଦ୍ୟ ଦ୍ରବ୍ୟ ଶେଷ କରିଦେଲେ । ଭୋଜନ ଶେଷରେ ଠାକୁରମାନେ ପୋଡ଼ପିଠା ଖାଆନ୍ତି । ଲକ୍ଷ୍ମୀ ପୋଡ଼ପିଠା ପଠାଇଦେଲେ । ବଳଭଦ୍ର ସେ ସବୁ ଲକ୍ଷ୍ମୀଙ୍କ ରାନ୍ଧଣା ବୋଲି ଜାଣି ପାରିଲେ । ଜଗନ୍ନାଥଙ୍କ ଦ୍ୱାରା ମହାଲକ୍ଷ୍ମୀଙ୍କୁ ନିଜର କୁକର୍ମ ପାଇଁ କ୍ଷମା ମାଗିଲେ । ଜଗନ୍ନାଥ ଲକ୍ଷ୍ମୀଙ୍କ ନିକଟକୁ ଯାଇ ତାଙ୍କ ହାତଧରି ଶ୍ରୀମନ୍ଦିରକୁ ଫେରିଯିବା ପାଇଁ ଅନୁରୋଧ କଲେ । ଲକ୍ଷ୍ମୀଙ୍କ ସର୍ତ୍ତ ଅନୁସାରେ ସେହି ଦିନଠାରୁ ଜାତିଭେଦ ରହିବ ନାହିଁ ଏବଂ ଲୋକେ ମହାପ୍ରସାଦ ଖାଇ ମୁଣ୍ଡରେ ହାତ ପୋଛିବେ ବୋଲି ସ୍ଥିର କରାଗଲା । ଜଗନ୍ନାଥଙ୍କ ଅନ୍ୟନାମ ପତିତ ପାବନ ରଖାଗଲା । ଲକ୍ଷ୍ମୀ ଜଗନ୍ନାଥଙ୍କ ମିଳନ ହେଲା ।

ବୌଦ୍ଧାବତାର ଜଗନ୍ନାଥଙ୍କ ଚକା ଚକା ଆଖିଦୁଇଟି ସାମ୍ୟବାଦର ପ୍ରତୀକ । ମଣିଷ ମଣିଷ ଭିତରେ କୌଣସି ଭେଦ ନାହିଁ ସମସ୍ତେ ସମାନ । ବଳିଷ୍ଠର ଭୁଜ ତଳେ ସମସ୍ତେ ଅଭୟ ଆଶ୍ରୟ ନିଅନ୍ତୁ ବୋଲି ସେ ମହାବାହୁ ପ୍ରସାରଣ କରି ଅଛନ୍ତି ଏଭଳି ଜାତିଭେଦ ଉପରେ ଜଗନ୍ନାଥ ନିଜ ଲୀଳା ପ୍ରକଟ କରି ଆଦର୍ଶ ସ୍ଥାପନ କଲେ । ଆଜି ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି କେବଳ ଜାତି ଜାତି ନାହିଁକ ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ମଧ୍ୟ ପ୍ରତୀକ ରୂପେ ଗ୍ରହଣୀୟ ହୋଇଛି ।

ଅତୀତରେ ଯେତେବେଳେ ଯାଗଯଜ୍ଞ ନାମରେ ପଶୁବଳୀ ବ୍ୟବସ୍ଥା ଥିଲା । ଜାତିଆଣ ପ୍ରଥାକୁ ସମ୍ପୂର୍ଣ୍ଣ ବିଲୋପ ପାଇଁ କଳିଯୁଗର ପ୍ରଭାବରୁ ଜନ ମାନସକୁ ସତ୍‌ପଥ ଦେଖାଇବା ପାଇଁ ଜଗନ୍ନାଥ ମହାପୁରୁଷ ମାନଙ୍କୁ ଜାତ କରାଇ ସତ୍ୟ ଅହିଂସା ବାଣୀ ପ୍ରଚାର

ଉଗ୍ରଭବା ବ୍ୟବସ୍ଥା କରିଛନ୍ତି । ବୌଦ୍ଧାବତାର ଛଳରେ ବୁଦ୍ଧଦେବଙ୍କ ଦ୍ୱାରା ମଧ୍ୟ ଭଗବାନ ଲୀଳା ପ୍ରଦର୍ଶନ କରିଥିଲେ ।

ନେପାଳର କପିଳବାସ୍ତୁ ନଗରରେ ରାଜା ଥାନ୍ତି ଶୁଦ୍ଧୋଦନ । ସକଳ ବୈଭବର ଅଧିକାରୀ ହୋଇମଧ୍ୟ ନିଃସନ୍ତାନ ଥିବାରୁ ସେ ଓ ରାଣୀ ମାୟାବତୀ ଦୁଃଖରେ କାଳାତିପାତ କରୁଥାନ୍ତି । ଭଗବାନଙ୍କ ପୂଜାର୍ଚ୍ଚନା, ଦାନ, ଧର୍ମ କରି କାଳାତିପାତ କରୁଥାନ୍ତି । ହଠାତ୍ ଦିନେ ରାତିରେ ମାୟାବତୀ ସ୍ୱପ୍ନ ଦେଖିଲେ ଯେ ଏକ ଶ୍ୱେତହସ୍ତୀ ଆକାଶ ମାର୍ଗରୁ ଉଡ଼ି ଆସି ତାଙ୍କ ଦେହରେ ଲୀନ ହୋଇଗଲା । ଜ୍ୟୋତିଷମାନେ ଏହାକୁ ଶୁଭଲକ୍ଷଣ ବୋଲି କହିଲେ ଏବଂ ଅତିଶିଘ୍ର ଜଣେ ମହାପୁରୁଷ ରାଜ ବଂଶ ମଣ୍ଡନ କରିବେ ବୋଲି ଭବିଷ୍ୟତ ବାଣୀ ଦେଲେ ।

ଅତରୁ ଅତ ଯଥା ସମୟରେ ରାଣୀ ଜନ୍ମଦେଲେ ଏକ ତେଜସ୍ୱୀ ରାଜକୁମାର । ସେ ଦିନେ ଥିଲା ପବିତ୍ର ବୈଶାଖ ପୂର୍ଣ୍ଣିମା । ପୁତ୍ରର ନାମକରଣ କରାଗଲା ସିଦ୍ଧାର୍ଥ ଗୌତମ । ଜ୍ୟୋତିଷମାନେ କହିଲେ ଏହି ପୁତ୍ରର ଆଜାନୁଲମ୍ବିତ ବାହୁଥିବାରୁ ଏ ଜଣେ ରାଜ-ଚକ୍ରବର୍ତ୍ତୀ ହେବେ କିମ୍ବା ସାଧୁପୁରୁଷ ହେବେ । ଗୌତମଙ୍କୁ ଜନ୍ମ ଦେବା ପରେ ମାୟାବତୀଙ୍କର ମୃତ୍ୟୁ ହେଲା । ଗୌତମ ଧାଇମାତାମାନଙ୍କ ଲାଳନ ପାଳନରେ ବଡ଼ ହେଲେ । ସେ ପିଲାଟି ଦିନରୁ ଏକା ହୋଇ ବସି ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣ କରିବାକୁ ଭଲ ପାଉଥିଲେ । ରାଜା ଶୁଦ୍ଧୋଦନ ସିଦ୍ଧାର୍ଥଙ୍କୁ ରାଜଚକ୍ରବର୍ତ୍ତୀ କରିବାକୁ ଚାହୁଁଥିବାରୁ ସବୁଦା ନାଚ ଗୀତ ଆମୋଦ ପ୍ରମୋଦର ବ୍ୟବସ୍ଥା କରୁଥାନ୍ତି ମାତ୍ର ଗୌତମ ସେ ସବୁଠାରୁ ନିଜକୁ ଦୂରେଇ ରଖୁଥିଲେ । ଥରେ ଉପବନରେ ବସିଥିବା ସମୟରେ ଶରବିଦ୍ଧ ଏକ ହଂସ ଆସି ତାଙ୍କ ନିକଟରେ ପଡ଼ିଲା । ସେ ଦୟାରେ ବିଗଳିତ ହୋଇ ହଂସଟିର ସେବା କଲେ । ତା' ଦେହରୁ ଶରଟି ବାହାର କରିଦେଲେ । ଉତ୍ତରୀୟରେ ରକ୍ତ ପୋଛିଦେଲେ । ନିକଟରୁ ଝର ଜଳ ଆଣି ପିଆଇଲେ । ହଂସଟି ସୁସ୍ଥ ହୋଇ ଉଠୁଥାଏ । ସହସା ତାଙ୍କର ସମ୍ପର୍କୀୟ ଭାଇ ଦେବଦତ୍ତ ସେଠାରେ ପହଞ୍ଚି କହିଲେ—"ସିଦ୍ଧାର୍ଥ ! ଆକାଶରେ ଉଡ଼ୁଥିବା ହଂସଟିକୁ ମୁଁ ଶିକାର କରି ତୀର ମାଡ଼ରେ ତଳକୁ ଖସାଇ ପାରିଛି ସେଇଟା ମୋର । ମତେ ଦେଇ-ଦିଅ ।" ମାତ୍ର ଗୌତମ କହିଲେ—"ଭାଇ ! ନିରୀହ ପକ୍ଷୀଟି ତୁମର କି ଦୋଷ କରିଥିଲା ତାକୁ ଅକାରଣ ଶରମାରି ରକ୍ତାକ୍ତ କଲ କାହିଁକି ? ତୁମେ ତାକୁ ମାରି ଦେଇଥିଲ ସେ ମରି ଯାଇଥିଲା ମାତ୍ର ମୁଁ ଏହାକୁ ସେବାକରି ବଞ୍ଚାଇ ଦେଇଛି ଏଇଟାକୁ ମୁଁ ପୁଣି ତୁମକୁ ଦେବି କିପରି ?" ନାନା ଯୁକ୍ତିତର୍କ ଚାଲିଲା । ଦୁହେଁ ରାଜାଙ୍କ ପାଖକୁ ଆସିଲେ ବିଚାର ପାଇଁ । ମାରିବା ଲୋକଠାରୁ ବଞ୍ଚାଇବା ଲୋକ ହିଁ ଶ୍ରେଷ୍ଠ ଓ ହଂସଟି ତାହାର ବୋଲି ନ୍ୟାୟ ଦିଆଗଲା । ହଂସଟି କାହାର ନୁହେଁ । ମୁକ୍ତ ବିହଙ୍ଗ ମୁକ୍ତ ଆକାଶର ବୋଲି ଗୌତମ ତାହାକୁ ଉଡ଼ାଇ ଦେଲେ ।

ଦିନକୁ ଦିନ ନିର୍ବିକାର ଓ ଚିନ୍ତାଶୀଳ ହେଉଥିବା ଗୌତମଙ୍କ ମନ ପରିବର୍ତ୍ତନ ପାଇଁ ରାଜା ତାହାଙ୍କୁ ଯଶୋଧାରା ନାମକ ସୁନ୍ଦରୀ ରାଜକନ୍ୟାଙ୍କ ସହ ବିବାହ କରାଇ

ଦେଲେ । ଯଥା ସମୟରେ ଗୌତମଙ୍କ ପୁତ୍ର ରାହୁଲ ମଧ୍ୟ ଜନ୍ମ ନେଲା । ମାତ୍ର ଥରେ ନଗର ଭ୍ରମଣରେ ଯାଉଥିବା ସମୟରେ ଗୌତମ ଗୋଟିଏ ଶବ ଦେଖିପାରିଲେ । ଏହା କ'ଣ ବୋଲି ପ୍ରଶ୍ନ କରିବାରୁ ସାରଥୀ ବୁଝାଇ ଦେଲା—ଏହା ଏକ ଶବ । ପ୍ରତି ମନୁଷ୍ୟ ଜନ୍ମ ମୃତ୍ୟୁ ଲାଭ କରିଥାଏ । ଏହି ଶବକୁ ଲୋକେ ଶ୍ମଶାନରେ ନେଇ ପୋଡ଼ି ଦେବେ ।'' ଶବ ଦାହକ ଓ କାନ୍ଦି କାନ୍ଦି ଶବ ପଛରେ ଯାଉଥିବା ଆତ୍ମୀୟମାନଙ୍କୁ ଦେଖି ଗୌତମଙ୍କ ମନରେ ଭାବାନ୍ତର ସୃଷ୍ଟି ହେଲା । ପରେ ପରେ ଅନ୍ୟ ସମୟରେ ଭ୍ରମଣ ବେଳେ ସେ ଗୋଟିଏ ବୁଢ଼ା ଲୋକ ଦାଢ଼ି ଧରି ନଇଁ ନଇଁ ଯାଉଥିବା ଦୃଶ୍ୟ ରୋଗୀଟିଏ ଯନ୍ତ୍ରଣାରେ ଚିତ୍କାର କରୁଥିବା ଦୃଶ୍ୟ ଓ ଜଣେ ତପସ୍ୟାରତ ସନ୍ନ୍ୟାସୀଙ୍କୁ ଦେଖିବାକୁ ପାଇଥିଲେ । ସେ ମନେ ମନେ ଭାବିଲେ ଜନ୍ମହେଲେ ମନୁଷ୍ୟକୁ ରୋଗ ବ୍ୟାଧି ଭୋଗିବାକୁ ହୁଏ, ବୃଦ୍ଧ ହେବାକୁ ହୁଏ ଶେଷରେ ମରିବା ପାଇଁ ହୁଏ ତେବେ ଏ ଜନ୍ମରେ ଲାଭ କ'ଣ ? ବରଂ ବୈରାଗୀ ସନ୍ନ୍ୟାସୀ ହୋଇ ଭଗବାନଙ୍କୁ ଆରାଧନା କରିବା ଉଚିତ ।''

ଏଭଳି ନାନା ଚିନ୍ତା କରିସାରେ ସେ ଦିନେ ରାତି ଅଧରୁ ଉଠି ସ୍ତ୍ରୀ ପୁତ୍ର ପ୍ରଭୃତିଙ୍କ ମାୟା ତୁହାଇ ସାରଥୀକୁ ଡାକି ବଣକୁ ଚାଲିଗଲେ । ସେଠାରେ ରାଜପୋଷାକ ବଦଳାଇ ଗେରୁଆ ବସ୍ତ୍ର ପରିଧାନ କଲେ । ଖଣ୍ଡା ଦ୍ୱାରା ମୁଣ୍ଡବାଳ ଗୁଡ଼ିକୁ କାଟି ପକାଇଲେ । ସାରଥୀକୁ କହିଲେ—''ଚେନ୍ନା ! ତୁମେ ରାଜାଙ୍କୁ ଖବର ଦେଇଦେବ ମୁଁ ସନ୍ନ୍ୟାସ ଗ୍ରହଣ କରି ଚାଲିଯାଇଛି ବୋଲି ।''ତାପରେ ଗୌତମ ବନ ଜଙ୍ଗଲ ମଧ୍ୟରେ ଅଦୃଶ୍ୟ ହୋଇଗଲେ ।

ରାଜା ସାରଥୀ ମୁହଁରୁ ଏ ଦାରୁଣ ସମ୍ବାଦ ଶୁଣି ବହୁତ ଦୁଃଖକଲେ । ଶେଷରେ ଗୌତମ ଜଣେ ମହାପୁରୁଷ ହିଁ ହେବେ ବୋଲି ଭଗବାନଙ୍କ ଇଚ୍ଛାବୋଲି ଭାବି ଧୈର୍ଯ୍ୟ ଧରି ରହିଲେ । ଗୌତମ ଦୁଃଖପୂର୍ଣ୍ଣ ସଂସାରରୁ କିଭଳି ମନୁଷ୍ୟ ସମାଜ ମୁକ୍ତ ହେବ ସମାଧାନ ଖୋଜି ବୁଲିଲେ । ବହୁ ପଣ୍ଡିତଙ୍କ ସହ ସାକ୍ଷାତ କଲେ । ଯୁକ୍ତିତର୍କ ମଧ୍ୟ ହେଲା । କିନ୍ତୁ କୌଣସି ସିଦ୍ଧାନ୍ତରେ ସେ ସନ୍ତୁଷ୍ଟ ହେଲେ ନାହିଁ । ସେ ତପସ୍ୟାରେ ବସିଲେ । ଶେଷରେ ନିରଞ୍ଜନା ନଦୀ କୂଳରେ ଏକ ଅଶ୍ୱତ୍ଥ ବୃକ୍ଷ ମୂଳେ ତପସ୍ୟା କଲାବେଳେ ଏକ ବୈଶାଖ ପୂର୍ଣ୍ଣିମାରେ ସେ ଦିବ୍ୟଜ୍ଞାନ ପାଇଲେ । ସେହି ଦିନଠାରୁ ତାଙ୍କର ନାମ ଗୌତମବୁଦ୍ଧ ବୋଲି କଥିତ ହେଲା । ତାଙ୍କର ବୁଦ୍ଧତ୍ୱ ପ୍ରାପ୍ତି ଯେଉଁ ଜ୍ଞାନରୁ ହେଲା ତାହା ହେଲା—ସଂସାର ଦୁଃଖପୂର୍ଣ୍ଣ, ଦୁଃଖର କାରଣ—କାମନା ବା ଇଚ୍ଛା କାମନାର ବିନାଶରେ ଦୁଃଖର ବିନାଶ, ଦୁଃଖର ବିନାଶରେ ସତ୍‌ଜୀବନ ଯାପନ, ଆନନ୍ଦ ପ୍ରାପ୍ତି ଓ ନିର୍ବାଣ । ନିର୍ବାଣର ଅର୍ଥ ଜନ୍ମ ମୃତ୍ୟୁ ଯନ୍ତ୍ରଣାରୁ ସବୁଦିନ ପାଇଁ ମୁକ୍ତ ହୋଇ ପରମାତ୍ମାଙ୍କ ଅଙ୍ଗରେ ଲୀନ ହୋଇଯିବା ।''

ସେ କାଳରେ ଆତ୍ମାର ମୁକ୍ତି ପାଇଁ ଯାଗ ଯଜ୍ଞ ନାମରେ ହିଂସ୍ର ଭାବେ ପଶୁବଳୀ, ନରବଳୀ ଇତ୍ୟାଦି ପ୍ରଥା ଯାଉଥିଲା । ବୁଦ୍ଧ ଏ ସବୁକୁ ତୀବ୍ର ସମାଲୋଚନା କଲେ । ସତ୍ୟ, ଶାନ୍ତି, ମୈତ୍ରୀର ଅମର ବାଣୀ ସେ ପ୍ରଚାର କଲେ । ତାଙ୍କର ବାଣୀ ବହୁ ଲୋକ ଗ୍ରହଣ କଲେ । ହଜାର ହଜାର ଶିଷ୍ୟ ବୁଦ୍ଧଙ୍କ ବାଣୀ ପ୍ରଚାର ଓ ପ୍ରସାର କଲେ ।

ବୁଦ୍ଧଦେବ କପିଳବାସ୍ତୁ ଆସିବା ପରେ ତାଙ୍କ ସ୍ତ୍ରୀ ଯଶୋଧାରାଙ୍କୁ ମଧ୍ୟ ଶିଷ୍ୟାରୂପେ ଗ୍ରହଣକଲେ । ଉଭୟ ନାରୀ ଓ ପୁରୁଷ ବୁଦ୍ଧଙ୍କର ଶିଷ୍ୟ ହୋଇ ପାରୁଥିଲେ । ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି ଶବ୍ଦରେ ଗଗନ ପବନ ମୁଖରିତ ହୋଇ ଉଠିଲା ଅନେକ ବୌଦ୍ଧ ସଂଘ ଗଠିତ ହେଲା । ବୁଦ୍ଧଙ୍କ ଏହି ବାଣୀକୁ ବୌଦ୍ଧଧର୍ମ ବୋଲି କୁହାଗଲା ।

ବୁଦ୍ଧଥିଲେ ଦୟା ଓ କରୁଣାର ଅବତାର । ତାଙ୍କ ସଂସ୍ପର୍ଶରେ ଆସି ବହୁତ ଦୁଷ୍ଟ ଅତ୍ୟାଚାରୀ ଲୋକ ହିଂସା ଛାଡ଼ି ଦେବୋପମ ମନୁଷ୍ୟରେ ପରିଣତ ହୋଇଛନ୍ତି । ତାଙ୍କୁ ଅଙ୍ଗୁଳିମାଳ ଥିଲା ସେମିତିଆ ଦୁର୍ଦ୍ଦାନ୍ତ ହେଉଥିଲା ଭୟଙ୍କର । ନରହତ୍ୟା କରିବା ଥିଲା ତାହାର ବାମହାତର ଖେଳ । ମଣିଷ ମାରିବା ପରେ ସେମାନଙ୍କ ହାତରୁ ଅଙ୍ଗୁଳି କାଟି ହାର କରି ସେ ବେକରେ ପକାଇ ଥାଏ ତେଣୁ ତାକୁ ଅଙ୍ଗୁଳିମାଳ ବୋଲି କୁହାଯାଉଥିଲା । ଥରେ ଭଗବାନ ବୁଦ୍ଧ ଅଙ୍ଗୁଳିମାଳ ଥିବା ଜଙ୍ଗଲ ଦେଇ ବାଣୀ ପ୍ରଚାର ପାଇଁ ଯାଉଥିଲେ । ହଠାତ୍ ଅଙ୍ଗୁଳିମାଳ ତାଙ୍କ ସାମନାକୁ ଆସି କହିଲା—"ଛମଠି ଯାହା ଅଛି ଚୁପ୍ ଚାପ୍ ଦେଇଯାଅ ।" ବୁଦ୍ଧଦେବ ଅଳ୍ପ ହସି ଭିକ୍ଷାପାତ୍ରଟି ତା' ଆଡ଼କୁ ବଢ଼ାଇ ଦେଲେ । ଅଙ୍ଗୁଳିମାଳ କହିଲା—"ମତେ ପରିହାସ କରୁଛ ? ଜାଣ ମୁଁ କିଏ ?" ବୁଦ୍ଧ କହିଲେ—"ଜାଣେ ତୁମେ ଜଣେ ମୋରି ଭଳି ମଣିଷ ।" ଅଙ୍ଗୁଳିମାଳ କହିଲା—"ମରିବା ପାଇଁ ପ୍ରସ୍ତୁତ ହୁଅ । ଜାଣତ ଧନ ନପାଇଲେ ମୁଁ ମଣିଷକୁ ହତ୍ୟାକରେ ଓ ତା' ଆଙ୍ଗୁଠିକୁ ଗଳାରେ ହାରକରି ପିନ୍ଧେ ବୁଦ୍ଧ କହିଲେ—"ତୁମେ ମତେ ମାରିପାର । ଜନ୍ମ ହେଲେ ଦିନେ ମରିବାକୁ ହୁଏ । ମୁଁ ଆଜି ମରିବି । ତୁମେ ଆଉଦିନେ ନିଶ୍ଚୟ ମରିବ । ମାତ୍ର ତୁମେ କ'ଣ ମୋ ଭଳି ହସି ହସି ଶାନ୍ତିରେ ମରିପାରିବ ? ମୁଁ କୌଣସି ପ୍ରାଣୀକୁ କଷ୍ଟ ଦେଉନାହିଁ ତେଣୁ ଶାନ୍ତିରେ ମରିପାରିବି ଆଉ ତୁମେ ମଲା ବେଳକୁ କ'ଣ ଶାନ୍ତିପାଇବ ? ଭାବିଲ ଥରେ ଦେଖି ।"

ବୁଦ୍ଧଙ୍କର ଏ କଥାରେ ଅଙ୍ଗୁଳିମାଳର ମୁଣ୍ଡ ଘୂରିଗଲା । ସେ ଭାବିଲା—"ସତେତ ମୁଁ ନରହତ୍ୟା କରି କେତେ ଯେ ପାପ ଅର୍ଜନ କରିଛି ଏଥିପାଇଁ ପ୍ରାୟଶ୍ଚିତ କାହିଁ ? ସେ ବୁଦ୍ଧଙ୍କ ପାଦତଳେ ପଡ଼ି ପାପରୁ ପରିତ୍ରାଣ କରାଇବା ପାଇଁ ପ୍ରାର୍ଥନା କଲା । ବୁଦ୍ଧଦେବ ତାକୁ ଭିକ୍ଷାପାତ୍ରଟି ଦେଇ କହିଲେ—"ତୁମେ ଆଜଠାରୁ ଭିକ୍ଷୁ ପାଲଟିଯାଅ । ସଂଘ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି ତୁମର ଧ୍ୟେୟ ହେଉ । ଅଙ୍ଗୁଳିମାଳ ବୁଦ୍ଧଙ୍କୁ ଚିହ୍ନି ପାରି ବୁଦ୍ଧଂ ଶରଣଂ ଗଚ୍ଛାମି କହି ଶରଣ ପଶିଲା । ସେହି ଦିନଠାରୁ ସେ ପାଲଟି ଗଲା ଜଣେ ସାଧୁ ପୁରୁଷ । ନିଜ ଅନୁଚର ମାନଙ୍କ ସହ ସେ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣକଲା । ଏ ଘଟଣା ପରେ ବହୁ ଲୋକ ବୁଦ୍ଧଙ୍କ କରୁଣା ଲଭକରି ଜୀବନ ପଥ ବଦଳାଇ ଦେଲେ ।

ବୌଦ୍ଧ ଧର୍ମ ଦ୍ୱାରା ହେଉଛି ନୂତନ ପ୍ରଭାବ ମଣିଷ ଉପରେ ପଡ଼ିଲା ତାହାର ମୂଳ ମନ୍ତ୍ର ହେଲା ଅହିଂସା, ପ୍ରଶାନ୍ତ ଓ ସରଳ ଜୀବନ ଯାପନ ସେବା ଓ ଜାତିବର୍ଣ୍ଣ ଭିତରେ ସମତା । ଏହିଭଳି ଭାବରେ ମଣିଷ ମାନଙ୍କୁ ସତମାର୍ଗ ପ୍ରଦର୍ଶନ କରି ବୁଦ୍ଧଦେବ ପୁଣି ଏକ ବୈଶାଖ ପୂର୍ଣ୍ଣିମାରେ ଦେହତ୍ୟାଗ କଲେ ।

ବୌଦ୍ଧ ମୂର୍ତ୍ତି ଜଗନ୍ନାଥ ଏହିଭଳି କଳିକାଳରେ ମହାପୁରୁଷମାନଙ୍କ ଜରିଆରେ ସତ୍‌ମାର୍ଗ ଦର୍ଶନ ଓ ଧର୍ମ ସଂସ୍ଥାପନ ଲୀଳା ପ୍ରଦର୍ଶନ କରୁଛନ୍ତି ।






ଏହି କଳଙ୍କି ଅବତାର ହେଉଛନ୍ତି କଳିଯୁଗର ଓ କଳ୍ପାନ୍ତ ମହାପ୍ରଳୟ ପୂର୍ବର ଶେଷ ଅବତାର । କଳିଯୁଗର ପାପ ଓ ଅଧର୍ମ ସୀମା କ୍ରମଶଃ ବୃଦ୍ଧି ପାଇ ଶେଷରେ ସୀମା ଟପିଯାଏ । ବହୁ ମହାପୁରୁଷ ଓ ବିଭିନ୍ନ ମାର୍ଗ ପ୍ରଦର୍ଶନ ସତ୍ତ୍ୱେ ମାନବ ସମାଜ ଭ୍ରଷ୍ଟାଚାର ଶୀକାର ହୁଏ । ମନ୍ତ୍ର, ତନ୍ତ୍ର ଯୁଗର ଅବସାନ ହୋଇ ଯନ୍ତ୍ର ଯୁଗ ଆତ୍ମପ୍ରକାଶ କରେ । ପୃଥିବୀ ପୃଷ୍ଠରେ ନାନା ବିପ୍ଳବ ଓ ଯୁଦ୍ଧ ପରେ ରାଜତନ୍ତ୍ର ଲୋପ ହୁଏ । ଏହାର ମୂଳ କାରଣ ରାଜାମାନଙ୍କ ସ୍ୱେଚ୍ଛାଚାରିତା । ଗଣତନ୍ତ୍ର ପଦ୍ଧତି ବା ପ୍ରଜାତନ୍ତ୍ର ଶାସନ ପାଇଁ ଲୋକେ ଆଗ୍ରହ ପ୍ରକାଶ କରନ୍ତି । ଲୋକ ପ୍ରତିନିଧି ମୂଳକ ଶାସନ ପ୍ରବର୍ତ୍ତିତ ହୁଏ । ଦିନକୁ ଦିନ ମେଧାବୀ, ଚେତନା ଶୀଳ ବ୍ୟକ୍ତିଙ୍କର ଜନ୍ମହୁଏ । ପ୍ରକୃତି ଓ ଭଗବାନଙ୍କ ସମସ୍ତ ରହସ୍ୟ ଉଦ୍‌ଘାଟନ ପାଇଁ ମଣିଷ ତତ୍ପର ହୁଏ । ପୂର୍ବରୁ ମନ୍ତ୍ର ଦ୍ୱାରା ସମ୍ଭବ ହେଉଥିବା ସବୁ ବିଷୟ ମଣିଷ ଯନ୍ତ୍ର ଦ୍ୱାରା କରିବାରେ ସକ୍ଷମ ହୁଏ । ଗ୍ରହ, ନକ୍ଷତ୍ର ମହାକାଶ ସମ୍ପର୍କରେ ଗବେଷଣା କରାଯାଏ । ଶିକ୍ଷା, ସ୍ୱାସ୍ଥ୍ୟ, ବାଣିଜ୍ୟ, ଗମନାଗମନ, ଇତ୍ୟାଦି ସକଳ କ୍ଷେତ୍ରରେ ମନୁଷ୍ୟ ଆଶାତୀତ ସଫଳତା ଲଭ କରି ଚରମସୀମାରେ ଉପନୀତ ହୁଏ । ମନୁଷ୍ୟ କ୍ରମଶଃ

ଭଗବାନଙ୍କ ଅସ୍ତିତ୍ୱ ଅସ୍ୱୀକାର କରେ । ନାସ୍ତିକତା ବାଦ ବୃଦ୍ଧି ପାଏ । ଭଗବାନଙ୍କ ରହସ୍ୟ ଉଦ୍‌ଘାଟନ ପାଇଁ ଚେଷ୍ଟା ଚଳାଏ । ମୃତ୍ୟୁକୁ ଜୟ କରିବା ପାଇଁ ଉଦ୍ୟମ କରେ ମାତ୍ର ତା'ର ଫଳ ଓଲଟା ହୁଏ । ଭଗବାନ ରହସ୍ୟମୟ । ତାଙ୍କର ସୃଷ୍ଟି ମଧ୍ୟ ରହସ୍ୟ ପୂର୍ଣ୍ଣ । ମନୁଷ୍ୟ ଗୋଟିଏ ପରେ ଗୋଟିଏ ରହସ୍ୟ ଉଦ୍‌ଘାଟନ କରି ଯିବାବେଳେ ଆଉ ଗୋଟିଏ ନୂତନ ରହସ୍ୟ ତା ଆଗରେ ଦେଖାଦେବ ।

ବହୁ ବାଦର ସୃଷ୍ଟି ହେବ । ସମାଜବାଦ, ସାମ୍ୟବାଦ, ଏକଛତ୍ର ବାଦ ଏଭଳି କେତେ କ'ଣ । ବହୁ ସଂପ୍ରଦାୟର ଅଭ୍ୟୁଦୟ ହେବ । ବହୁ ଭାଷା ପ୍ରଚଳିତ ହେବ । ଜନ-ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବ । ଉତ୍ପାଦନ ଯେତେ ବୃଦ୍ଧି କରାଗଲେ ମଧ୍ୟ ଜନ ବିସ୍ଫୋରଣର ଆବଶ୍ୟକତା ମେଣ୍ଟାଇବାରେ ଅସମର୍ଥ ହେବ । ଶିଳ୍ପ ପ୍ରସାର, ବାଣିଜ୍ୟ ପ୍ରସାର ନାମରେ ଯାନ୍ତ୍ରିକ ସଭ୍ୟତା ସମସ୍ତ ବିଶ୍ୱକୁ ଗ୍ରାସ କରିଯିବ । ଦେଶଦେଶ ଦୁର୍ଭିକ୍ଷ ହେବ, ମାରାତ୍ମକ ରୋଗମାନ ଦେଖାଦେବେ । ମନୁଷ୍ୟ ନିର୍ଦ୍ଦୟ ଭାବେ ଜୀବନ ରକ୍ଷାକାରୀ ସୁନ୍ଦର ପ୍ରାକୃତିକ ସଂପଦକୁ ଛାରଖାର କରିଦେବ । ଅକସ୍ମିତ ବାତ୍ୟା, ବନ୍ୟା, ଭୂକମ୍ପ, ଅଗ୍ନି ଉଦ୍‌ଗୀରଣ, ଦୁର୍ଘଟଣା ମାନ ବ୍ୟାପିଯାଇ ଲୋକ କ୍ଷୟ ହେବ । ପରସ୍ପର ହିଂସା, ଦ୍ୱେଷ ଯୋଗୁଁ ନରହତ୍ୟା ଏକ ସାଧାରଣ ଘଟଣାରେ ପରିଣତ ହେବ । ଯୌତୁକ ପ୍ରଥାର କୁ ପରିଣାମ ଯୋଗୁଁ ସାମାଜିକ ବ୍ୟବସ୍ଥା ଓଲଟ ପାଲଟ ହୋଇଯିବ । ପବିତ୍ର ବିବାହ ବନ୍ଧନର ସଜ୍ଞା ବଦଳିଯିବ । ଶୃଙ୍ଖଳାହୀନ ଭାବେ ମାନବମାନେ ସ୍ୱେଚ୍ଛାଚାର କରିଯିବେ । ବିଜ୍ଞାନର ଜୟଯାତ୍ରା ନାମରେ ପ୍ରାକୃତିକ ପଥ ଛାଡ଼ି ସବୁ କ୍ଷେତ୍ରରେ ଅପ୍ରାକୃତିକ ପନ୍ଥ ବାଛୁନେବେ । ମହାପୁରୁଷ ମାନଙ୍କ ବାଣୀ ପ୍ରତି ଅବମାନନା କରାଯିବ । ପୂଜା ପଦ୍ଧତିରେ ଆନ୍ତରିକତା ରହିବ ନାହିଁ । ଲୋକ ଦେଖାଣିଆ କୃତ୍ରିମ ବାହ୍ୟ ଆଡ଼ମ୍ବରକୁ ଗୁରୁତ୍ୱ ଦିଆଯିବ । ଅଥଚ ଭକ୍ତି ଚିହ୍ନ ଲେଶମାତ୍ର ରହିବ ନାହିଁ । ଦୁର୍ନୀତି, ପ୍ରିୟାପ୍ରୀତି ପୋଷଣ, ଯୋର ଯାର ମୁଲକ ତା'ର ନ୍ୟାୟରେ ମାନବ ସମାଜ ପଥଭ୍ରଷ୍ଟ ହେବ । ସାଧୁଜନମାନେ ତ୍ରାହି ତ୍ରାହି ଡାକ ଦେବେ ।

ଦେଶ ଦେଶ ମଧ୍ୟରେ ଯୁଦ୍ଧମାନ ଘଟିବ । ଅସ୍ତ୍ର ପ୍ରତିଯୋଗିତା ବୃଦ୍ଧି ପାଇବ । ମାରାତ୍ମକ ଧରଣ ଅସ୍ତ୍ର ପରମାଣୁ ଅସ୍ତ୍ର, ରାସାୟନିକ ଅସ୍ତ୍ର, ବେଗଗାମୀ ବିମାନ ପ୍ରଭୃତି ନିର୍ମିତ ହେବ । ଅନ୍ୟଦେଶକୁ ଭୟ ପ୍ରଦର୍ଶନ ପାଇଁ ଦେଶମାନେ ଅସ୍ତ୍ରଶସ୍ତ୍ର ମହଜୁଦ କରି ରଖିବେ । ମନୁଷ୍ୟ ପିଶାଚ ସ୍ତରକୁ ଓହ୍ଲାଇ ଆସିବ ।

ସେତେବେଳେ ଭଗବାନ ଗ୍ରହଣ କରିବେ ମହା ପ୍ରତାପୀ କଳକୀ ଅବତାର । ସେ ଦୃଶ୍ୟମାନ ହେବେ ନାହିଁ । ସୃଷ୍ଟି ସଂହାରକାରୀ ଶିବଙ୍କ ଶକ୍ତିରୁ ଉତ୍ପନ୍ନ ହେବ ଏକ ଶ୍ୱେତ ଅଶ୍ୱ ଏବଂ ଭଗବାନ ଧାରଣ କରିବେ ଏକ ଖଡ୍ଗ । ଅଶ୍ୱ ଉପରେ ଖଡ୍ଗଧାରୀ ଭଗବାନ ମହା ଶୂନ୍ୟରେ ବିଚରଣ କରିବେ । ତାଙ୍କ ଅଶ୍ୱ ଶକ୍ତି କଳିଯୁଗରେ ମନୁଷ୍ୟ ନିର୍ମିତ ବେଗଗାମୀ ବିମାନ ଓ କ୍ଷେପଣାସ୍ତ୍ରରେ ଅଦୃଶ୍ୟ ଶକ୍ତି ରୂପେ ରହିବ ଆଉ ପରମାଣୁ ଅସ୍ତ୍ର, ରାସାୟନିକ ଅସ୍ତ୍ର

ସମୂହରେ ଝଡ଼୍‌ଗର ସଂହାର ଶକ୍ତି ଠୁଳ ହେବ । ଯୁଗ ଶେଷ ପୂର୍ବରୁ ମନୁଷ୍ୟ ମନୁଷ୍ୟ ଭିତରେ ଯୁଗାନ୍ତକାରୀ ଯୁଦ୍ଧ ସଂଘଟିତ ହେବ । ପରମାଣୁ ଶକ୍ତିର ବିଷକ୍ରିୟା ଯୋଗୁଁ ବିଶ୍ୱରେ ନାନା ବିପର୍ଯ୍ୟୟ ଦେଖା ଦେବ । ସେହି ବିପର୍ଯ୍ୟୟ ହିଁ ସୃଷ୍ଟି ଧ୍ୱଂସର ମୂଳ କାରଣ ହେବ ।

ଏବେ କଳିଯୁଗ ଚାଲିଛି । ଏହା ମଧ୍ୟମ ସ୍ତର ପର୍ଯ୍ୟନ୍ତ ଭୋଗ ହୋଇ ସାରିଲାଣି । ଯୁଗାନ୍ତ ପ୍ରଳୟ ଆଡ଼କୁ ମହାକାଳ ଏହାକୁ କ୍ଷିପ୍ରଗତିରେ ଟାଣିନେଉଛି । କେବେ ଏହି ପ୍ରଳୟ କେବେ ହେବ ତାହା ସେହି ଇଚ୍ଛାମୟ ପରମ କାରୁଣିକ ଭଗବାନଙ୍କ ଇଚ୍ଛା ଉପରେ ନିର୍ଭର କରେ । ମନୀଷୀ ସମାଜ ଏହାର ଭୟାବହତା ଉପଲବ୍ଧି କରି ଭଗବାନଙ୍କ ପ୍ରଦର୍ଶିତ ସତ୍ୟ, ଅହିଂସା, ଭକ୍ତି ଓ ଶାନ୍ତି ମାର୍ଗରେ ଗତି କଲେ ମହାପ୍ରଳୟ ସଂଘଟିତ ହେବାରେ ବିଳମ୍ବ ହେବ ନଚେତ୍‌ ଏହା ମନୀଷୀ ସମାଜର ସ୍ୱ ଅର୍ଜିତ ଭୁଲ୍‌ ଯୋଗୁଁ ଯେ କୌଣସି ସମୟରେ ସଂଘଟିତ ହେବ ।

"ଆସ ସମସ୍ତେ ହୋଇ ଏକମୁଖ
ଭଜିବା ପରମାତ୍ମା ରଖ ।"

—ଜୟ ଜଗନ୍ନାଥ—

ମୁଦ୍ରଣ : ମନମୋହିନୀ ଟ୍ରେଡର୍ସ, ବ୍ରହ୍ମପୁର—୨